# ବିଷୟ-ସୂଚୀ





ମୋର ଅଭିନ୍ନାତ୍ମା ଅଗ୍ରଜ
ଶ୍ରୀଯୁକ୍ତ କୁଳମଣି ମହାପାତ୍ର

ଆପଣ ଊଣେଇଶ ବୟାଳିଶର ସ୍ୱାଧୀନତା ଆନ୍ଦୋଳନରେ ବିପୁଳ ପ୍ରାଣାବେଗରେ ଝାସ ଦେଇଥିଲେ । କାରାଦଣ୍ଡ ବରଣ କରିଥିଲେ । ଆପଣ ବଂଚିରହିଲେ—ମାତ୍ର ଆପଣଙ୍କ ବ୍ୟକ୍ତିଗତ ଭବିଷ୍ୟତ ସମାଧି ହୋଇଗଲା । ଏହି ତ୍ୟାଗ ଲାଗି ଆପଣ ଦେଶଠାରୁ ଆଜି ପର୍ଯ୍ୟନ୍ତ କିଛି ପ୍ରତ୍ୟାଶା ବା ଦାବୀ କରିନାହାନ୍ତି । ଆପଣ ମହାନ୍ ପ୍ରତିଭା ଓ ହୃଦୟ-ବୃତ୍ତିର ଅଧିକାରୀ ନିଷ୍କାମ ସଂଗ୍ରାମୀ ବୀର ପୁରୁଷ । ଆପଣ ଆମ ବଂଶକୁ କୀର୍ତ୍ତିମାନ୍ କରିଛନ୍ତି । ମୋର ପରମ ଭକ୍ତି ଓ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏ ଗ୍ରନ୍ଥଟି ଆପଣଙ୍କ ପାଦତଳେ ଉତ୍ସର୍ଗ କରୁଛି । ଇତି ।

କଟକ — ନୀଳମଣି
ଶ୍ରୀରାମନବମୀ
ତା ୧ । ୪ । ୭୪

# ଉପୋଦ୍‌ଘାତ

ସ୍ୱାଧୀନତୋତ୍ତର ଓଡ଼ିଆ ଗଳ୍ପ ସାହିତ୍ୟରେ ଫକୀରମୋହନଙ୍କ ସାର୍ଥକ ଉତ୍ତରସୂରୀ ଭାବରେ ଯେଉଁସବୁ ଗାଳ୍ପିକ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ସେମାନଙ୍କ ମଧ୍ୟରୁ ମହାପାତ୍ର ଶ୍ରୀ ନୀଳମଣି ସାହୁ ଅନ୍ୟତମ । ଶ୍ରୀ ସାହୁ ଓଡ଼ିଆ ଗଳ୍ପପାଠକମାନଙ୍କର ଗଭୀର ଅନୁରାଗଭାଜନ । କିନ୍ତୁ କେତେକ ଏକଦେଶଦର୍ଶୀ ସ୍ୱଳ୍ପଧୀସମାଲୋଚକ ତାଙ୍କ ନାମରେ ହାସ୍ୟରସିକ ବୋଲି ଯେଉଁ ମିଥ୍ୟାପବାଦ ରଟନା କରିଛନ୍ତି ତାହା ଆମ ସୂକ୍ଷ୍ମ ରସବୋଧ ବିରୁଦ୍ଧରେ ସବୁବେଳେ ସାକ୍ଷ୍ୟ ଦିଏ । ସେ ବରଂ କୋମଳ କାରୁଣ୍ୟର ଚିତ୍ରାଙ୍କନରେ ଅସାଧାରଣ । ସବୁ ସମୁନ୍ନତ ଜୀବନଧର୍ମୀ ଗଳ୍ପ ଭଳି ସ୍ୱଚ୍ଛ ମଧୁର ଲଘୁହାସ୍ୟର ଛଟା ତାଙ୍କ ଗଳ୍ପର ଉପରିଭାଗରେ ନାହିଁ ବୋଲି ନୁହେଁ । କିନ୍ତୁ ତାହା କେଉଁଠି ହେଲେ ଶେଷ କଥା ନୁହେଁ । ପ୍ରତ୍ୟେକଟି ଗଳ୍ପର ସେହି ଉର୍ମିଳ ହାସ୍ୟ ଅନ୍ତରାଳରୁ ଚିରସଜଳ କାରୁଣ୍ୟର ଗଭୀର ଅନ୍ତଃସ୍ରୋତ ଅଶ୍ରୁ ସ୍ପଷ୍ଟ ବାରି ହୁଏ । 'ସୁମିତ୍ରାର ଉଜ୍ଜ୍ୱଳ ହାସ୍ୟ ତଳୁ ଅଶ୍ରୁର ଏକ ଗମ୍ଭୀର ଅନ୍ତଃସ୍ରୋତ କ'ଣ କାହାକୁ ବୁଝାଇ କହିବାକୁ ହେବ ? ଓଡ଼ିଆ ସାହିତ୍ୟରେ ଶ୍ରୀ ସାହୁ ଜଣେ ବଡ଼ ଆବେଗସମୃଦ୍ଧ ଶୁଭବିଶ୍ୱାସୀ ଶିଳ୍ପୀ । ପ୍ରଗାଢ଼ ମାନବିକ ଆବେଗ ଓ ଉଦଗ୍ର ସହାନୁଭୂତି ତାଙ୍କର ବଡ଼ ଦୁର୍ବଳତା । ମଣିଷର ଦମ୍ଭୀମାନ୍ୟ ଲୋଭ, ଅବିମୃଶ୍ୟକାରିତା ଅଶାଳୀନ ନିର୍ଲଜତା ଓ ମୂଢ଼ ନିର୍ବୋଧତାକୁ ସେ ଯେତେ ବ୍ୟଙ୍ଗବିଦ୍ରୂପ କରନ୍ତି ତାଠାରୁ ବେଶୀ ଅଶ୍ରୁପାତ କରନ୍ତି, ମାନବୀୟ ଅସହାୟତା ଓ ବିପର୍ଯ୍ୟୟ ପାଇଁ । ଗଳ୍ପର ବକ୍ତବ୍ୟ ଥାଏ ସବୁବେଳେ ଆଶାଦ୍ୟୋତକ । ପ୍ରତ୍ୟେକଟି ଗଳ୍ପ ତାଙ୍କର ତେଣୁ ଅଳ୍ପ ବହୁତେ କୌତୁକ—ମଧୁର, ବେଦନା—ଗଭୀର ଓ ଆସ୍ଥା ବିଶ୍ୱାସପୂର୍ଣ୍ଣ । ଅଧିକନ୍ତୁ ଗଳ୍ପେ ଗଳ୍ପେ ତାଙ୍କର ସଞ୍ଚରି ଥାଏ ନିଜସ୍ୱ ଅନୁଭୂତିର ସ୍ପର୍ଶ, ଆବେଗ ଉଚ୍ଛ୍ୱାସର ଉଲ୍ଲାସ ଓ ବାକ୍‌ବିନ୍ୟାସର ଶୋଭନ ବୈଦଗ୍ଧ । ଅନେକତ୍ର ଆବେଗ ଓ କାବ୍ୟପ୍ରବଣତାର ଉପଦ୍ରବରେ କ୍ଷୁଦ୍ର ଗଳ୍ପର ବିଧିନିଷେଧ ସଂକୋଚନରେ ଅପସରି ଯାଇଛି, ତାର ଘନପିନଦ୍ଧ ସଂହତ ଆଙ୍ଗିକ, ରମ୍ୟରଚନା ଓ କ୍ଷୁଦ୍ର ଉପନ୍ୟାସର

ଆକସ୍ମିକ ଆବିର୍ଭାବରେ ବିପର୍ଯ୍ୟସ୍ତ ହୋଇପଡ଼ୁଛି । ତେଣୁ ଓଡ଼ିଆ ଗଳ୍ପର ଆଙ୍ଗିକ ଚେତନାକୁ ଶ୍ରୀ ସାହୁ ନିଶ୍ଚିତ ଭାବରେ ବହୁ ବୈଚିତ୍ର୍ୟରେ ମଣ୍ଡି ଥିଲେ ହେଁ, ତା'ର ଭୂଗୋଳକୁ ଯଥେଷ୍ଟ ସଂପ୍ରସାରିତ କରିଥିଲେହେଁ କ୍ଷତ ବି କିଛି କମ୍ କରିନାହାନ୍ତି । ଗଳ୍ପର ଉପକରଣକୁ ସେ ବଢ଼ାଇ ଦେଇଛନ୍ତି ଯଥେଷ୍ଟ, ଚରିତ୍ରଗୁଡ଼ିକର ପୂର୍ଣ୍ଣ ବିକାଶ ସାଧନ କରିବାକୁ ଚାହିଁଛନ୍ତି ଓ ଇଙ୍ଗିତ– ଧର୍ମିତା ଅପେକ୍ଷା କାହାଣୀ ପରିଣାମ ଉପରେ ବିଶେଷ ଦୃଷ୍ଟି ରଖିଛନ୍ତି । କେଉଁଠି କିଛି ସଂଶୟ କି ଗୁପ୍ତ୍ୟଛନ୍ନତା ଶେଷ ପର୍ଯ୍ୟନ୍ତ ରଖିନାହାନ୍ତି । ହଠାତ୍ ତେଣୁ ପାଠକ ମନେ କରନ୍ତି ଅନୁମାନ ଓ କଳ୍ପନା ବଳରେ ସେଥିରୁ ଅର୍ଜନ କରିବାର କିଛି ନାହିଁ—ସବୁ ସ୍ପଷ୍ଟ ଉଦ୍-ଘାଟନ । ଆଜିର କ୍ଷୁଦ୍ରଗଳ୍ପ କଣ ଅଭ୍ୟସ୍ତ ଗୀତବନ୍ଧନ ଓ ଆଙ୍ଗିକ ଚେତନାକୁ ଧରିବସିଛି ? ନା । ତାହା ବେଶ୍ ସ୍ୱଚ୍ଛନ୍ଦ ଓ ଗତିଶୀଳ । ଶ୍ରୀ ସାହୁ ତାର ଏହି ସଚେତନାକୁ ଧରି ସ୍ୱଚ୍ଛନ୍ଦତା ବାଟରେ ଉତ୍ସାହିତ କରିଥିବାରୁ ତାହାର କୃତଜ୍ଞ ହେବା କଥା । ଅଧିକନ୍ତୁ ତାଙ୍କ ଗଳ୍ପର ଆବେଦନ ସ୍ପଷ୍ଟ ଓ ନିଃସଂଶୟ ବୋଲି ଯାହା ପ୍ରଥମରୁ ମନେ ହୁଏ ତାହା କିନ୍ତୁ ଶେଷ କଥା ନୁହେଁ । ଅଧିକାଂଶ ଗଳ୍ପ ପ୍ରାଣଧର୍ମରେ ବଡ଼ ପ୍ରଶ୍ନାତ୍ମକ । ସେଗୁଡ଼ିକର ରସ, ବ୍ୟଞ୍ଜନା ଓ ପରିପୂର୍ଣ୍ଣ ଉପଲବ୍ଧି ନିର୍ଭର କରେ ପାଠକର ବୁଦ୍ଧି, ବିଦ୍‌ବତ୍ତା, ଅନୁମାନ ଓ କଳ୍ପନା ଉପରେ । ପାଠକକୁ ଗଳ୍ପରୁ ଆନନ୍ଦ ଅର୍ଜନ କରିବାକୁ ହୁଏ । ଗଳ୍ପପାଠ ପରେ ସଚେତନ ପାଠକ ମନରେ ଗଳ୍ପର ପ୍ରଶ୍ନାତ୍ମକ ଚରମ ପରିଣତି ଉଦ୍ଭାସିତ ହୋଇଥାଏ । ତେଣୁ ତାଙ୍କ ଗଳ୍ପ ପ୍ରଥମରୁ ଯେପରି ସହଜ କୌତୁକାତ୍ମକ ମନେହୁଏ, ଶେଷ ପର୍ଯ୍ୟନ୍ତ ଆଦୌ ସେପରି ନୁହେଁ । ପାଠକ ସେହି ହାସ୍ୟକୌତୁକର ସାମାନ୍ୟ ସଞ୍ଚୟରୁ ସନ୍ତୁଷ୍ଟ ହୋଇ ଫେରିଲେ ଗଳ୍ପର ଅନେକ କିଛି ରସରହସ୍ୟ ଚିରକାଳ ଅନଧିଗତ ରହିଯିବ । ଅନ୍ୟ ପକ୍ଷରେ ମହାପାତ୍ର ନୀଳମଣି ରଚନାଶୈଳୀ ଓ ଟେକ୍‌ନିକ୍‌ରେ ବିଚିତ୍ରଭାବେ ପ୍ରୟୋଗ ଓ ପରୀକ୍ଷାବାଦୀ । ପ୍ରତିଟି ଗଳ୍ପ ତାର ବିଷୟବସ୍ତୁ ଅନୁରୂପ ଏକ ନୂତନ ଭାଷାରୀତି ଓ ରଚନାଶୈଳୀରେ ସମୃଦ୍ଧ ଓ ସେଥିଲାଗି, ନୂତନତାର ବିଚିତ୍ର ସ୍ୱାଦରେ ନିତ୍ୟ ପରିପୂର୍ଣ୍ଣ ।

'ଅନ୍ୟରୂପ ରୂପାନ୍ତର' ଶ୍ରୀ ସାହୁଙ୍କର ନୂଆ ପୁରୁଣା କେତେକ ଗଳ୍ପର ସଙ୍କଳନ । ଅନେକ ଦୃଷ୍ଟିରୁ ଏହି ସଙ୍କଳନ ଉଭୟ ଓଡ଼ିଆ ସାହିତ୍ୟ ଓ ଗାଳ୍ପିକଙ୍କ ଗଳ୍ପ ରଚନା କ୍ଷେତ୍ରରେ ନୂତନତାର ଇଙ୍ଗିତ

ବିଷ୍କୁରଣ କରେ । ଅସ୍ତରଙ୍ଗର ସୂର୍ଯ୍ୟ, କଂପ୍ରାନ୍ତପକ୍ଷୀ ଗୁରୁ ମୋର ମୂର୍ଚ୍ଛିତ ବିଷଦ, ଅନ୍ୟରୂପ ନୂପାନ୍ତର—ଆଦି ଗଳ୍ପର ମୂଳଥୀମ୍ ରୂପାନ୍ତର ପ୍ରକ୍ରିୟା । ଦେହରୁ ଦେହାଶ୍ରିତକୁ, ଲାଳସାରୁ ବାସନାଲୋକକୁ, କୁତ୍ସିତ ଅଶ୍ଳୀଳତାରୁ ଶୋଭନ ସୌନ୍ଦର୍ଯ୍ୟକୁ । ସ୍ଥୂଳରୁ ସୂକ୍ଷ୍ମକୁ, କାମୁକତାରୁ ପ୍ରେମକୁ, ସ୍ୱାର୍ଥରୁ ପରାର୍ଥକୁ, ବିଷାଦରୁ ଆନନ୍ଦକୁ ଓ ଆବର୍ଜନାରୁ ରୂପକୁ ଲକ୍ଷି ଯାଇଛୁ ଏହି ଆର୍ଦ୍ଧ ରୂପାନ୍ତର ପ୍ରକ୍ରିୟା । ଗଳ୍ପର ଚରିତ୍ରଗୁଡ଼ିକ ଅପୂର୍ବ । ସେହି ଚରିତ୍ରଗୁଡ଼ିକ ଗଳ୍ପର ଶିଳ୍ପକୌଶଳକୁ ନିୟନ୍ତ୍ରଣ କରି ନେଇଛନ୍ତି । ସୁସଂବଦ୍ଧ ଆଖ୍ୟାନ ଭାଗ, ବାଂଧାଧରା, ପ୍ଲଟ ଘଟନାର ଦ୍ରୁତ ସଙ୍ଘଟନ ବା ନାଟକୀୟ ପରିଣତି ତେଣୁ କେଉଁଠି ନାହିଁ । ଗାଳ୍ପିକ ସେହିସବୁ ପରିକଳ୍ପିତ ଚରିତ୍ର—ଜୀବନର ବିଚ୍ଛିନ୍ନ କେତୋଟି ଘଟଣା, କେତେଟି ମାନସିକ ଅବସ୍ଥା ବା ଚିନ୍ତାଧାରାକୁ ପୃଥକ କରିନେଇଛନ୍ତି ଓ ସେଗୁଡ଼ିକର ଶିଳ୍ପସୁଲଭ ବର୍ଣ୍ଣନା ମଧ୍ୟରୁ ଚରିତ୍ରର ଅନ୍ତର୍ନିହିତ ବୈଶିଷ୍ଟ୍ୟକୁ ବ୍ୟଞ୍ଜିତ ରଖିଛନ୍ତି । ଚରିତ୍ରର ପ୍ରତିକ୍ରିୟାମୂଳକ ଯେଉଁ କେତେକ ଆଚରଣ, ଚିନ୍ତା ବା ମାନସିକ ଅବସ୍ଥା, ଓ ସଂଳାପାଦି ସେ ବାଛି ନେଇଛନ୍ତି ତାହା ଆପାତତଃ ଦୃଷ୍ଟିରେ ପ୍ରଥମେ ଉଦ୍ଦେଶ୍ୟହୀନ ଓ ନୈମିତ୍ତିକ ମନେ ହୋଇ ପାରେ । କିନ୍ତୁ ସେସବୁ ମଧ୍ୟରେ ଆବେଗ—ବିଚିତ୍ର ମାନସିକ ଅବସ୍ଥାର ସୂକ୍ଷ୍ମ କାବ୍ୟାତ୍ମକ ବର୍ଣ୍ଣନାର ସଂସ୍ଥାପନା ଦ୍ୱାରା ଯେଉଁ ସମଗ୍ରତାର ରୂପ ପ୍ରକଟିତ ହୋଇଛି, ତାହା ପରିପୂର୍ଣ୍ଣତା ଲାଭ କରିବାକୁ ପାଠକର କଳ୍ପନା ଓ ଅନୁଭୂତିକୁ ଅପେକ୍ଷା ରଖେ । ଗଳ୍ପ ତେଣୁ ପରିପୂର୍ଣ୍ଣତା ଲାଭ କରିବ ପାଠକର କଳ୍ପନାର ସମୁନ୍ନତି ମଧ୍ୟରେ । ପାଠକ ଗଳ୍ପରୁ ଯେଉଁ ଆନନ୍ଦ ଅନୁଭବ କରିବେ, ତାହା ତାଙ୍କୁ ଅର୍ଜନ କରିବାକୁ ହେବ । ଚରିତ୍ରମନର ଅଜ୍ଞାତ ଅନିଚ୍ଛାକୃତ ବିଶୃଙ୍ଖଳା ସୃଷ୍ଟି କରାଉଥିବା ଶକ୍ତିଗୁଡ଼ିକୁ ଶିଳ୍ପୀ ସତର୍କତା ସହିତ ଲକ୍ଷ୍ୟ କରିଛନ୍ତି ମାନବିକ ସଂବେଦନାର ବ୍ୟାପକ ପରିଧିରେ ସେ ନୂଆ ଏକ ନୈତିକ ମୂଲ୍ୟ ଫୁଟାଇବାକୁ ଚାହାନ୍ତି । ତାଙ୍କର ଏହି ଦୃଷ୍ଟିଭଙ୍ଗି ତଳେ ଗତାନୁଗତିକତା ପ୍ରତି ଜାଗ୍ରତ ହୋଇଛି ତିରସ୍କାର ଓ ବିଦ୍ରୋହ, ନବୀନ ନୈତିକ ମୂଲ୍ୟ ସ୍ଥାପନ ପ୍ରତି ପ୍ରବଳ ଆଗ୍ରହ । ଏହି ବିଶେଷ ଦୃଷ୍ଟିଭଙ୍ଗି ଚରିତ୍ରଗୁଡ଼ିକୁ ଚଞ୍ଚଳ କରି ଦେଇଛି—ସେମାନେ ନିଜ ଅନ୍ତରର ଦୁର୍ଜ୍ଞେୟ ପ୍ରେରଣା ଓ ଅନ୍ତର୍ଦ୍ୱନ୍ଦର ତୀବ୍ର ବିକ୍ଷୋଭର ବଶବର୍ତ୍ତୀ ହୋଇ ଜୀବନ ପଥରେ ଭାସି ଚାଲିଛନ୍ତି । କାହାର ପ୍ରାୟ ଆତ୍ମ-

କର୍ତ୍ତିଭିତ୍ତି ନାହିଁ କ ଅବସ୍ଥାକୁ ଆୟତ୍ତାଧୀନ କରିବାକୁ ବିଶେଷ ପ୍ରୟାସ ନାହିଁ । ଅନ୍ତରର ଭାବାନୁଭୂତି ପାଖରେ ସଚେତନ ଆତ୍ମ ସମର୍ପଣ କରିବା ଛଡ଼ା କେହି ଗତ୍ୟନ୍ତର ଦେଖି ନାହାନ୍ତି । ଅନ୍ତରର ଏହି ତୀବ୍ର ଭାବାନୁଭୂତି ଚରିତ୍ରକୁ ଯେଉଁ ଏକ ବିଶିଷ୍ଟ ମୁହୂର୍ତ୍ତରେ ନେଇ ପହଞ୍ଚାଇ ଦିଏ ସେହିଠାରେ ଗଳ୍ପର ଉପସଂହାର ଘଟିଛି । ଅଧିକାଂଶ ଚରିତ୍ର ତେଣୁ ମୂଳଭିତ୍ତିରେ ଏକପ୍ରକାର । ମଣିଷ ଜୀବନ ଯେ ସମଷ୍ଟିଗତ ଏକ ଅବିଚ୍ଛିନ୍ନ ସତ୍ତା—ତାହା ଚରିତ୍ରଗୁଡ଼ିକର ଏହି ସାଦୃଶ୍ୟବୋଧରୁ ଶିଳ୍ପୀ ଜଣାଇ ଦେବାକୁ ଚାହାନ୍ତି । ତେଣୁ ଆମ୍ଭମାନେ ଏକପ୍ରକାର ଚରିତ୍ର ଦେଖି ତାହାକୁ ଶିଳ୍ପର ଦୁର୍ବଳତା ମନେ କରିବା ସମୀଚୀନ ନୁହେଁ । ମୂଳତଃ ନୈର୍ବ୍ୟକ୍ତିକ ଜୀବନ ସ୍ତରରେ ପ୍ରତ୍ୟେକ ମଣିଷ ସମାନ ନୁହନ୍ତି କି ? ପରିକଳ୍ପିତ ସେହିସବୁ ଚରିତ୍ର ମଧ୍ୟରେ ଗତାନୁଗତିକ ଜୀବନଯାତ୍ରାର କ୍ଲାନ୍ତି, ନୈରାଶ୍ୟ, ବ୍ୟର୍ଥତା, କ୍ଷୁବ୍ଧତା, ନିରାନନ୍ଦତା ଓ ଶୂନ୍ୟତା କିଛି କମ୍ ପ୍ରାଧାନ୍ୟ ଲାଭ କରିନାହିଁ । କିନ୍ତୁ ସେହିଠି ଶିଳ୍ପୀ ସେମାନଙ୍କୁ ଛାଡ଼ିପାରିବେ ନାହିଁ । ସେ ଏକାନ୍ତ ସଂବେଦନଶୀଳ ଓ ସହାନୁଭୂତିମୟ ଚିତ୍ତରେ ଚରିତ୍ରକୁ ଦେଖିଛନ୍ତି ତାହାର ନିଃସହାୟତା ଓ ଏକାକୀତ୍ୱ ମଧ୍ୟରେ । ବ୍ୟକ୍ତିତ୍ୱର ମାପରେ ମଣିଷ ମଣିଷ ଭିତରେ ଅନତିକ୍ରମଣୀୟ ସ୍ୱତନ୍ତ୍ରତା ରହିଛି । ମଣିଷ ମଣିଷକୁ ସବୁବେଳେ ବୁଝେ ବୋଲି ଆଦୌ ମନେ ହୁଏ ନାହିଁ । ମଣିଷର ଆଶା ଆକାଂକ୍ଷା ସହିତ ତା'ର ବାସ୍ତବ ଜୀବନର ଅସାମଞ୍ଜସ୍ୟ ଅନେକ । ଅନାତ୍ମୀୟ ଓ ଅସାମଞ୍ଜସ୍ୟମୟ ଏହି ପୃଥିବୀରେ କିନ୍ତୁ ଚରିତ୍ର-ଗୁଡ଼ିକୁ ସେ ପାର୍ଥିବ ଆଶା ଆକାଂକ୍ଷା ଯେନ ସନ୍ତୁଷ୍ଟ ହେବାକୁ ଛାଡ଼ିଯାଇ ନାହାନ୍ତି । ସେମାନଙ୍କର ଯେପରି ଅତ୍ୟାବଶ୍ୟକ ବସ୍ତୁ କିଛି ହଜି ଯାଇଛି । ସହଜରେ ଖୋଜି ପାଇ ହେବ ନାହିଁ । ଏହି ଭାବ, ଏହି ଗଭୀର ଆବେଗ ଓ ବେଦନାମୟ ଅନୁଭୂତି ସେମାନଙ୍କ ଅନ୍ତର ଆଚରଣ ଓ ଚିନ୍ତାରେ ପ୍ରକଟିତ ହୋଇଛି । ଶିଳ୍ପୀ ମଣିଷର ଚିନ୍ତା ଓ କାର୍ଯ୍ୟାବଳୀର ଗୋପନ ଉତ୍ସ ଦିଗରେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ମଣିଷର ଅନ୍ତର୍ଜୀବନ ଦେଖିବାର ନୂଆ ବାଟ ବତାଇଛନ୍ତି । ତେଣୁ ଅଧିକାଂଶ ଗଳ୍ପ ଦେଶକାଳର ସୀମା ଡେଇଁ ମଣିଷର ମନୋଜୀବନର ଇତିହାସରେ ପରିଣତ ହେବାକୁ ଉନ୍ମୁଖ ରହିଛନ୍ତି । ଗଳ୍ପର ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ରଗୁଡ଼ିକ ଆହୁରି ସୁନ୍ଦର ଓ ଅଭିନବ । ସେମାନେ ପୁରୁଷକୁ

ଯେଉଁଠି ବିପଥରେ ନେଇ ନାହାନ୍ତି—ନାରୀ ସ୍ୱୟଂ ଭଗବତ କରୁଣା-ବାହିନୀ—ଈଶ୍ୱର ଅନ୍ତର୍ଲୋକବାସିନୀ । କେବଳ ରକ୍ତ ମାଂସର ବିଗ୍ରହ ନୁହେଁ । କଲ୍ୟାଣରୂପିଣୀ ସେହି ନାରୀ ପଥପ୍ରଦର୍ଶକ ନ ହେଲେ ମଣିଷ ତା'ର ଚେତନାର ଊର୍ଦ୍ଧ୍ୱକୁ ଉଠିପାରେ ନାହିଁ । ସେମାନେ ଗଳ୍ପରେ ସବୁଠି ପୁରୁଷକୁ ଅନ୍ତର୍ମର୍ତ୍ତ୍ୟଲୋକକୁ ଟାଣି ନେଇଛନ୍ତି । ପୁରୁଷର ଦେହ ମନ ପ୍ରାଣର ସବୁ ରୂପାନ୍ତର ନାରୀସମନ୍ୱିତ ନ ହୋଇ ରହିପାରେ ନାହିଁ । ଅନ୍ୟରୂପ-ରୂପାନ୍ତରର ନାରୀ ମୂର୍ତ୍ତି ଗୁଡ଼ିକ—ମନୋରମା, ଶ୍ରୀମତୀ ଗ୍ରେଟବସ୍ତୁ, କୃଷ୍ଣା ଚୌଧୁରୀ ସ୍ମରଣ କରାଇଦିଅନ୍ତି ମହାକବି ଗେଟେଙ୍କ ଅମରବାଣୀକୁ 'The Eternal Womanly draws us above.' ନାରୀ ସଂପର୍କରେ ଏହାଠାରୁ ବଳି ସୁନ୍ଦର କଥା ଆଉ କ'ଣ ଥାଇପାରେ ? ଗଳ୍ପର ଆଖ୍ୟାନ, ବକ୍ତବ୍ୟ ଓ ଚରିତ୍ରକୁ ଗାଳ୍ପିକଙ୍କ କବିସୁଲଭ ସୌନ୍ଦର୍ଯ୍ୟ ଚେତନା ଓ କାବ୍ୟାବେଶପ୍ରବଣତା ସମାଚ୍ଛନ୍ନ କରି ରଖିଛି । ଗଳ୍ପର ପ୍ରକାଶ ଓ ଶୈଳୀ ବାରବାର ଚିତ୍ର ଚରିତ୍ର ଘଟନା ସହିତ ସଙ୍ଗତି ରକ୍ଷା କରି ବଦଳିଛି—ଯେଉଁଠି ଚରିତ୍ରର ଆତ୍ମକଥନରେ ଯେଉଁଠି ଲେଖକଙ୍କ ଆବେଗକଳ୍ପିତ ବର୍ଣ୍ଣନା—ଯେଉଁଠି ନିର୍ଲିପ୍ତ ବିଶ୍ଳେଷଣରେ ଆଉ ଯେଉଁଠି ଅନ୍ତର୍ଭାଷଣର ଆତ୍ମକଳନା । ଭାଷା ଅନୁପୂର୍ଣ୍ଣ ନୁହେଁ । ଯେଉଁଠି ତାହା ଲଘୁହାସ୍ୟଚପଳ ହୋଇ ଉଠିଛି ତ ଯେଉଁଠି ପୁଣି ହୋଇ ଉଠିଛି କରୁଣ ଅଶ୍ରୁସଜଳ, ଯେଉଁଠି ଭାବପ୍ରବାହ କାବ୍ୟକୁତୂହଳରେ ଭାସିଯାଇଛି ତ ଆଉ ଯେଉଁଠି ଜୀବନ ବିଶ୍ଳେଷଣରେ ହୋଇଉଠିଛି ତୀକ୍ଷ୍ଣ ଓ କଠିନ । ପୁଣି ଏକାଧିକ ବିଶେଷଣ ପ୍ରୟୋଗରେ ଅଦ୍ଭୁତ ଭାବବ୍ୟଞ୍ଜନାମୟ । ପାଖକୁ ପାଖ ଅନେକ ବିଶେଷଣ ରହି ଭାବର ପ୍ରକାଶପଥକୁ ସୌନ୍ଦର୍ଯ୍ୟରେ ମଣ୍ଡିଛନ୍ତି, ଯେପରି—ଘନ ନିବିଡ଼ ଧର୍ଷଣକାମଜର୍ଜ୍ଜର ଆଶ୍ଳେଷ—ଅଦ୍ଭୁତ ପାଶବିକ ମାଂସଳ ଉଷ୍ଣ କାମନାର ଚିତ୍ର—ସଂଗୁପ୍ତ ବେଦନାର କ୍ଷୁବ୍ଧ ଅବୋଧ ଓ କାରଣହୀନ କାରୁଣ୍ୟର ଧ୍ୱନି (ଅସ୍ତସୂର୍ଯ୍ୟର ରଙ୍ଗ)— ନିଗୃହ ଅମାର୍ଜ୍ଜିକ ଅଥଚ ନିର୍ବୋଧ ମାୟାଚ୍ଛନ୍ନ ନାରୀମୂର୍ତ୍ତି—ଶିଶୁସୁଲଭ ଏକାନ୍ତ ନିର୍ଭରତାର ନିର୍ବୋଧ ଅସହାୟ କାତରତାର ସ୍ପୃହା—ଅଃ ! କି ସୁନ୍ଦର ଏକାନ୍ତ ନିର୍ଭରଶୀଳ ଶିଶୁସୁଲଭ ଅସହାୟ ମୂର୍ତ୍ତି ମୁହଁଟିଏ—ସୃଜନକ୍ଷମ ଅଦ୍ଭୁତ ସ୍ୱପ୍ରେରଣାମୟୀ ପ୍ରେମ—ଶୁଭ୍ରସୁନ୍ଦର ବିଷାଦମଧୁର ସ୍ୱର ମୂର୍ତ୍ତିଟିଏ । ଭାଷାର ଚିତ୍ରବ୍ୟଞ୍ଜନା ଓ ଭାବଦ୍ୟୋତନା ଲକ୍ଷ୍ୟ କରିବାର କଥା ।

ଭାବପ୍ରବଣ ଏହି ଭାଷାଶିଳ୍ପୀଙ୍କ ସୂକ୍ଷ୍ମ ମଧୁର ସହାନୁଭୂତିମୟ ସ୍ୱଭାବ ମଣ୍ଡିତ ମିଶି ଯେତେବେଳେ ଉଜ୍ଜ୍ୱଳ ହୋଇ ଉଠିଛି, ସେତେବେଳେ କ୍ଷୁଦ୍ରଗଳ୍ପର ଗଠନବନ୍ଧନ ବହୁଦୂରକୁ ଭାସିଯାଇଛି । ସବୁଗୁଡ଼ିକ ଗଳ୍ପ ତେଣୁ ଦୀର୍ଘ ଓ ଅସଂଯତ । କ୍ଷୁଦ୍ରଗଳ୍ପର ଟେକ୍ନିକ ଦୃଷ୍ଟିରୁ 'ଅନ୍ୟରୂପ-ରୂପାନ୍ତର'ରେ ଠିକ୍ କ୍ଷୁଦ୍ରଗଳ୍ପ କାହିଁ ? ତେବେ ଏଥିରେ ପାଠକଙ୍କୁ ଅଭିଭୂତ କଲାଭଳି ସାମଗ୍ରୀର କୌଣସି ଅଭାବ ନାହିଁ । କପୋତ ପକ୍ଷୀ ଗୁହ୍ର ମୋର' ଠିକ୍ ସିନା କ୍ଷୁଦ୍ରଗଳ୍ପ ନୁହେଁ । ତେବେ ଓଡ଼ିଶାର କେଉଁ ପାଠକଙ୍କୁ ତାହା ପୁଣି ଅଭିଭୂତ ନ କରିବ ? ଏହି ସଙ୍କଳନର ପ୍ରତ୍ୟେକଟି ଗଳ୍ପ ଅନେକାଂଶରେ 'ମୂର୍ଚ୍ଛିତ ବିଷାଦ' ଗଳ୍ପର କୁମାରୀ ମଞ୍ଜୁ ପରି ମର୍ତ୍ତ୍ୟ ଓ ଅନ୍ତର୍ମର୍ତ୍ତ୍ୟକୁ ସେତୁପରି ଯୋଡ଼ି ଦେଇଛନ୍ତି । ବାସ୍ତବ ଜୀବନର ସେବା ଓ ଦାୟିତ୍ୱ ଗ୍ରହଣରେ ମଞ୍ଜୁର କୌଣସି ଔଦାସୀନ୍ୟ ନାହିଁ—ଅଥଚ ନିର୍ଲିପ୍ତଭାବରେ ସେଥିରୁ ସେ ମୁକ୍ତିପାଇ କେତେବେଳେ ବିହରି ଯାଉଲଣି ଆଦର୍ଶ ଆଧ୍ୟାତ୍ମିକ ଅମର୍ତ୍ତ୍ୟଲୋକରେ ! ଖିଲ ଖିଲ ତାର ଖିଆଲି ହସ ଦେଖି କେହି ତାକୁ ପାଗଳମା ବୋଲି ସନ୍ଦେହ କରିପାରନ୍ତି—ମାତ୍ର ସେ ଆଦୌ ପାଗଳମା ନୁହେଁ ସେ ସବୁ କଥାକୁ ଆପଣା ଭିତରକୁ ନିଏ ଅଥଚ କାହାପ୍ରତି ଅନୁରାଗ କି ଅଭିଯୋଗ ପୋଷଣ କରେ ନାହିଁ—ସେ ସବୁ ପରେ ପରେ ତାର ଖିଲଖିଲ ହସ ଭିତରେ ରୂପାନ୍ତରିତ ହୋଇ ଫୁଲ ପରି ଫୁଟିଉଠନ୍ତି । ଗଳ୍ପଗୁଡ଼ିକୁ ଯେ କେହି ଖାମଖେୟାଲି କଳ୍ପନା ବୋଲି ମନେ କରିପାରନ୍ତି—ମାତ୍ର ସେଗୁଡ଼ିକ ବାସ୍ତବ ଜୀବନର ସବୁ ଜଞ୍ଜାଳକୁ ସ୍ୱୀକାର କରିଛନ୍ତି । କେବଳ କୌଣସି ଏକ ବିଶିଷ୍ଟ ମୁହୂର୍ତ୍ତରେ ବାସ୍ତବ ଜୀବନର ଊର୍ଦ୍ଧ୍ୱକୁ ଉତ୍ତୀର୍ଣ୍ଣ ହୋଇ ଯାଇଛନ୍ତି—ସେହି ମୁହୂର୍ତ୍ତଟିକୁ ଉପଲବ୍ଧିକୁ ନ ଆଣିଲେ ଗଳ୍ପଗୁଡ଼ିକର ମୂଲ୍ୟ କଳନାରେ ଭୁଲ ବୁଝାମଣା ରହିଯିବ ।

ସଙ୍କଳନରୁ ସବୁ ଗଳ୍ପର ସୌନ୍ଦର୍ଯ୍ୟ ଫେଡ଼ି ଦେଖାଇବାର ଅବକାଶ ନାହିଁ । ପ୍ରତ୍ୟେକଟି ରସ ରହସ୍ୟମୟ । ଅସ୍ତରଙ୍ଗର ସୂର୍ଯ୍ୟ ନାମଟିରୁ ଗଳ୍ପର ସୌନ୍ଦର୍ଯ୍ୟ ଝରିପଡ଼େ । ଅସ୍ତ ମୁହୂର୍ତ୍ତର ପୁଣି ଏତେ ରଙ୍ଗ ! ମନୋରମ ସମୟର ଏକ ଅସ୍ତିତ୍ୱହୀନ ମହାମୁହୂର୍ତ୍ତରେ – ନିବିଡ଼ ଘନ ଉଦାର ମହାନନ୍ଦମୟ ସୃଜନଶୀଳ ଅନ୍ଧକାର ଆଲୋଡ଼ନ ଭିତରେ

ନୂତନ ସୃଷ୍ଟି ଭ୍ରୂଣର ବ୍ୟଞ୍ଜନାକୁ ପରମବିଶ୍ୱାସରେ ଗ୍ରହଣ କରି ନେଉଛି ଆଉ ଠିକ୍ ସେହି ସମୟରେ ପ୍ରସୂତିଭବନରୁ ଭାସି ଆସୁଛି ଭୂମିଷ୍ଠ ଶିଶୁର ଆନନ୍ଦ ବେଦନାମୟ ସଙ୍ଗୀତ କୁଆଁ କୁଆଁ···ଏହି ଦୁଇଟି ସ୍ଥିତିର ବ୍ୟବଧାନକୁ ପରିପୂର୍ଣ୍ଣ କରି ଦେହଚେତନା ବିଦେହୀ ଏକ ସାର୍ବଜନୀନ ବାତ୍ସଲ୍ୟରେ ରୂପାନ୍ତରିତ ହୋଇଯାଉଛି । ମନୋରମା ଅନୁଭବ କରୁଛି ସଦ୍ୟପ୍ରସୂତିର ସମସ୍ତ କ୍ଳାନ୍ତି । ତାଙ୍କର ସୃଷ୍ଟିକ୍ଷମତାତ୍ୟାଗୀ କମଳକୁ ଦେହ ସମର୍ପଣ କରିବା ସହିତ ବୈଷ୍ଣବୀର ପ୍ରସବ ବେଦନା ଜାଣି ନା ଜାଣି ଏକ ଅବିଚ୍ଛେଦ୍ୟ ସମ୍ପର୍କ ସୂତ୍ରରେ ଛନ୍ଦି ହୋଇଯାଇଛି—ଦେଶ-କାଳାତୀତ ସେହି ମିଳନ ବିନ୍ଦୁଟିକୁ ଉପଲବ୍ଧିକୁ ନ ଆଣିଲେ ଗଳ୍ପଟି ଦୁର୍ବୋଧ ରହିଯିବ । କପୋତ ପକ୍ଷୀ ଗୁରୁ ମୋର ଏକ କ୍ଲାସିକ ସୃଷ୍ଟି । ଓଡ଼ିଆମାନଙ୍କ ପାଇଁ ତାର ଏକ ବିଶିଷ୍ଟ ଆବେଦନ ଅଛି । ଓଡ଼ିଆ ଭାଗବତ ପୁରାଣର ଜଗନ୍ନାଥ ଓ ଆମ ସଂସାରର ବୁଢ଼ା ବୁଢୀ ଏ ସବୁ ଅପୂର୍ବ ଭାବାବେଗ ଡୋରିରେ ଛନ୍ଦି ହୋଇ ପଡ଼ିଛନ୍ତି । ପ୍ରାଚୀନ ମୂଲ୍ୟବୋଧର ବନ୍ଧନ ଛିଡ଼ି ଛିଡ଼ି ଆସୁଛି । ନୂତନ ମୂଲ୍ୟବୋଧ ସ୍ପଷ୍ଟ ହୋଇ ଉଠି ନାହିଁ—ଦ୍ୱନ୍ଦ୍ୱ ଓ ସଂଶୟ ଭିତରୁ ବୁଢ଼ା ସହଜ ସ୍ୱାଭାବିକ ନିଃସଂଶୟ ପଥ ବାଛି ନେଇଛି – ସାଧନା ତାର ଜ୍ଞାନ ବୈରାଗ୍ୟର । ଏବେ କିନ୍ତୁ କରୁଣା ସ୍ପର୍ଶରୁ ମୁକ୍ତି ସୁଲଭ ହୋଇଗଲା । କିନ୍ତୁ ବୁଢ଼ୀ ମନୁଆ ବୋଉ ? ପ୍ରଥମେ ସେ ସଂସାର କାଟି ପାରି ନାହିଁ । ସାଧନା ତାର ପ୍ରେମ ଓ କରୁଣା, ବୈରାଗ୍ୟ ଅନ୍ତର୍ନିହିତ । ପ୍ରେମର ନୈର୍ବ୍ୟକ୍ତିକ ରସାନୁଭୂତି ପାଖରୁ ବୈରାଗ୍ୟ ଦୂରରେ ରହିପାରେ ନାହିଁ । ତେଣୁ ଆପାତତଃ ମୂଢ଼ା ନାରୀଟିର ମୁହୂର୍ତ୍ତକେ ଅପୂର୍ବ ରୂପାନ୍ତର ହୋଇଗଲା—ବୁଢ଼ାର ରୁଦ୍ରାକ୍ଷମାଳାଟିକୁ ଗଳାରେ ପିନ୍ଧି ବୁଢ଼ାର ଶବଟିକୁ ସ୍ମୃତିରେ ଜାକି ସେ ପୋଡ଼ି ହୋଇ ମୃତ୍ୟୁବରଣ କରିଛି—ମୃତ୍ୟୁ କି ତାକୁ ମାରି ପାରେ ? ବରଂପୋଡ଼ା ତାର ଦେହ ଭିତରୁ ଶୁଦ୍ଧୋଜ୍ଜ୍ୱଳ ରୂପରେ ପ୍ରକଟିତ ହୋଇଗଲା ଈଶ୍ୱର ଚିରନ୍ତନ ପ୍ରେମିକାଟି—ପ୍ରେମର, ଅନୁରାଗର ଓ ଲୀଳାର ଅପୂର୍ବ ନାରୀ ଚେତନାଟି ଭକ୍ତିର ଓ ପ୍ରୀତିର । ତାକୁ କିଏ ପୁଣି ନ ବନ୍ଦିବ ? ଆମ ବୁଢ଼ୀଆଈଙ୍କ ଭିତରେ ଚିର ସଂଗୁପ୍ତ ପ୍ରେମିକା ଚେତନାଟିକୁ ଲେଖକ ଦେଖି ଦେଖାଇ ଦେଲେ । କିଛି ନୂଆ କଥା ନୁହେଁ—ଅଥଚ ସଂପୂର୍ଣ୍ଣ ନୂଆ ଅନୁଭବର କଥା । 'ମୂର୍ଚ୍ଛିତ ବିଷାଦ' ଓ 'ଅନ୍ୟରୂପ ରୂପାନ୍ତର'

ଅନେକାଂଶରେ ନୂଆ । ଶ୍ରୀଅରବିନ୍ଦ ଦର୍ଶନ ଓ ଷଡ୍‌ଗଳ୍ପର ଆର୍ଟ ନିର୍ବୋଧ ମିଳନରେ ଯେଉଁ ଜଗତ ଓ ଜୀବନର ରୂପାନ୍ତର ପ୍ରତ୍ୟାଶା—ତହିଁରୁ ଉଙ୍କିମାରୁଛି ସୁଖଦୁଃଖର ବନ୍ଧଉର୍ଦ୍ଧ୍ୱରେ ଜଗତ ଓ ଜୀବନକୁ ମୂର୍ଚ୍ଛିତ କରିଦେବାକୁ ଶୁଭ୍ର, ସୁନ୍ଦର ବିଷାଦ ମଧୁର ସ୍ୱର ମୂର୍ତ୍ତିଟିଏ । 'ମୂର୍ଚ୍ଛିତ ବିଷାଦର' । ଶ୍ରୀମନ୍ତ ଗ୍ଲେଷ୍ଟବପୁ ମୂର୍ଚ୍ଛିତ ବିଷାଦର ସୁନ୍ଦର ବିଗ୍ରହ । ସମଗ୍ର ଗଳ୍ପଟି ଏକ ରୂପକ । ଆଧୁନିକ ଆତ୍ମ-ସଚେତନ ଭଦ୍ର ମଣିଷଟି ମୁକ୍ତ ସ୍ୱର୍ଗେ—କିନ୍ତୁ ମୁକ୍ତ ବାସନାର ବ୍ୟାକୁଳ ଉତ୍‌କ୍ଷିପ୍ତତାରେ ଡଙ୍ଗାଟିକୁ ନଙ୍ଗର ଖୁଣ୍ଟରୁ ନ ଫିଟାଇ ସେ ରାତିସାରା ଆହୁଲ ମାରିବାରେ ଲାଗିଯାଏ । ପ୍ରତି ସକାଳେ ଦେଖେ ଡଙ୍ଗା ଯେଉଁଠି ଥିଲା ସେଇଠି ଅଛି—ନୈରାଶ୍ୟ ଓ ଜଡ଼ତା ତାର କର୍ମଫଳ । ପାଖରେ ସଂସାର ପଡ଼ିଛି ଠିକ୍ ତାର ମହାଅଭିମାନୀ ସଂଯତବାକ୍ ବୃଦ୍ଧ ପକ୍ଷାଘାତଗ୍ରସ୍ତ ମାସୋକିଷ୍ଟ ବାପାଙ୍କ ପରି । ବ୍ୟକ୍ତିଗତ ସ୍ତରରେ ସେଠି ନିଜ ପୀଡ଼ାରୁ ସୁଖ ଆଦାୟ କରିବାକୁ ହୁଏ । ଭଉଣୀ ମଞ୍ଜୁ, କିନ୍ତୁ ସ୍ୱର୍ଗ ଓ ମର୍ତ୍ତ୍ୟକୁ ଛୁଇଁ ଛୁଇଁ କବିତାପରି ଫୁଟିଛି—ପାପ ବୋଧ ପୀଡ଼ିତା ପୃଥିବୀର ଗୋଟିଏ ଫୁଲ ସେ ମାତ୍ର । ପତ୍ନୀଲୀଳା ଓ ମାତା ଯେପରି ପାପବୋଧରୁ ତ୍ରାଣ ପାଇବାର କାମନା—ତାଙ୍କର ପ୍ରତ୍ୟାଶା ସ୍ୱର୍ଗରୁ କରୁଣା ଝରି ପୃଥିବୀର ପାପରାଶି ଧୋଇ ନେବ । କିନ୍ତୁ କରୁଣା ଝରି ଆସେ ନାହିଁ—ପ୍ରତିମୁହୂର୍ତ୍ତରେ ମନେ ହୁଏ—ଏଇ ସଂସାର ଧ୍ୱଂସ ହେଲା । ଏହି ସଙ୍କଟକାଳରେ ଓହ୍ଲାଇ ଆସିଲେ ଆନନ୍ଦ ମଧୁର ନୈର୍ବ୍ୟକ୍ତିକ ବିଷାଦ ଶ୍ରୀମନ୍ତ ଗ୍ଲେଷ୍ଟବପୁ ରୂପରେ । ତାଙ୍କ ଦର୍ଶନରେ ନିରଞ୍ଜନର ସଂଗୁପ୍ତ ପାପଡୋର ଛିଣ୍ଡିଲା ମଞ୍ଜୁର ହସ ଓ ଶ୍ରୀମନ୍ତଙ୍କ କଣ୍ଠ ସଙ୍ଗୀତ ମୂର୍ଚ୍ଛିତ ବିଷାଦର ଦୁଇଟି ରୂପ—ଗୋଟିଏ ପ୍ରେରଣା ଓ ଅନ୍ୟଟି ସ୍ୱୟଂ ରୂପାନ୍ତର ପ୍ରକ୍ରିୟା ମୂର୍ତ୍ତି ଏକ ମୂର୍ଚ୍ଛନାର ପ୍ରାଣବନ୍ତ ବିଗ୍ରହ । ଦୁଃଖରୁ ଆତ୍ମରକ୍ଷା କରି କେହି ସୁଖୀ ହୋଇପାରି ନାହିଁ । ଦୁଃଖ ମଧ୍ୟରେ ହିଁ ଦୁଃଖରୁ ପରିତ୍ରାଣ ମିଳେ । ଦୁଃଖ ନୈର୍ବ୍ୟକ୍ତିକ ସ୍ତରକୁ ଉତ୍ତୀର୍ଣ୍ଣ ହୋଇଥିଲେ ସୁଖରେ ରୂପାନ୍ତରିତ ହୁଏ । ଆନନ୍ଦ ସାଧ୍ୟ ହେଲେ ସାଧନା ବିଷାଦ । ସେଠି କେହି ସୁଖୀ ହୁଏ ନାହିଁ କି ଦୁଃଖୀ ହୁଏ ନାହିଁ—ହୋଇଥାଏ କେବଳ ମୂର୍ଚ୍ଛିତ । 'ଅନ୍ୟରୂପ-ରୂପାନ୍ତର' ଆମ ପ୍ରେମହୀନ ଜୀବନ ଉପରେ ଏକ ପ୍ରଚଣ୍ଡ ଆଘାତ । ନିଶାଣରେ ତାର ଉଭୟ ବ୍ୟଙ୍ଗ ଓ କରୁଣାର ବାର୍ତ୍ତା ପ୍ରେମହୀନ ଜୀବନ ଓ ଜଗତ—ବ୍ୟକ୍ତି, ସମାଜ ଓ ରାଷ୍ଟ୍ର—କଟକ ସହର

ପରି ସୁନ୍ଦର ! ଘୋର ଆବର୍ଜନାମୟ ମନୁଷ୍ୟ ପୃଷ୍ଠଭୂମିରେ ପରିପୂର୍ଣ୍ଣ । ସୁନ୍ଦର ଓ ସରସ ହେବାର ସବୁ ସମ୍ଭାବନା ଥାଇ ଥାଇ ବଡ ଅଦ୍ଭୁତ ଭାବରେ ତାହା ସଂସ୍କୃତିହୀନ । ପ୍ରେମକୁ ଅସ୍ୱୀକାର କରି ଗୋକୁଳାନନ୍ଦ ଚୌଧୁରୀ ଜଗଦ୍‌ବ୍ୟାପୀ ପ୍ରତିଷ୍ଠା ଅର୍ଜିଥିଲେ, ଆଜ ଜୀବନର ପଶ୍ଚିମ ଦିଗନ୍ତରେ ଉପଲବ୍‌ଧି କରୁଛନ୍ତି ଶୂନ୍ୟତା—ଭଗବାନଭଗଶୂନ୍ୟ ଶୂନ୍ୟତା – କିଛି ପାଇ ନାହାନ୍ତି ଯେପରି—କମ୍ପା ପାଇ ହରେଇଛନ୍ତି ସବୁ କିଛି । ବ୍ୟାକୁଳ ଅନୁସନ୍ଧାନ କାହାର ବ୍ୟର୍ଥ ହୁଏ ନାହିଁ । ସେ ଭେଟିଲେ ଏବେ ସୁକୁମାରୀକୁ – ପ୍ରେମର ସଂଯୋଗସୂତ୍ର ଲଳିତାକୁ—ହାତରେ ତାର ପବନ ପରା ବେଲୁନ୍ ଚଢେଇ । ତାକୁ ଦେଖିଲାମାତ୍ରେ ଘାର୍ଘ ମର୍ମନ୍ତୁଦ ବିସ୍ମରଣ ମଧ୍ୟରୁ ଚୌଧୁରୀ ଆତ୍ମରକ୍ଷା କରି ମଧୁର ସଚେତନ ପୁଲକରେ ଫାଟି ପଡ଼ିଲେ – ଭେଟିବେ ସେ କୃଷ୍ଣାଭାମାକୁ—ପ୍ରେମମୟୀ ନାରୀର ଶାଶ୍ୱତ ମୂର୍ତ୍ତିକୁ । ପ୍ରେମର ସ୍ମୃତି ତାଙ୍କୁ ରୂପାନ୍ତରିତ କରିଦେଲା । – ସେ ହେଲେ ପବନ ପରା ବେଲୁନ୍ ଚଢ଼େଇଟିଏ—ବେଶ୍ ହାଲୁକା ବେଶ୍ ସ୍ୱଚ୍ଛନ୍ଦ – ଏବେ ମାଟିର ମୋହ କଟେଇ ସ୍ୱର୍ଗଲୋକକୁ ଉଡ଼ିଯିବେ । କଟକ ସହରକୁ ପ୍ରେମ ଦେବେ, ବାଟ ସଫା କରାଇବେ । କଟକ ପାଇଁ କ'ଣ ଗୋଟିଏ ପବନ ପରା ବେଲୁନ୍ ଯଥେଷ୍ଟ ? ସାହିବାଲାଏ କ'ଣ କଟକକୁ ସୁନ୍ଦର ହେବାକୁ ସୁଯୋଗ ଦେବେ ? ନିରୁତ୍ତର ଏହି ଜିଜ୍ଞାସାରେ ଆମକୁ ଛାଡ଼ି ଦେଇଛନ୍ତି ଗାଳ୍ପିକ । ଇଣ୍ଡିଜକ୍ଷଂ ଜାଗରେନ—ଅନ୍ୟ ଏକ ଉଦ୍ଭଟ ଗଳ୍ପ । ଥୀମ୍ ତାର ନୂଆ – ଆଙ୍ଗ୍ରିଂଯୁଙ୍ଗମ୍ୟାନ୍‌ର ( କ୍ଷୁବ୍ଧ-ତାରୁଣ୍ୟ ) ଆଇଡେଣ୍ଟିଟି ( ଆତ୍ମ-ପରିଚୟ ) ଅନୁସଂଧାନ । ନାମହୀନ ଆଇଡେଣ୍ଟିଟିହୀନ ଯୁବକ ଖୋଜୁଛି ତା'ର ବାପାକୁ । ପ୍ରତିଷ୍ଠିତ ଜୀବନର ସବୁ ମୂଲ୍ୟବୋଧକୁ ତା'ର ପ୍ରଶ୍ନ ଓ ଜିଜ୍ଞାସା ଭାଙ୍ଗି ଦେଉଛନ୍ତି—ଯୀଶୁ ଖ୍ରୀଷ୍ଟ ସ୍ୱାମୀ ବିବେକାନନ୍ଦ, ଓ ଶ୍ରୀଅରବିନ୍ଦଙ୍କଠାରୁ ସେ ସାନ୍ତ୍ୱନା ଖୋଜିପାଉନାହିଁ । ଗଳ୍ପଟି ସଂପୂର୍ଣ୍ଣ ଆଜିର ଯୁବକର ମଗ୍ନଚୈତନ୍ୟର କଥା । ଯୁବକ ଆଜି ନାମହୀନ— ଆଇଡେଣ୍ଟିଟିହୀନ—ସେଥିଲାଗି ତାର ଆନନ୍ଦର ସୀମା ମଧ୍ୟ ନାହିଁ । କିନ୍ତୁ ଏହି ଫାଲକନ୍ ( ଗଳ୍ପର ସବୁ ଯୁବକ ଯୁବତୀ ନାମହୀନ – ଯେ କୌଣସି ନାମରେ ତାକୁ ଡାକଲେ ଚଳିବ ) ଅଭୂତ ଏକ ଚିତ୍ର—ସେ ଏକାଧାରରେ ଆଜିର ହିପ୍ପୀ ଓ ଭିଲେନ୍ । ହୋଟେଲରେ ନ ଥାଇ କି ହୋଟେଲ୍‌ରେ ଅଛି । ବାପାକୁ ଖୋଜୁଛି – ଲେଖକ ଯେପରି ତାକୁ ନେଇ

ଶ୍ରୀଅରବିନ୍ଦ ଆଶ୍ରମରେ ପହଞ୍ଚାଇ ଦେଲେ । ନିଜ ଭିତରେ ନିଜର ବାପା ବିଦ୍ୟମାନ—ତାଙ୍କୁ ଚିହ୍ନିବାକୁ ହେଲେ ପ୍ରଥମେ ମା'ଙ୍କ ଚେତନାର ଉଦ୍-ବୋଧନ ପ୍ରୟୋଜନ । ଯଥାର୍ଥ ମାଙ୍କୁ ଭେଟିଲେ ବାପା ଅପରିଜ୍ଞାତ ରହିବେ ନାହିଁ—ତେବେ ଗଳ୍ପଟି ପ୍ରବୃତ୍ତିର ଧର୍ମୀ ନୁହେଁ – ଯୁଗେ ଯୁଗେ ଭାରତୀୟଗଣ --- ନାରୀଶକ୍ତିକୁ ଅଙ୍ଗୀକାର କରି ଈଶ୍ୱରଙ୍କୁ ଉପଲବ୍‌ଧିକୁ ଆଣିଛନ୍ତି ।

ଏହି ଗଳ୍ପ-ସଂକଳନର ଭୂମିକା ଲେଖିବାର ସୌଭାଗ୍ୟ ଲେଖକଙ୍କୁ ସୁଲଭ ହୋଇଥିବାରୁ ସେ କୃତାର୍ଥ ହୋଇଛି । ଗାଳ୍ପିକ ତାହାର ଉଭୟ ଆନ୍ତରିକ ଧନ୍ୟବାଦ ଓ ଅଭିନନ୍ଦନ ଗ୍ରହଣ କରନ୍ତୁ ।

ଅଧ୍ୟାପକ ଶ୍ରୀ ଦାଶରଥି ଦାସ

ରେଭେନ୍‌ସା କଲେଜ
କଟକ-୩

—୦—

# ଅସ୍ତ ସୂର୍ଯ୍ୟର ରଙ୍ଗ

ଡ୍ରେସିଂ ଟେବୁଲ୍ ପାଖେ ବସି ମୁହଁରେ କୋମଳ ପ୍ରସାଧନର ରଙ୍ଗୀନ ପ୍ରଲେପ ଘଷୁଥିଲେ ମିସ୍ ମନୋରମା ମିଶ୍ର । ସ୍ଥାନୀୟ ସବ୍‌ଡିଭିଜନାଲ ହାସପାତାଳର ଲେଡ଼ି-ଆସିଷ୍ଟାଣ୍ଟ-ସର୍ଜନ କୁମାରୀ ମନୋରମା ମିଶ୍ର । ନଠେଇନଠେଇ ଦେଖୁଥିଲେ ଦର୍ପଣରେ ନିଜର ମୁହଁକୁ । ଇସ୍ ! ସମଗ୍ର ମୁଖମଣ୍ଡଳରେ ଗତିଶୀଳ ସମୟ-ରଥଚକ୍ରର କେତେ ଘୋଷରା ବାଟ ରେଖାଙ୍କିତ ହୋଇ ସ୍ପଷ୍ଟ ଦିଶିଲଣି । ଆଖିପତା ତଳେ ତଳେ ଜମି ଆସିଲଣି ଉତ୍ତର ତିରଶିର ପାଉଁଶିଆ ମେଘ !

ସମସ୍ତ ଗୁଳିଗଲଣି । ଗୁଳିପାଇଛୁ; ମାତ୍ର ରଖିପାରୁଛ ତାଙ୍କ ମୁହଁ ଉପରେ ତାର ରୁକ୍ଷତାର ପଦଚିହ୍ନ, ତାର ବ୍ୟର୍ଥତାର କାଳିମା ।

ଏସବୁକୁ ସେ ବାଧ୍ୟ ହୋଇ ନିରୁପାୟ ଭାବରେ ବହୁ ପୂର୍ବରୁ ସ୍ୱୀକାର କରିଛନ୍ତି । ବେଳେ ବେଳେ ମଧ୍ୟ ସେ ଏସବୁ ପ୍ରତି ନିର୍ଲିପ୍ତ ହୋଇ ପଡ଼ିଛନ୍ତି ।

ଆଜ କିନ୍ତୁ ସେ ଏହି ବ୍ୟର୍ଥତାକୁ, ଏଇ ନୈରାଶ୍ୟକୁ, ଏଇ ରୁକ୍ଷତାକୁ ବା ଏହି କାଳିମାକୁ ସ୍ୱୀକାର କରିବା ଲାଗି ପ୍ରସ୍ତୁତ ନୁହନ୍ତି ।

ବାହାରେ ଶ୍ରାବଣର ବର୍ଷଣମୁଖର ରାତିର ଘନ ଅନ୍ଧକାର । ଏଇ ବର୍ଷାମେଦୁର ଶୀତଳ ରାତିର ଅନ୍ଧକାର ଭିତରେ ଯେପରି ଜୀବନର ତୃଷ୍ଣା ବିଦ୍ୟୁତର ଝଲକରେ ପୁଣି ଜଳିଉଠୁଛି । ଆଜ ଦେହ ଓ ମନର ପ୍ରତିଟି ମାଂସ ଆଜ ସ୍ନାୟୁର ଅଣୁ ପରମାଣୁ ସେହି ବିଦ୍ୟୁତ୍ ସ୍ପର୍ଶରେ ଚାତି ଉଠୁଛନ୍ତି—ମାତି ଉଠୁଛନ୍ତି । ହୁ ହୁ ହୋଇ ବୃକ୍ଷଲତାକୁ ଦୋହଲାଇ ଦେଇ---ଥରାଇ ଦେଇ—ଜଳକଣାସିକ୍ତ ବର୍ଷାବାୟୁ ଝରକା ଦେଇ ଘର ଭିତରକୁ ପଶିଆସୁଛି । ଆଜ – ସେହି ହୁ ହୁ ଉନ୍ମତ୍ତ ବତାସ ଭିତରେ ଯେପରି ବିଗତ ଯୌବନର ବୁଭୁକ୍ଷୁ ପ୍ରେତ ଆର୍ତ୍ତନାଦ କରିଉଠୁଛି !!

କମଳ ମିଶ୍ର ଖବର ପଠାଇଛି—ସେ ଆଜ ରାତି ଆଠଟାରେ ଏଠି ଆସି ପହଞ୍ଚିବ । ତାର ଖାଇବା ଲାଗି ପ୍ରସ୍ତୁତ କରିବାକୁ ହେବ ।

କିନ୍ତୁ କାହିଁ କମଳ ? ଘଣ୍ଟାରେ ଯେ ଆଠଟା ବାଜିଗଲାଣି ! ଆଜି ଅବଶ୍ୟ ତାଙ୍କର ହାସପାତାଳରୁ ଆସିବା ଟିକେ ଡେରି ହୋଇଗଲା । ଆସିଷ୍ଟାଣ୍ଟ ସର୍ଜନ ଛୁଟି ନେଇଛନ୍ତି । ସାତ ଦିନ ପର୍ଯ୍ୟନ୍ତ ଡାକ୍ତରଖାନାର ସମସ୍ତ ଭାର ତାଙ୍କର ଉପରେ । ସାନ ଡାକ୍ତର ସମ୍ପୂର୍ଣ୍ଣ ଅନଭିଜ୍ଞ—ପଶ୍ଚିମ-ବଙ୍ଗର କେଉଁ ଏକ ଅଖ୍ୟାତ ମେଡ଼ିକାଲ୍ ସ୍କୁଲରୁ ପାଶ୍ କରି ଓଡ଼ିଶାର ଡାକ୍ତର ଅଭାବ ପୂରଣ କରୁଛନ୍ତି ଏଠି । ଦୁଇ ତିନ ବର୍ଷ ହେଲା ଚାକିରି କଲେଣି; ଅଥଚ ରୋଗ ବା ଔଷଧ ସମ୍ପର୍କରେ ମୌଳିକ ଧାରଣା ଏପର୍ଯ୍ୟନ୍ତ ବି ନାହିଁ । ବଡ଼ ଡରୁଆ । ଗୋଟିଏ ବଥ ଅପରେସନ କଲାବେଳେ ବି ବୁଦ୍ଧି ଦିଶେ ନାହିଁ—ହାତ ଥରେ ! ସାମାନ୍ୟ ସଲ୍ଫା ଔଷଧର ପ୍ରୟୋଗରେ ବି ମାତ୍ରା ଜ୍ଞାନ ନାହିଁ । ଏଭଳି ଲୋକ ନେଇ କ'ଣ ଡାକ୍ତରଖାନା ଚଳେ ? ସବୁ ପ୍ରକାର ରୋଗୀ ଆସି ଜୁଟନ୍ତି ଲେଡ଼ି ଡକ୍ଟରଙ୍କ ପାଖରେ । ସିଷ୍ଟର, ନର୍ସ, ଧାଈ, ବେହେରା ସମସ୍ତେ ସବୁ କଥାରେ ଲେଡ଼ି ଡାକ୍ତରଙ୍କୁ ହି ବ୍ୟସ୍ତ କରନ୍ତି ।

ଆସିଷ୍ଟାଣ୍ଟ ସର୍ଜନ ନାନା କାରଣରୁ କର୍ତ୍ତବ୍ୟ ପରାଙ୍ମୁଖ । ତାଙ୍କ ଭିତରେ ସବୁବେଳେ ଅବଶୋଷ—ତାଙ୍କ ସାଙ୍ଗର ଲୋକେ ସିଭିଲ୍-ସର୍ଜନ ହେଲେଣି ଅଥଚ ସେ ଏମିତି ପଡ଼ିଛନ୍ତି । ଘରୋଇ ବ୍ୟାପାରରେ ବି ତାଙ୍କର ବହୁତ ଅସୁବିଧା ଅଛି । ସବୁବେଳେ ସେ ଅନ୍ୟମନସ୍କ । ବଡ଼ ନିର୍ଲିପ୍ତ ଭାବେ—ନିସ୍ପୃହ ଭାବେ ସେ କେବଳ ଡ୍ୟୁଟି କରିଯାନ୍ତି । ଫଳରେ ଅଧିକାଂଶ ସମୟ ବଡ଼ ଗୋଟାଏ ସବ୍‌ଡ଼ିଭିଜାନାଲ୍ ହାସ-ପାତାଳର ବହୁମୁଖୀ ଦାୟିତ୍ୱ—ଗାଇନାକୋଲୋଜିରୁ ମାଟରନିଟି—ମେଡ଼ିସିନ୍‌ରୁ ଅପରେସନ୍—ପାଥୋଲୋଜିରୁ ଫାମିଲି ପ୍ଲାନିଂ ପର୍ଯ୍ୟନ୍ତ ସବୁ କଥା ତାଙ୍କ ଉପରେ ହିଁ ପଡ଼େ । ତା' ବାଦ୍ ପୁଣି ଅଫିସର ଯାବତୀୟ ଫାଇଲ କାମ ।

ଆସିଷ୍ଟାଣ୍ଟ ସର୍ଜନ ତୋଷାମଦ କଲା ଭଳି କହନ୍ତି –

ତୁମର ତ ସଂସାର ନାହିଁ ମନୋରମା ! ସନ୍ନ୍ୟାସିନୀ ତୁମେ । ଦେଶସେବା – ଜନସେବା କରିଯାଅ – ଫଳ ପାଇବ ପରତରେ । ମଲେ

ସ୍ୱର୍ଗବାସ ଜଣ୍ଣପ୍ରୁ । ଆମେ ସବୁ ସଂସାରୀ ଲୋକ । ଟିକିଏ ଆମ ଲାଗି ତ୍ୟାଗ ସ୍ୱୀକାର କର, ଧର୍ମ ହେବ ।

ଲେଡ଼ି ଡାକ୍ତର ମନୋରମାଙ୍କ ଓଠରେ ଏକ ଜ୍ୟୋତିହୀନ ହସର ଲେଖା ଫୁଟିଉଠେ । ମନେ ମନେ ଭାବନ୍ତି ମନୋରମା –

ସତ କଥା – ସେ ସନ୍ନ୍ୟାସିନୀ । ତାଙ୍କର ସଂସାର ନାହିଁ । ସଂସାର ତାଙ୍କ ଲାଗି ନୁହେଁ, ସେଇ କେବଳ ସଂସାର ଲାଗି ।

କିନ୍ତୁ ସେ କ'ଣ ସଂସାରକୁ ଡାକି ନ ଥିଲେ ? ସଂସାର ବି ତାଙ୍କୁ କ'ଣ ଥରେ ଡାକି ନ ଥିଲା ? ସେ ମଧ୍ୟ ସଂସାରର ଡାକକୁ ଶୁଣୁଥିଲେ । ଆଉ ସଂସାର ବି ତାଙ୍କ ଡାକକୁ ଶୁଣିଥିଲା । ମାତ୍ର କ'ଣ ହେଲା ?

ସଂସାର ଡାକିଲା—ମାତ୍ର ଡାକଦେଇ ପୁଣି ଆପଣା ବାଟରେ ଚାଲିଗଲା । ଅପେକ୍ଷା କଲା ନାହିଁ । କାହା ଅପେକ୍ଷା କରିବା ସଂସାରର ଧର୍ମ ନୁହେଁ ।

କାଲି ପରି ମନେ ପଡ଼ୁଛି । ମନେ ପଡ଼ିଲେ ହିଁ ହୃଦୟ ହାହାକାର କରିଉଠେ । ଟିକିଏ ବେଶୀ ବୟସରେ ହିଁ ସେ ପାଠ ପଢ଼ା ଆରମ୍ଭ କରିଥିଲେ । ଡାକ୍ତରୀ ପାସ୍ କଲାବେଳକୁ ତାଙ୍କୁ ପ୍ରାୟ ବେଶୀ ବର୍ଷ ଅତିକ୍ରମ କରିଯାଇଥିଲା । ମାଆ ମରିଥିଲା ପିଲାଦିନୁ.........ବାପା ଠିକ୍ ସେହି ବର୍ଷ ମରିଗଲେ । ନିଜର ହୋଇ କେବଳ ସାନଭାଇଟିଏ । ସେତେବେଳକୁ କଲେଜରେ ନାମ ଲେଖାଇଥାଏ । ବାପା ଥିଲେ ସାମାନ୍ୟ ଜଣେ ଶିକ୍ଷକ ଗୋଟିଏ ଗ୍ରାମ୍ୟ ସ୍କୁଲରେ । କିଛି ତାଙ୍କର ସଞ୍ଚୟ ନ ଥିଲା । ଫଳରେ ସାନଭାଇଟିକୁ ମଣିଷ କରିବାର ଦାୟିତ୍ୱ ପଡ଼ିଥିଲା ତାଙ୍କର ଉପରେ ।

ମାତ୍ର ଠିକ୍ ସେହି ସମୟରେ ତାଙ୍କ ଆଗରେ ପ୍ରଣୟ ଆଉ ପରିଣୟର ପ୍ରସ୍ତାବ ନେଇ ଠିଆହେଲେ ଡାକ୍ତର ଶୁଭେନ୍ଦୁ ଚୌଧୁରୀ । ଅଳ୍ପଦିନ ହେଲା ସେ ତାଙ୍କର ସ୍ତ୍ରୀକୁ ହରାଇଥାନ୍ତି । କ୍ଲାସରେ ପଢାଉ ପଢ଼ାଉ ମନୋରମା ଉପରେ ତାଙ୍କର ଦୃଷ୍ଟି ପଡ଼ିଥିଲା । ମନୋରମାଙ୍କର ଶାନ୍ତ ସ୍ୱଚ୍ଛ ମଧୁର ବ୍ୟବହାରରେ ସେ ମୁଗ୍ଧ ହୋଇଥିଲେ । ତିରିଶି ବର୍ଷ ବୟସ୍କା ମନୋରମାଙ୍କର ଦେହ ଓ ମନର ମାଧୁର୍ଯ୍ୟ ମଧ୍ୟ ତାଙ୍କର ହୃଦୟକୁ ସ୍ପର୍ଶ କରିଥିଲା ।

ତିନୋଟି ସନ୍ତାନଙ୍କର ଜନକ ହେଲେ ବି ଡା: ଶୁଭେନ୍ଦୁଙ୍କର ଚେହେରାରେ ତାର କୌଣସି ପ୍ରଭାବ ପଡ଼ି ନଥିଲା । ସୁନା ପରି ରଙ୍ଗ— ବଳିଷ୍ଠ ଗଢ଼ଣ । ମୁହଁରେ—କଥାରେ—ଆଉ ଚାଲିଚଳନରେ ଯୁବକୋଚିତ ଉଦ୍ଦାମ ତେଜ ଆଉ ଉତ୍ସାହ ଫୁଟି ଉଠୁଥିଲା । ମାତ୍ର ଡା: ଶୁଭେନ୍ଦୁଙ୍କର ମନ ଥିଲା ଖୁବ୍ ବେଶୀ ସାଂସାରିକ । କିଛିଦିନ ପରେ ଡା: ଶୁଭେନ୍ଦୁ ଦିନେ ତାଙ୍କୁ ଡାକି କହିଲେ –

ବିବାହ ଲାଗି ପ୍ରସ୍ତୁତ ହୁଅ ମୀନୁ ! ବିବାହ ବ୍ୟତୀତ ଏଭଳି ଶିଥିଳ ଅସାମାଜିକ ପ୍ରଣୟଲୀଳାରେ ମୋର ବିଶ୍ୱାସ ନାହିଁ – ଆସ୍ଥା ମଧ୍ୟ ନାହିଁ । ମୁଁ ତ ଆଉ କଲେଜ ପିଲା ନୁହେଁ ଯେ – ଏମିତି ଗୋଟାଏ ରୋମାଣ୍ଟିକ୍ କୁହୁଡ଼ି ଭିତରେ ପହଁରୁଥିବି ଜୀବନସାରା !!

କଥାଟା ଅବଶ୍ୟ ଖୁବ୍ ଭଲ ଶୁଣାଯାଉ ନ ଥିଲା କାନକୁ ସେତେବେଳେ ମନୋରମାଙ୍କର, ମାତ୍ର ତାଙ୍କର ହୃଦୟରେ ଡା. ଶୁଭେନ୍ଦୁଙ୍କର ଏଇ ଡାକର ପ୍ରତିଧ୍ୱନି ଆଲୋଡ଼ନ ହୋଇ ଉଠିଥିଲା । ସେ ନିଜେ ମଧ୍ୟ ବିବାହ ଲାଗି ବ୍ୟଗ୍ର ହୋଇ ପଡ଼ୁଥିଲେ । କିନ୍ତୁ ସେ ଜାଣିଥିଲେ ଯେ ସେପର୍ଯ୍ୟନ୍ତ ମଧ୍ୟ ନିଜ ଦାୟିତ୍ୱ ନିଜେ ମୁଣ୍ଡାଇବାକୁ ସମର୍ଥ ହୋଇ ନାହାଁନ୍ତି ! ସେଥିଲାଗି ଇଙ୍ଗିତରେ ସେ ଜଣାଇଥିଲେ—ଆଉ କିଛିଦିନ ସମୟ ଦେବା ଲାଗି—ଅପେକ୍ଷା କରିବା ଲାଗି । ମାତ୍ର ଡା: ଶୁଭେନ୍ଦୁ ରାଜି ହେଲେ ନାହିଁ ।

ସମୟକୁ ବିଶ୍ୱାସ କରି ଅପେକ୍ଷା କରିବାର ସମୟୋଚିତ ବୁଦ୍ଧି ମୋର କଟିଯାଇଛି ମୀନୁ ! ମୋର ମଧ୍ୟ ଯଥେଷ୍ଟ ସମୟ ହୋଇଗଲାଣି । ସମୟକୁ ନେଇ ଆଉ ଥରେ ରୋମାଣ୍ଟିକ୍ ଖେଳ ଖେଳିବାକୁ ମୋର ସମୟ ବା କାହିଁ ? ମୁଁ ବିବାହ ଚାହେଁ, ମୋର ପତ୍ନୀ ଦରକାର – ପ୍ରିୟା ନୁହେଁ । ମୋର ତିନୋଟି ପିଲାକୁ ଏତେ ଦିନ ସମ୍ଭାଳିବ କିଏ ? ତାଙ୍କର ମାଆ ଦରକାର ।

ଅବଶ୍ୟ ସେତେବେଳେ ଅଭିମାନ ଆସିଥିଲା ମନୋରମାଙ୍କ ମନରେ । ଯେଉଁ ପ୍ରେମ ଅପେକ୍ଷା କରିବାକୁ ପ୍ରସ୍ତୁତ ନୁହେଁ, ସେ ପ୍ରେମକୁ କ'ଣ ବିଶ୍ୱାସ କରାଯାଇପାରେ ଆଜୀବନ ?

ଡା: ଶୁଭେନ୍ଦୁ ଅପେକ୍ଷା କରି ନ ଥିଲେ । ଅନ୍ୟ ସ୍ଥାନରେ ବିବାହ କରିଥିଲେ । ଆଜି ଡା: ଶୁଭେନ୍ଦୁ ଜଣେ ନାମଜାଦା ଡାକ୍ତର । ଅନେକ ଯଶ, ଅର୍ଥ ଓ ସମ୍ମାନ ଉପରେ ପ୍ରତିଷ୍ଠିତ ଏକ ସୁଖୀ ପରିବାର ଭିତରେ ତାଙ୍କର ଜୀବନ ଶାନ୍ତି ଓ ସନ୍ତୋଷ ଭିତରେ ଇ କଟୁଛି ।

ଆଜି ଅବଶ୍ୟ ତାଙ୍କ ଲାଗି ମନରେ ଆଉ ଅଭିମାନ ନାହିଁ । ଯଥେଷ୍ଟ ଭଦ୍ର, ସଂଯତ ଆଉ ବୁଦ୍ଧିମାନ୍ ଲୋକ ଏଇ ଡା: ଶୁଭେନ୍ଦୁ । କାହାକୁ ଠକାନ୍ତି ନାହିଁ କାହା ପାଖରେ ବି ଠକି ହେବାକୁ ସେ ନିଜକୁ ଦିଅନ୍ତି ନାହିଁ । ରେକ୍ଠୋକ୍ କଥା । ସାଂସାରିକ ବୁଦ୍ଧିରେ ପରିପକ୍ୱ ଏଇ ଡା: ଶୁଭେନ୍ଦୁ । ଜୀବନ ତାଙ୍କ ଆଗରେ ଅତି ବାସ୍ତବ—ମଣିଷର ଆନାଟୋମୀ ପରି । ମନର ଖିଆଲ ଭିତରେ ଜୀବନ ଟାକୁ କାଣ୍ଡଜ୍ଞାନଶୂନ୍ୟ ହୋଇ ପକାଇଦେବାକୁ ସେ କହନ୍ତି ବୋକାମି—ବୁଦ୍ଧିହୀନ ଭାବପ୍ରବଣତା । ଫୁଲର ରଙ୍ଗ ଆଉ ବାସ୍ନାରେ ଉନ୍ମତ୍ତ ହୋଇ ଯେଉଁମାନେ ଜୀବନଯାକ ସେଇ ରଙ୍ଗରେ ଇ ହୋରି ଖେଳି ବସନ୍ତି—ଆଉ ସେଇ ବାସ୍ନାରେ ଇ କୁହୁଡ଼ି ପହଁରନ୍ତି—ସେମାନେ କବି । ମୁଁ କିନ୍ତୁ ମୀନୁ, ଡାକ୍ତର । ମୁଁ ଫଳକାମୀ । ଫଳ ମୋ ପକ୍ଷରେ ସତ୍ୟ ହୋଇପାରେ; ମାତ୍ର ତାହା କେବଳ ଫଳର ଜନମୀ ହିସାବରେ । କିନ୍ତୁ ଫୁଲର ରଙ୍ଗ ଆଉ ସୌରଭ ମୋ ପକ୍ଷରେ ମୁଖ୍ୟ ନୁହେଁ । ଆଚ୍ଛା ଥାଅ ମୀନୁ—ମୁଁ ଚାଲିଲି ।

ସେ ଚାଲିଗଲେ । ଚାଲିଗଲେ ସେ ଆପଣା ବାଟରେ । ଆଉ ପଛକୁ ଚାହିଁଲେ ନାହିଁ ।

କିଛିଦିନ ଲାଗି ମନଟା ଭାରି ହୋଇ ଉଠିଥିଲା । ହୃଦୟ ଭିତରେ ଶୂନ୍ୟ ବୋଧ ହୋଇଥିଲା । କେତେ ରାତି ବିଛଣାରେ ନିଦ ହୋଇ ନ ଥିଲା । ଆଖିର ଲୁହରେ ତକିଆ ଭିଜିଥିଲା ।

କିନ୍ତୁ କ୍ରମେ ସବୁ ଭୁଲି ହୋଇଗଲା ଧୁଏଁ ଧୁଏଁ । ଫୁଲର ରଙ୍ଗ ଆଉ ସୌରଭର ମାୟାକୁ ଭଲ ନ ପାଇ—ବିଶ୍ୱାସ ନ କରି ଯେଉଁ ଫଳକାମୀ ପୁରୁଷ ଅବହେଳାରେ, କୌଶଳରେ ତାର ଗାର ଡେଇଁ ଚାଲିଗଲା—ତା ଲାଗି ଫୁଲର ରଙ୍ଗ ଅଣୁମାତ୍ର ବି ମଳିନ ହେଲା ନାହିଁ । ଫୁଲର ସୌରଭ ଏତେ ଟିକିଏ ବି ଉଭୁଇ ହେଲାନାହିଁ ।

କନ୍ତୁ ଆଜ ହେଲନାହିଁ । ଆଜ ଜନ୍ମା ହେଲ ନାହିଁ । ତା ପରେ ଆଜ କାହାକୁ ମନ ଦେଇ ଭଲ ପାଇପାରିଲେ ନାହିଁ ମନୋରମା । କାରଣ ଆଜ ଯେଉଁମାନେ ଡା. ଶୁଭେନ୍ଦୁଙ୍କ ପରେ ଆସିଥିଲେ ପ୍ରଣୟର ମଧୁ-ଗୁଞ୍ଜନରେ ମନୋରମାଙ୍କ ମନ-କାନନକୁ ଝଙ୍କୃତ କରି—ତାଙ୍କ ମନ-କାନନର ସମସ୍ତ ଫୁଲ ଏକ ଅଭିମାନକ୍ଷୁବ୍ଧ ଶକ୍ତ ଉପେକ୍ଷାର ହସରେ ସେମାନଙ୍କୁ କେବଳ ଗ୍ରହିଁରହିଲେ— ହସିଦେଲେ । ଭଲପେଲ ନାହିଁ—ଡାକିଲେ ନାହିଁ—ଛାଡିଲେ ବି ନାହିଁ ।

ସେମାନେ ବି ଆସିଥିଲେ କେବଳ ସୌରଭଲୋଭୀ—ରଙ୍ଗ-ଲୋଲୁପୀ ଦାପ୍ତିଭିହୀନ ନିଷ୍ଫଳ କାମନାର କ୍ଷଣିକ ଉତ୍ତେଜନା ନେଇ । ମାତ୍ର ମନୋରମା ତ ଆଉ ପିଲା ନ ଥିଲେ !

ବାସ୍—ସେଇ ଦିନୁ ବହୁକାଳ କଟିଗଲାଣି । ଏମିତ ନିଃସଙ୍ଗ ଅର୍ଥହୀନ ଅଫଳପ୍ରସୂ ଏଇ ଜୀବନ । ଫୁଲର ରଙ୍ଗ ବର୍ତ୍ତମାନ ମଉଳିଗଲାଣି—ବାସନା କମି ଅସିଲାଣି । ଆଉ ଏଇ କେତେ ଦିନ ଧରି ଶରୀରରେ କଞ୍ଚିତ୍ ଅନାବଶ୍ୟକ ମେଦ ବୃଦ୍ଧିର ଆଶଙ୍କା ଦେଖାଦେଇଛି ।

ଏଇ ନିରର୍ଥକ ଜୀବନ ପ୍ରତି ବେଳେ ବେଳେ ବଡ଼ ଅସହିଷ୍ଣୁ ହୋଇଉଠନ୍ତି ଡା: ମନୋରମା ଦେବୀ । ଇସ୍—ବଡ଼ ଦୁଃସହ ଏଇ ନିଃସଙ୍ଗ ନିଷ୍ଫଳ ଜୀବନର ଜ୍ୱାଳା । ଏଇ ଏକା ଏକା ଅର୍ଥ ଉପାର୍ଜ୍ଜନ କରିବାରେ ଆଉ ବଞ୍ଚିବାରେ କି ଅବା ସାର୍ଥକତା ଅଛି ଜୀବନର ? ବହୁ ଅର୍ଥ ସେ ଉପାର୍ଜ୍ଜନ କଲେଣି । ବ୍ୟାଙ୍କରେ ଦିନକୁ ଦିନ ସଞ୍ଚିତ ଅର୍ଥର ଅଙ୍କ ମୋଟ ହୋଇଉଠୁଛି । ଆଉ ଏଣେ—ବେକଠାରୁ ପେଟ ପର୍ଯ୍ୟନ୍ତ ଦିନକୁ ଦିନ ଏଇ ଅନାବଶ୍ୟକ ମାଂସ ଆଉ ଚର୍ବିର ସ୍ତର—

ଜୀବନର ସବୁ ରସ ଶୁଖିଆସୁଛି ।

ଆଉ କେତୁଟା ଦିନ ବା ? ଖୁବ୍ ବେଶୀ ହେଲେ ଆଉ ବର୍ଷ ପାଞ୍ଚଟା କି ଛଅଟା । ଅକ୍ଷି ପିଚୁଳାକେ ଗୋଟି ଗୋଟି ହୋଇ ସମସ୍ତ-ସମୁଦ୍ରର ଛଅଟା ତେଜ ବ୍ୟର୍ଥତାର ବେଦନାରେ ବେଳାଭୂମିରେ ମୁଣ୍ଡ କରୁଡ଼ ପୁଣି କୁଆଡ଼େ ଲୀନ ହୋଇଯିବ !

ସେ କନ୍ତୁ ଏମିତ ରୋଗୀ ଦେଖୁଥିବେ—ନାଡ଼ୀ ଚପୁଥିବେ—ଆଖି ଟେକୁଥିବେ—ଜଭ ଦେଖୁଥିବେ—ପେଟ ଟିପୁଥିବେ – ଔଷଧ ଲେଖୁଥିବେ —ଗର୍ଭିଣୀ ନାରୀର ପେଟରୁ ଛୁଆ ବାହାର କରି ଚାଲିଥିବେ ।

ଉଃ ! ! !

ବଡ଼ ଦର୍ପଣ ଆଗରେ ମୁହଁ ଉପରେ ପ୍ରଲେପ ଘଷି ଆଖିପତା ତଳ୍ତୁ କାଳିରୁ ଦାଗକୁ ଲୁଚାଇ ହଠାତ୍ ସେ ଅନୁଭବ କଲେ – ସତେ ବା ଆଜ ତାଙ୍କର ହାତରେ ବଳ ନାହିଁ ! ହାତ ଢୋଲ ହୋଇପଡ଼ୁଛି । ସେ ଆଜ ମୁହଁରେ ସ୍ନୋ ମଧ ଲଗାଇ ପାରିବେ ନାହିଁ । ବିରକ୍ତ ହୋଇ ଡ୍ରେସିଂ ଟେବୁଲ ଉପରେ ହାତ କରୁଥିଲେ ଡାଃ ମନୋରମା । ମୁହଁ ଉପରୁ ବିଗତ ସମୟର ଏଇ ଶୋଷିବା ଦାଗଗୁଡ଼ାକୁ ସେ ଆଜ ଲୁଚାଇ ପାରିବେ ନାହିଁ । ଆଖି ତଳ୍ତୁ ବ୍ୟର୍ଥଜୀବନର ନିରାଶ କାଳିମାକୁ ସେ ଆଜ ପୋଛିପାରିବେ ନାହିଁ ।

କନ୍ତୁ ବାହାରେ ଶ୍ରାବଣର ଝଡ଼ ରାତ କ୍ରମେ ନିବିଡ଼ ହୋଇଉଠୁଛି । ବର୍ଷଣସିକ୍ତ ସ୍ନିଗ୍ଧ ଏଇ ଶୀତଳ ରାତିର ଘନ ଅନ୍ଧକାର ଭିତରେ ମୁହୂର୍ମୁହୁ ଏଇ ବିଦ୍ୟୁତର ସ୍ଫୁରଣ ଯେମିତ ତାଙ୍କର ହୋଗଳ୍ପଳସୀ ପ୍ରେତର ନିଶ୍ୱାସ ପରି ଗଛଲତାକୁ ଦୋହଲାଇ ଦେଇ ହୁ ହୁ କରି ଝରକା ବାଟେ ପଶିଆସୁଛି ଏହି ବର୍ଷାମତ୍ତ ତାମସୀ ରାତିର ହାଓ୍ୱା ।

କମଳ ମିଶ୍ର ଖବର ପଠାଇଛି – ଆଜ ଆଠଟା ବେଳେ ନିଶ୍ଚୟ ପହଞ୍ଚିବ । ଖାଇବ ମଧ ଆଜ ସେ ଏଇଠି । କନ୍ତୁ କାହିଁ କମଳ ?

ଗ୍ରେଷେଇ ଘରେ ହାଗମଣି କୁକୁଡ଼ା ସିଝାଉଛି । କମଳ ଏଯାଏଁ ବି ଆସିଲା ନାହିଁ । ଆଠଟା ଯେ ବାଜଗଲା ! !

ପୁଣି ତତ୍ପର ହୋଇଉଠିଲେ ମନୋରମା । ପ୍ରସାଧନ ଶେଷ କରିବାକୁ ହେବ ତଞ୍ଚଳ ।

ନାଃ – ଯେ କୌଣସି ପ୍ରକାରେ ତାଙ୍କୁ ଲୁଚାଇବାକୁ ପଡ଼ିବ ବିଗତ ସମୟର ଏଇ ବ୍ୟର୍ଥରୁକ୍ଷ ପଦଚିହ୍ନଗୁଡ଼ିକୁ ! ବ୍ୟର୍ଥଜୀବନର ସମସ୍ତ କାଳିମାରୁ ମୁକ୍ତ ପୂର୍ଣ୍ଣଚନ୍ଦ୍ରର ଔଜ୍ଜ୍ୱଲ୍ୟରେ ଉଦ୍ଭାସିତ କରି-

ଦେବାକୁ ହେବ ତାଙ୍କ ନଜର ମୁଖଚନ୍ଦ୍ରଟିକୁ – ଆଜ ରାତିଟା ଲାଗି ଅନ୍ତତଃ ।

କମଲ ଏଇ ଝଡ଼ ରାତିର ଅନ୍ଧାର ଭିତରେ ଦେଖି ଯେମିତି ଚମକି ପଡ଼ିବ । ଆଉ ତାର ସେଇ ସ୍ୱଭାବ ମଧୁର ଆବେଗ ଉଚ୍ଛ୍ୱାସ ଦେଇ କହିଉଠିବ –

ଏଇ ଯେ—ଅମାବାସ୍ୟାରେ ଚନ୍ଦ୍ର ଦେଖିପାରୁଛି ଡାକ୍ତର !

ପ୍ରସାଧନର କାର୍ଯ୍ୟ ଶେଷ କରି ମନୋରମା ଶାଢ଼ୀ ଖୋଜି ବସିଲେ । ଟ୍ରଙ୍କ ଭିତରୁ ବାହାର କଲେ ଗୋଟାଏ ଝଲମଲ ପତଳା ଲାଲ ରଙ୍ଗର ଶାଢ଼ୀ । ଆଉ ତା ସଙ୍ଗକୁ ମ୍ୟାଚ୍ କରି ଗୋଟାଏ ଗାଢ଼ ହଳଦୀ ରଙ୍ଗର ବ୍ଲାଉଜ୍ ।

ବେଶ୍ ହଣିବ । ପିନ୍ଧିସାରି ମନେ ମନେ ଉଲ୍ଲସିତ ହୋଇଉଠିଲେ ମନୋରମା—ଆଉ ହସିଲେ ମଧ୍ୟ ମନେ ମନେ । ଦେହରୁ ରଙ୍ଗ ଛୁଟି ଆସିଲଣି; ମନ୍ଦ ବଡ଼ ବଢ଼ିଛି ଏଇ ଶାଢ଼ୀଟାର ରଙ୍ଗ । ଶାଢ଼ୀ ଆଉ ବ୍ଲାଉଜ୍‌ର ଏଇ ରଙ୍ଗ ଯେମିତି ତାଙ୍କର ପଇଁତିରିଶି ବର୍ଷର ରଙ୍ଗହୀନ ମନଟାକୁ ବି ରଙ୍ଗର ନିଆଁରେ ଜଳାଇଦେଲା ! ସେ ଜଳିଉଠିଲେ ।

ଜଳିଉଠି ସେ ଆସି ପୁଣି ବଡ଼ ଦର୍ପଣଟା ଆଗରେ ଠିଆ ହେଲେ । ଆଃ, ତାଙ୍କର ଆଖି ଆଗରେ ସେ ଏ କଅଣ ଦେଖୁଛନ୍ତି ! ଏ ଯେ ରଙ୍ଗ ଆଉ ରୂପର ଗୋଟାଏ ଜ୍ୱଳନ୍ତ ଅଗ୍ନିଶିଖା !!

ଆପଣାର ଛବିରେ ଆପେ ଉନ୍ମତ୍ତ ହୋଇଉଠିଲେ ଡା: ମନୋରମା ।

କମଲ ଏ ଯାଏଁ ବି ଆସିଲା ନାହିଁ !
ଆସିବ କିନ୍ତୁ କମଲ ଆଜ ।
ନିଶ୍ଚୟ ଆସିବ ! !

ଏଇ ବର୍ଷଣମୁଖର ଝଡ଼ଝଂଜାକୀର୍ଣ୍ଣ ତାମସୀ ରାତିରେ କଏ ଥାଉ ତାଙ୍କୁ ଏଠି ଆଜ ରାତିଟିର ବରଣୀୟ ଅତିଥି ରୂପେ ସ୍ୱାଗତ କରିପାରିବ ?

ଆସିବ ସେ ନଶ୍ଚେ !!

କନ୍ତୁ କାହିଁ ? ଆଠଟା ବାଜଗଲା ଯେ—!!

ଡା: ମନୋରମା ଡ୍ରେସିଂ ଟେବୁଲ ପାଖେ ପୁଣି ଥରେ ବସିଲେ । ବୟସର ସମସ୍ତ କ୍ଳାନ୍ତ – ସମସ୍ତ ଅବସାଦ – ସମସ୍ତ ବ୍ୟର୍ଥସଂଗ୍ରାମର ରେଖା ଏଇ ପ୍ରଲେପର ପ୍ରସାଧନ ତଳେ ଲୁଚଯାଇଛୁ । ଅଜ ମୁଣ୍ଡରେ କେଶର ଏଇ ବପୁଳ ସମ୍ଭାର—ସମସ୍ତ ଅଯନ୍ ସତ୍ତ୍ୱେ—ଅବହେଳା ସତ୍ତ୍ୱେ—ଏ କେଶର ତେଜ ଏଯାଏଁ ବ ମଳନ ନାହିଁ । ତାର ପରମାଣର ବପୁଳତା ତଥାପି ମଧ୍ୟ କମି ନାହିଁ । ତାଙ୍କ ସାଙ୍ଗରେ ବହୁ ଝିଅ ଲଣ୍ଡି ହୋଇଗଲେଣି । କେତେକଙ୍କର କେଶ ପାଚବାକୁ ବ ଆରମ୍ଭ କଲଣି । ସେଥିଲଗି ମେଡ଼ସିନ-ଜଗତର ସମସ୍ତ ଔଷଧ ସେମାନେ ବ୍ୟବହାର କରଛନ୍ତି; କନ୍ତୁ କଛି ଫଳ ହୋଇ ନାହିଁ । ସେମାନେ ଈର୍ଷା କରନ୍ତି ମନୋରମାଙ୍କର ଏହ ବପୁଳ କୃଷ୍ଣ କେଶସମ୍ଭାରର ଐଶ୍ୱର୍ଯ୍ୟ ପ୍ରତ ।

ଠିକ୍ ମଝିରୁ ସୂନ୍ଥା କାଟିଦେଲେ ଦୁଇ ପଟକୁ ସମାନ ହୋଇ ଆଉଜଯାଏ ଦୁଇଟି ଘନକୃଷ୍ଣ ତରଙ୍ଗିତ କେଶର ପ୍ରବାହ । ଦୁଇଟି ବେଣୀ କର ତାକୁ ସେ ପଛପଟେ ଦୁଇଆଡ଼ୁ ଆଣି ଛାଡ ଦଅନ୍ତି । ଆଉ ଦୁଇ ବେଣୀର ମୂଳରେ ଲଗାଇ ଦଅନ୍ତି—କେବେ ବା ଦୁଇଟି ଚମ୍ପା—କେବେ ବା ଅଧଫୁଟା ଦୁଇଟି ଗୋଲପ- ନଚୁବା ରକ୍ତ କରବୀର । ଅବଶ୍ୟ ପଛପଟ ବେକ ମୂଳ ତାଙ୍କର ସେମିତ ମାଂସଳ ଆଉ ସ୍ୱଚ୍ଛନ୍ଦ ଭାବେ ସୁନ୍ଦର ।

ଆଜ ବ ସେହଭଳ ସେ କେଶସଜ୍ଜା କରଛନ୍ତି । ବଶେଷ କଛି ପରପାଟୀ ନାହିଁ କ ତାର ବେଶୀ କଛି ଆବଶ୍ୟକତା ବ ନାହିଁ ।

ଦର୍ପଣରେ ଆପଣାର ମୁହଁକୁ ଚାହିଁ ଆଉଥରେ ଉଲ୍ଲସିତ ହେଲେ କୁମାରୀ ଡା: ମନୋରମା ।

କମଳ ମିଶ୍ର ନଶ୍ଚୟ ଖୁବ୍ ଗୋଟାଏ ଲମ୍ବା ପ୍ରଶସ୍ତି ଗାଇବ ଖୁବ୍ ଆବେଗଜଡ଼ତ କଣ୍ଠରେ—ଖୁବ୍ କବତ୍ୱପୂର୍ଣ୍ଣ ରସାଣିତ ଭଙ୍ଗୀରେ । ତାର ବେଶୀ କନ୍ତୁ ଆଖି ପଡ଼େ ତାଙ୍କର ଏଇ କେଶସଜ୍ଜା ଉପରେ ।

ଭାବ ଲୋଭ ମଧ୍ୟ ତାର ସେଥିଲାଗି । କେତେ କ'ଣ କହିଯାଏ । ମୁହେଁ ମୁହେଁ ଗାଇଯାଏ କବିତା । ସତେ କି ସେ ଏଇ କେଶରାଶିର ବହୁଳ ବନ୍ଦନା ଗାଉଛି ! !·········

ତୁମର ଏଇ କେଶର ଅନ୍ଧକାର ମନ ଭିତରେ ଅଜ୍ଞାତ ବନ୍ଧଶାର ସ୍ୱପ୍ନିଳ ନିଶା ଜଗାଇଦିଏ ଡାକ୍ତର !······

···ଅଚ୍ଛା, ମୁଁ ଯଦି କହେ ଡାକ୍ତର ! ମୁଁ ତୁମ ଅପେକ୍ଷା ତୁମର ଏଇ କେଶକୁ ହିଁ ପ୍ରେମ କରେ—ତୁମେ କ'ଣ ଖୁବ୍ ବେଶୀ ଅପମାନିତ ମନେ କରିବ ?

···ମୁଁ ଯଦି କହେ – ମୁଁ ତୁମର ଏଇ ମନୋରମ କେଶ-ଉଦ୍ୟାନର ମାଳାକାର ହେବାକୁ ଚାହେଁ—ତୁମେ କ'ଣ ଅନୁମତି ଦେବ ନାହିଁ ଡାକ୍ତର ?

ମନୋରମାଙ୍କ ମୁହଁରେ ନବୋଢ଼ା କିଶୋରୀ ବାଳିକାର ପ୍ରଣୟ-ମୁଗ୍‌ଧ ବ୍ରୀଡ଼ା ରଙ୍ଗୀନ୍ ହୋଇଉଠେ । ସେ ପ୍ରସଙ୍ଗ ବଦଳାଇ ଅନ୍ୟ ବାହାନା ଦେଖନ୍ତି ।

କାହିଁକି ବାଜେ କଥା ଗପୁଛନ୍ତି କହନ୍ତୁ ନା ? ବସନ୍ତୁ । ଆଜି ଖାଇଛନ୍ତି କି ନାହିଁ ? ଆଗରୁ ନ କହିଲେ କିନ୍ତୁ ଖାଇବାକୁ ମିଳିବ ନାହିଁ ।

କମଳ ଭାବପ୍ରବଣ ହୋଇ କହେ –

ପେଟର କ୍ଷୁଧା ଲାଗି କ'ଣ ମୁଁ ଏଠାକୁ ଧାଇଁଆସେ ଡାକ୍ତର ? ବହୁ ଦିନର ଉପାସୀ ଆତ୍ମାର ତାଡ଼ନାରେ ମୁଁ ତୁମ ପାଖକୁ ଧାଇଁ ଆସିଛି ।

ମନୋରମାଙ୍କୁ ଭଲ ଲାଗେ । ଜୀବନରେ ସେ ଏଭଳି ମଧୁର ପ୍ରଗଳ୍‌ଭ ପ୍ରଶସ୍ତି – ଏଭଳି ପ୍ରଣୟାତୁର ଭାବପ୍ରବଣ ଚାଟୁବାଣୀ କାହା ମୁଖରୁ ଶୁଣି ନାହାନ୍ତି । ସେହି ବହୁଦିନ ତଳର ତାଙ୍କ ଜୀବନ-ବସନ୍ତର ଚଞ୍ଚଳ କୋକିଳ ଡାଃ ଶୁଭେନ୍ଦୁ ଶେଖର—ଖୁବ୍ ବାସ୍ତବବାଦୀ, ଷ୍ଟ୍ରେଟ୍‌ଫୋର୍ଡ୍ କଥା । ସବୁ କଥା ତାଙ୍କର ଅତି ସ୍ପଷ୍ଟ ଭାବରେ—ଅର୍ଥପୂର୍ଣ୍ଣ । ତାଙ୍କର ଡାକରେ ଜାଗ୍ରତର ଚଞ୍ଚଳ ସତ୍ୟତା ଥିଲା; ମାତ୍ର ନ ଥିଲା ତହିଁରେ ମାୟାର ଏଇ ସ୍ୱପ୍ନିଳ ଧ୍ୱନିମାଧୁର୍ଯ୍ୟ । ସେ ପତ୍ନୀ

ସ୍ୱପ୍ନ ଥିଲେ – ପ୍ରିୟା ନୁହେଁ । ସେ ସ୍ୱପ୍ନ ଥିଲେ ଜୀବନସଙ୍ଗିନୀ – ରସରଙ୍ଗିଣୀ ନୁହେଁ ।

ମାତ୍ର ଏଇ କମଳ ମିଶ୍ର ? ଅଦ୍ଭୁତ ସେ । କଅଣ ଯେ ସେ ପ୍ରକୃତରେ ଚାହେଁ—ଏଯାଏଁ ବି ମନୋରମା ଠିକ୍ ଜାଣିପାରି ନାହାନ୍ତି । ଯେତେବେଳେ ସେ ଆସେ – ପାଗଳଙ୍କ ପରି ଗୁଡାଏ ପ୍ରଳାପ କରେ । କିନ୍ତୁ ବେଶ୍ ଲାଗେ – ଶେଷ ବସନ୍ତର ଏଇ ବକୁଳଝରା ଚନ୍ଦ୍ରଶାଖାରେ ଆତ୍ମବିସ୍ମୃତ ଏଇ ସ୍ୱପ୍ନବିଳାସୀ ଖିଆଲି କୋକିଳଟିର କୁହୁକୂଜନ !! ତାର ଏଇ ଅସମାପ୍ତ କୁହୁତାନରେ ସତେ ଯେପରି ବିଗତ ବସନ୍ତର ଏକ ମାୟାମଧୁର ବିଳାପର ରାଗିଣୀ ଭଙ୍ଗାତାରର ଝଙ୍କାରରେ ବାଜିଉଠେ !

ଆଉ ତାର ଏଇ ପ୍ରଗଲ୍ଭ ପ୍ରଳାପ ଭିତରେ ହିଁ ଯେମିତି ତାର ଅସଲ ବ୍ୟକ୍ତିତ୍ୱଟି ପ୍ରକାଶ ପାଇଯାଏ । କିନ୍ତୁ ତଥାପି – କମଳକୁ ବୁଝି ହୁଏନା । ଡ୍ରଇଁ ରୁମ୍‌ରେ ସୋଫା ଉପରେ ଗୋଡ଼ହାତ ଲମ୍ବାଇ ଆରାମରେ ବେଖାତିର ଭାବରେ ସେ ବସେ । ଚାହା, ପାନ, ସିଗ୍ରେଟ୍, ଜଳଖିଆ, ଭାତ, ସବୁ ସେ ବରାଦ କରେ । ମନଇଚ୍ଛା ଗପେ – କବିତା, ଧର୍ମ, ଦର୍ଶନ, ରାଜନୀତି, ମନସ୍ତତ୍ତ୍ୱ ଆଉଶେଷରେ ସବୁ କଥାରୁ ଫେରିଆସି ପୁଣି ମନୋରମାଙ୍କ ପ୍ରଶସ୍ତିରୁ ଅଧ୍ୟାୟେ ।

ଏମିତି ଗପେ – ଖାଏ – ପିଏ—ପୁଣି ଉଡ଼ିଯାଏ ଫୁର୍‌କିନା – ଶୂନ୍ୟ ଆକାଶର ପକ୍ଷୀ—ତାର ଉଡ଼ନ୍ତା ଡେଣାର ହାଓ୍ୱା ଲାଗେ ମନୋରମାଙ୍କ ମନର ଦିଗନ୍ତରେ ।

ହଜିଯାଏ ସେ କିଛିଦିନ କୁଆଡ଼େ । କିଛି ତାର ଖବର ଠିକଣା ମିଳେ ନାହିଁ ।······ପୁଣି କିଛି ଦିନ ପରେ—ହଠାତ୍ ଦିନେ ଆକାଶର ସୀମାହୀନ ଶୂନ୍ୟତା ଭିତରୁ ସାଇଁକିନା ପହଁଚିଆସି—ମନୋରମାଙ୍କ ସୁନାର ପିଞ୍ଜରା ଭିତରେ ବସି ସୁନାର ପୋଷା ଶୁକ ପକ୍ଷୀଟିଏ ଭଳି କୂଜନ କରିଉଠେ –

ଜୀବନସାରା ମୁଁ ଯାହାକୁ ଖୋଜି ମରୁଥିଲି ଡାକ୍ତର, ବଡା ଆୟାସରେ ଆଜି ମୁଁ ତାକୁ ପାଇଯାଇଛି । ମୁଁ ଆଜି ଧନ୍ୟ ଡାକ୍ତର ! ତୁମେ କିନ୍ତୁ ନିଜେ ଜାଣନା ସେ କଥା । କସ୍ତୁରୀମୃଗ କ'ଣ ବୁଝିପାରେ

ଆପଣା ନାଭିସ୍ଥଳୀର ଗୋପନୀୟ ସୌରଭର ଜଣେଇବ ? ତୁମର ଭିତରେଇ ମୋର ସେ ଖୋଜିବା ସାର୍ଥକ ହୋଇଛି । ମୁଁ ଜାଣେ—ତୁମର ଭିତରେଇ ମୋର ବାସନା ପୂର୍ଣ୍ଣ ହେବ ।

ମନୋରମା ବୁଝିପାରନ୍ତି ନାହିଁ ତଥାପି । କଅଣ ସେ ପାଇଛି ମୋ ଭିତରେ ? ମୋର ହୃଦୟାଳେକରେ ତାର କେଉଁ ବାସନାର ମୁକୁଳଟି ପ୍ରସ୍ଫୁଟିତ ହେବା ଲାଗି ଉତ୍କଣ୍ଠିତ ହୋଇ ରହିଛି ? ହୁଁ—ହୁଁ: —ହୁଁ:: ହୁଁ:: ! ପାଗଳଟାଏ ଜଣେ !! ମନୋରମା ମନେ ମନେ କମଳ ଲାଗି ମମତା ଆଉ ସହାନୁଭୂତିରେ ହସିଉଠନ୍ତି ।

ବାହାରେ ଶ୍ରାବଣ ରାତିର ବର୍ଷଣମେଦୁର ଅନ୍ଧକାର । ସକାଳ ପ୍ରହରୁ ଅଜି ବର୍ଷା ଚାଲିଛି । ମଝିରେ ମଝିରେ କମିଯାଉଛି । ପୁଣି ଅସ୍ତନକ ମାଡ଼ିଆସୁଛି—ଟପ୍ ଟପ୍—ଟପ୍ ଟପ୍ । ଟିଣ ଛାତ ଉପରେ ନାଚ ଦେଇ ଯାଉଛି– ନାଚ ଦେଇ ଯାଉଛି । ବେଳେବେଳେ ସାମାନ୍ୟ ଘଡ଼ଘଡ଼ି । ମଝିରେ ମଝିରେ ଝଲସି ଉଠୁଛି ବିଜୁଳି । ହାଉମଣି କରଣୀର, ଚମ୍ପା ଆଉ ମଲ୍ଲୀଫୁଲ ତୋଳି ଆଣି ଟେବୁଲ ଉପରେ ରଖିଛି । ସେପଟେଇ ଘରେ କୁକୁଡ଼ା ମାଂସ ସିଝୁଛି । ଥଣ୍ଡା ପବନରେ ଭାସିଆସୁଛି ତାର ଆଇଁଷିଆ ବାସ୍ନା ଆ ବାସ୍ନା ।

କମଳ କିନ୍ତୁ ତଥାପି ଆସିଲା ନାହିଁ !!!

ହଠାତ୍ ବାହାରେ କବାଟ ଖଡ଼୍ ଖଡ଼୍ ଶୁଭିଲା । ଡା: ମନୋରମା ଚଞ୍ଚଳ ହୋଇଉଠିଲେ । କମଳ ଆସିଲା କି !!

ପ୍ରସାଧନ ଅବଶ୍ୟ ସରିଗଲାଣି । ଖାଲି ପଛ ପଟେ ଛଡ଼ା ହୋଇଥିବା ଦୁଇଟି ବେଣୀର ମୂଳରେ ଦୁଇଟା କରବୀର ଲଗାଇଦେଲେ ହେଲା ।

ଆଉଥରେ ଜୋରରେ ବାହାରେ କବାଟ ଖଡ଼ଖଡ଼ ଶୁଭିଲା । ମନୋରମା ଆଉଥରେ ଚଞ୍ଚଳ ହୋଇଉଠିଲେ । ସେ ହାଉମଣିକୁ ଡାକିଲେ—

ହାଉମଣି !

କଅଣ ମାଆ ?

ଦେଖତ ବାଣ୍ଡରେ କିଏ ଡ଼ାକୁଛୁ ? କମଳବାବୁ ଆସିଲେ କି ?

ହୀରାମଣି ବାହାରକୁ ଯାଇ ସଙ୍ଗେ ସଙ୍ଗେ ପୁଣି ଫେରିଆସିଲା । ମନୋରମା ବେଣୀ ମୂଳରେ କରବୀର ଦୁଇଟି ଲଗାଇସାରିଥିଲେ । କଣ୍ଠରେ ଉତ୍କଣ୍ଠିତା ବାସକସଜ୍ଜା ନାୟିକାର ଉଦ୍‌ବେଗ ଫୁଟାଇ ମନୋରମା ପଚାରିଲେ—

କମଳବାବୁ ଆସିଲେ ନା ? ?

ହୀରାମଣି ଟିକିଏ ହସିଦେଲା ।

ନାଇଁ ମା, କମଳବାବୁ ନୁହନ୍ତି ।

ଟିକିଏ ଲଜେଇଯାଇ ପୁଣି ଯଥାସମ୍ଭବ ଗାମ୍ଭୀର୍ଯ୍ୟ ରକ୍ଷାକରି ମନୋରମା ପଚାରିଲେ –

ଆଉ ତେବେ କିଏ ସେ ?

ଜଣେ କିଏ ବୈଷ୍ଣବୀ ମାତା ଠିଆ ହୋଇଛନ୍ତି ।

ବୈଷ୍ଣବୀ ମାତା ?

ହଁ ମା ! ତିଳ ତୁଳସୀ, ମାଳୀ, ଝୁଲୁମଣି ସବୁ ତ ଅଛି ।

କାହିଁକି ଆସିଛନ୍ତି ପଚାରିଲୁ ନାଇଁ ?

କେଜାଣି କାହିଁକି ଆସିଛନ୍ତି ? ପଚାରିଲାରୁ କହିଲେ— ଡ଼ାକ୍ତରାଣୀଙ୍କ ପାଖେ କାମ ଅଛି—ଡ଼ାକ୍ତରାଣୀଙ୍କୁ ଡାକ ।

ଓଃ ! ! !

ଡ଼ା: ମନୋରମା ମନେ ମନେ ବିରକ୍ତ ହୋଇ ଉଠିଲେ । ଆଶ୍ଚର୍ଯ୍ୟ ମଧ୍ୟ ହେଲେ । ଏଇଭଳି ଝଡ଼ବର୍ଷା ରାତିରେ ହଠାତ୍ ଏଇ ବୈଷ୍ଣବୀ ମାତାଟିର ବା ଆବିର୍ଭାବ କାହିଁକି ? ହୋଇପାରେ କିଛି ଆର୍ଥିକ ସାହାଯ୍ୟଭିକ୍ଷା କିମ୍ବା ଆଜି ରାତିଟା ଲାଗି ଏଠି ଟିକେ ଆଶ୍ରୟ – ଆତିଥ୍ୟ । ବୈଷ୍ଣବ, ସନ୍ନ୍ୟାସୀ, ଭିକାରୀ, ସମସ୍ତେ ଜାଣନ୍ତି ଲେଡ଼ି ଡାକ୍ତର ବଡ଼ ଦୟାବତୀ । ବିଶେଷତଃ ସାଧୁ ବୈଷ୍ଣବଙ୍କ ଉପରେ ତାଙ୍କର ଅଟଳ ଭକ୍ତି । ବହୁ ସାଧୁ ସନ୍ନ୍ୟାସୀ, ବୈଷ୍ଣବଙ୍କୁ ସେ ପ୍ରକୃତରେ ପ୍ରାପ୍ୟ ଠାରୁ ବହୁ ସାହାଯ୍ୟ କରିଥାନ୍ତି । ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ଏଇ ଆଧ୍ୟାତ୍ମିକ ଚେତନା ମଧ୍ୟ ତାଙ୍କ ଭିତରେ କ୍ରମେ ଉଦବୃଦ୍ଧ ହୋଇ ଉଠୁଥିଲା । ହୁଏ ତ ଏଇ ମନୋଭାବର ସୁଯୋଗ ନେଇ କୌଣସି ନିରାଶ୍ରୟା ବୈଷ୍ଣବୀ— ହୁଏତ ରାତିଟାର ଆତିଥ୍ୟ ଲାଗି –

······କିନ୍ତୁ – ଆଜିର ଏଇ ଦୁର୍ଲଭ ରାତିଟା···! ଓଃ! ଜୀବନରେ ଗୋଟାଏ ରାତି ଉପରେ ବି କ'ଣ ତାଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ରହି-ପାରିବ ନାହିଁ ? ଏହି ନିଃସଙ୍ଗ ବ୍ୟର୍ଥ ନିଷ୍ଫଳ ଜୀବନରେ ଅସଂଖ୍ୟ ଅସହିଷ୍ଣୁ ଘଟଣାହୀନ ରାତିର କ୍ଷତିପୂରଣ ସ୍ୱରୂପ କ'ଣ ଗୋଟାଏ ପୂର୍ଣ୍ଣକାମ ରଜନୀର ପରିପୂର୍ଣ୍ଣ ସୌଭାଗ୍ୟ ବି ତାଙ୍କର କପାଳରେ ଲେଖିନାହାନ୍ତି ତାଙ୍କର ଭାଗ୍ୟ-ଦେବତା ? ଓଃ !!!

ବିରକ୍ତିରେ ହାତ ଛୁଆଁଇ ମନୋରମା କହିଲେ – ଆଚ୍ଛା, ମୁଁ ଯାଉଛି – ତାଙ୍କୁ କହ – ସେ ଉପରି ରୁମରେ ବସନ୍ତୁ ।

ହୀରାମଣି ଚାଲିଗଲା ।

ମନୋରମା ପୁଣି ଥରେ ଦର୍ପଣ ଆଡ଼କୁ ଚାହିଁଲେ । ବାହାରେ ଶ୍ରାବଣ ରାତିର ବର୍ଷଣପୂର୍ଣ୍ଣ ଅନ୍ଧକାର ଗାଢ଼ ହୋଇଉଠୁଛି । ଗଛଗୁଡ଼ାଙ୍କୁ ଆପଣାର ମତୁଆଳ ଖିଆଲରେ ଦୋହଲାଇ ଦେଇ, ସାଇଁ ସାଇଁ ଶବ୍ଦ କରି ଆର୍ଦ୍ର ଶୀତଳ ହାଓ୍ୱା ଝରକା ବାଟେ ଦମକାକୁ ଦମକା ପଶି ଆସୁଛି ଘର ଭିତରକୁ । ମନୋରମା ନିଜର ଅଙ୍ଗପ୍ରତ୍ୟଙ୍ଗକୁ ଥରେ ଚାହିଁ ପୁଣି ଥରେ ବାହାରଆଡ଼କୁ ମୁହଁ ଫେରାଇଲେ । କୋଠରୀ ଭିତରେ ଠିକ୍ ଝରକାର ଅଳ୍ପ ପାଖକୁ ତାଙ୍କର ଏଇ ଶୋଇବା ଖଟଟି । ଖୁବ୍ ବିସ୍ତୃତ ଏହି ଖଟଟା । ଗ୍ରେଟ ଖଟରେ ସେ ଶୋଇପାରନ୍ତି ନାହିଁ । ଖଟ ଉପରେ ମୋଟା ସ୍ପଞ୍ଜ୍‌ର ଗୋଟାଏ ଉନ୍ନତ ଗଦି । ତା ଉପରେ ପରିଷ୍କାର ଗୋଟାଏ ଧଳା ବିଛଣା ଚଦର । ଆଜି ତା ଉପରେ ପଡ଼ିଛି – ଏମ୍ବ୍ରୟଡରି କରାଯାଇଥିବା ଦୁଇଟା ବଡ଼ ତକିଆ । ସେହି ତକିଆ ଉପରେ ବି କେତେଟା ଚମ୍ପା ଆଉ ମଧୁମାଳତୀର ପେଣ୍ଡା ପକାଇ ଦେଇଛି ଆଜି ହୀରାମଣି । କାହିଁକି ପକାଇଛି କେଜାଣି ! ! !

କିନ୍ତୁ ସେହି ଏକୁଟିଆ ଫୁଲପକା ବିସ୍ତୃତ ବିଛଣାଟିକୁ ବଡ଼ ଆତୁର ଭାବେ ଚାହିଁ ରହିଲେ ମନୋରମା । ହଠାତ୍ ତାଙ୍କ ମନ ଭିତରେ ଏକ ତୀବ୍ର ବ୍ୟଥାତୁର ଯନ୍ତ୍ରଣା ଅସ୍ଥିର ହୋଇଉଠିଲା ।

ରେଷ୍ଟୋରାଁରୁ ସିଝୁଥିବା କୁକୁଡ଼ା ମାଉଁସର ଗରମ ବାମ୍ଫ ଆଉ ଅଇଁଷିଆ ଗନ୍ଧ ଏଇ ଥଣ୍ଡା ପବନ ସଙ୍ଗେ ବେଳେ ବେଳେ ଘର ଭିତରକୁ

ପଶିଆସୁଛୁ । ମନୋରମାଙ୍କ ସ୍ନାୟୁ ଭିତରେ ଏକ ଅଦ୍ଭୁତ ପାଶବିକ ମାଂସଳ ଉଷ୍ମ କାମନାର ଚାନ୍ଦ ବାଙ୍କେଇ ଉଠିଲା । ଚଉକି ଉପରେ ସେ ଅଳସେଇ ଉଠିଲେ । ତାଙ୍କର ମନେ ହେଲା ସେ ପଡ଼ିଯିବେ ।

ସେ ପଡ଼ିଯାଆନ୍ତେ କି ! ! କେହି ଯଦି ତାଙ୍କୁ ଜୋର୍‌କରି ଟେକି ଉଠାଇ ବକ୍ଷରେ ଚାପିଧରନ୍ତା ତାର ସମସ୍ତ ବଳ ପ୍ରୟୋଗ କରି ! ! ଓଃ ! !

ଠିକ୍ ପରେ ପରେ ସେ ଅନୁଭବ କଲେ—ତାଙ୍କ ଭିତରର ସମସ୍ତ ସ୍ନାୟୁ ଥରି ଉଠୁଛନ୍ତି । ଏକପ୍ରକାର ହଠାତ୍ ଉଷ୍ଣତା ଓ ହଠାତ୍ ଶୀତଳତାରେ ସେ କମ୍ପି ଉଠୁଛନ୍ତି । ସେ ଉତ୍ତପ୍ତ ଗୃହାନ୍ତ – ଏକ ଘନ ନିବିଡ଼ ଧର୍ଷଣକାମ ଉଷ୍ଣ ଆଶ୍ଳେଷର ଉତ୍ତାପ । ଏବଂ ବର୍ଷଣମୁଖର ଶ୍ରାବଣ ରଜନୀର ଏବଂ ଆର୍ଦ୍ର ଶୀତଳ ବିଦ୍ୟୁତ୍‌ପ୍ରସ୍ପୃଷ୍ଟ ନିଃସଙ୍ଗ ଅନ୍ଧକାର ଭିତରେ ଯେପରି ଲୁଚି ରହିଛି—ଏକ ଅନ୍ଧ ଅପୂର୍ଣ୍ଣକାମ ଭୋଗଲାଳସୀ ବ୍ୟଭିଚାରୀ କାମନାର ପ୍ରେତ ! ! ଏ ରାତି ସେହି ବ୍ୟଭିଚାରୀ କାମନାପ୍ରେତର ପାଶବିକ ଉପଭୋଗ ଲାଗି ହିଁ ଉଦ୍ଦିଷ୍ଟ ।

ଡା: ମନୋରମା ଅସ୍ଥିର ହୋଇଉଠିଲେ ।

କମଳ ମିଶ୍ର ତଥାପି ଆସିଲା ନାହିଁ !

ଘଣ୍ଟାକୁ ଚାହିଁଲେ ମନୋରମା । ସାଢ଼େ ଆଠଟା ବାଜିଗଲାଣି ।

କୋଠରୀର ସାମାନ୍ୟ କୋଣକୁ ଟେବୁଲ ଉପରେ କ୍ୟୁବିକ୍ ପଦ୍ଧତିରେ ତିଆରି ଫ୍ରେଞ୍ଚ ପ୍ଲାଷ୍ଟରରେ ଗୋଟିଏ ନଗ୍ନ ବନ୍ଧଲଗ୍ନ ଯୁଗଳ ମୂର୍ତ୍ତି । ଆଜ ତାର ଛାଇଟା ବେଶ୍ ବଡ଼ ଆକାରରେ ପଡ଼ିଛି ଧଳା କାନ୍ଥଟା ଉପରେ ।

ନାଃ !! ଆଜ ବୋଧେ କମଳ ଆସିବ ନାହିଁ ! !

ତା କଥାରେ କି କିଛି ଠିକଣା ଅଛି ? ବାଇଆଟାଏ-—ପାଗଳଟାଏ !!

ବୟସ ଚାଳିଶରୁ କମ୍ ହେବ ନାହିଁ । ଶୀର୍ଣ୍ଣଶୀର୍ଣ୍ଣ, ଦୋଗା ଚେହେରା ବେଶୀ ଉଚା ମଧ୍ୟ ନୁହେଁ । ମୁହଁର ରଙ୍ଗ ପାଉଁଶିଆ ପଡ଼ି ଆସିଲାଣି ।

ମୁଣ୍ଡରେ କୁଞ୍ଚ କୁଞ୍ଚିଆ ବାଳଗୁଡ଼ାକ ବେଶ୍ ଘନ ହେଲେ ବି ବଡ଼ ରୁକ୍ଷ, ...ହିନଘଣ୍ଟା ସିଗ୍ରେଟ ଫୁଙ୍କୁଥିବ, ମନଇଚ୍ଛା ବୁଲୁଥିବ । ବସିଗଲେ— ଗପୁଥିଲେ ଗପୁଥିବ ।

ତଥାପି ଲୋକଟାର ବ୍ୟକ୍ତିତ୍ୱର ଗୋଟାଏ ବୈଶିଷ୍ଟ୍ୟ ଅଛି । ସେ ବ୍ୟକ୍ତିତ୍ୱ ପ୍ରଭାବ ପକାଏ – ଆକର୍ଷଣ କରେ ।

କିନ୍ତୁ ଏତିକ ମାତ୍ର ତାର ପରିଚୟ ନୁହେଁ । କମଳ ମିଶ୍ର ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ ଗଳ୍ପିକ । ଗୋଟାଏ କ୍ଷୟିଷ୍ଣୁ ସାମନ୍ତବାଦୀ ପରିବାରର ଏକମାତ୍ର ବଂଶଧର ଏହି କମଳ । ଏମ୍. ଏ. ପାସ୍ କରିଥିଲି ସାମାଜିକ ବନ୍ଧନରେ କୃତ୍ରିମତାର ସନ୍ଧାନ । ସରକାରୀ ଚାକିରି କଲା ନାହିଁ । ନିଜର ଖିଆଲ ଖୁସିରେ ଜୀବନକୁ ନେଇ ଯାଉଥିଲା ଖେଳିବୁଲିଲା କମଳ । କିଛିଦିନ ସରକାରୀ ଦଳ ବିରୁଦ୍ଧରେ ପ୍ରଚାର କଲା—ଗୋଷ୍ଠୀ ଗଢ଼ିଲା । ମାତ୍ର ରାଜନୀତି ଯେତେବେଳେ ତାକୁ ଜୀବନର ଗୋଟାଏ ଉନ୍ନତ ଲାଭଜନକ ସୋପାନ ଉପରକୁ ଉଠାଇଦେବା ଲାଗି ସୁଯୋଗ ଦେଲା, ସେତେବେଳେ ସେ ରାଜନୀତି ଛାଡ଼ି ଖବରକାଗଜରେ କାମ କଲା । ତାର ହିତାକାଂକ୍ଷୀମାନେ ତାର ଏଇ ସାଂସାରିକ ବୁଦ୍ଧିହୀନତା ଉପରେ ମନ୍ତବ୍ୟ ପ୍ରକାଶ କରନ୍ତେ କମଳ କହିଲା—ରାଜନୀତି ମୋ ପକ୍ଷରେ ଖେଳ ମାତ୍ର—ତାକୁ ନେଇ ଜୀବିକା ନିର୍ବାହ କରିବା ମୋର ଧର୍ମ ନୁହେଁ ।

ଖବରକାଗଜ ଚଳାଇବା ସଙ୍ଗେ ସଙ୍ଗେ ସେ ସାହିତ୍ୟ ଅନୁଷ୍ଠାନ ମଧ୍ୟ ଗଢ଼ିଲା – ସାହିତ୍ୟ ପତ୍ରିକା ପ୍ରକାଶ କଲା ଏବଂ ନାନା ପ୍ରକାର ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନର ଜଣେ ବିଶିଷ୍ଟ ଚିନ୍ତାନାୟକ ବା ନେତା ଭାବରେ ପରିଚିତ ହେଲା ।

ଆଜି କମଳ ମିଶ୍ର ଓଡ଼ିଶାର କେବଳ ଜଣେ ପ୍ରତିଷ୍ଠିତ ଔପନ୍ୟାସିକ ବା ଗଳ୍ପିକ ନୁହେଁ – ଓଡ଼ିଶାର ଯୁବସମାଜରେ ସେ ଜଣେ ପ୍ରତିଷ୍ଠିତ ଚିନ୍ତାନାୟକ ମଧ୍ୟ । ସମାଜର ଓ ମନୁଷ୍ୟଜୀବନର ନାନାବିଧ ସମସ୍ୟା ଓ ତାର ସମାଧାନ ଉପରେ କମଳ ପ୍ରବନ୍ଧ ଲେଖେ – ବକ୍ତୃତା ଦିଏ – ଗୋଷ୍ଠୀ ଗଢ଼େ । ଓଡ଼ିଶାର ସାହିତ୍ୟ-ରାଜ୍ୟରେ ଓ ଚିନ୍ତା-ରାଜ୍ୟରେ

କମଳ ମିଶ୍ରର ନୂତନ ଅବଦାନ – ତାର ନୂତନ ଜୀବନାଲେଖ୍ୟ ବା ଜୀବନ-ଦର୍ଶନ ହେଉଛି – "ଜୀବନବାଦ" ।

ଜୀବନର ସବୁବିଧ କ୍ଷେତ୍ରରେ ଏହି 'ଜୀବନବାଦର' ପ୍ରଚାର ଓ ପ୍ରସାର ହିଁ ଆଜି ତାର ଜୀବନର ଲକ୍ଷ୍ୟ ହୋଇପଡ଼ିଛି । ତା'ର ପ୍ରେରଣାରେ ଆଜି ଏ ଦେଶର ସାହିତ୍ୟ ଓ ଶିଳ୍ପ କ୍ଷେତ୍ରରେ ବି ତରୁଣ ଶିଳ୍ପୀ ଓ ଲେଖକମାନେ 'ଜୀବନବାଦ'ର ପ୍ରୟୋଗ ଓ ପରୀକ୍ଷା ଚଳାଇଛନ୍ତି ।

ଅଥଚ କମଳ ମିଶ୍ର ମଧ୍ୟ ସଂସାର କରିଥିଲା – ଦୁଇଟି ସନ୍ତାନର ଜନକ ହୋଇଥିଲା । ପରେ ପରେ ସେ ନିଜ ସ୍ତ୍ରୀର ଶତ ଆପତ୍ତି ସତ୍ତ୍ୱେ, ପୃଥିବୀର ଲୋକସଂଖ୍ୟା ବୃଦ୍ଧି ବିରୁଦ୍ଧରେ ନିଜର ସୃଷ୍ଟି କରିବା କ୍ଷମତାକୁ ମଧ୍ୟ ଡାକ୍ତରଖାନାରେ ବିସର୍ଜନ ଦେଲା । ସେତେବେଳେ କମଳ ପ୍ରଚାର କରୁଥିଲା—ଜୀବନର ଶତ୍ରୁ ମରଣ ନୁହେଁ, ଜୀବନ ହିଁ ଜୀବନର ଶତ୍ରୁ । ଜୀବନର ସମୃଦ୍ଧି ଲାଗି ଜୀବଜଗତର ଅଯଥା ବୃଦ୍ଧି ଗୋଟାଏ ବିରାଟ ପ୍ରତିବନ୍ଧକ ।

ଆଜି ଅବଶ୍ୟ କମଳ ମିଶ୍ର ତାର ମତ ବଦଳାଇଛି । ଆଜି ସେ କହେ—ଜୀବନର ସମୃଦ୍ଧି ଲାଗି—ବିକାଶ ଲାଗି—ଆତ୍ମ ସ୍ୱାଚ୍ଛନ୍ଦ୍ୟ ଲାଗି—ଜନସଂଖ୍ୟା ନିୟନ୍ତ୍ରଣ ଗୋଟାଏ ଭୀଷଣ ନାରକୀୟ ଧ୍ୱଂସମୁଖୀ ମନର ପରିକଳ୍ପନା । ମଣିଷର ମନ ପରି ପ୍ରକୃତି ଏତେ ଦରିଦ୍ର ନୁହେଁ – ମୂର୍ଖ ନୁହେଁ—ଦାୟିତ୍ୱହୀନ ବି ନୁହେଁ । ପୃଥିବୀରେ ଜନସଂଖ୍ୟା ବୃଦ୍ଧି ପାଇଲେ ତାର ଭରଣପୋଷଣ ଲାଗି—ତାର ଯଥାଯଥ ପ୍ରତିପାଳନ ଲାଗି —ପ୍ରକୃତି ହିଁ ମଣିଷକୁ ପୁଣି ନୂତନ ପଥ ଦେଖାଇବ । ସମୁଦ୍ରର ଶିଉଳି ଖାଇ ମଧ୍ୟ ମଣିଷ ବଞ୍ଚିବ କିମ୍ବା କେବଳ ବଟିକା ଖାଇ ମଧ୍ୟ ସେ ବଞ୍ଚିବ । ମାଟି ଉପରେ ଜାଗା ନ ହେଲେ ସେ ମାଟିତଳେ ସୁଡ଼ଙ୍ଗ ଖୋଳି ରହିବ – ସମୁଦ୍ର ପାଣି ଉପରେ ଭେଳା ବାନ୍ଧି ନଗର ବସାଇବ—ପାହାଡ଼ ଉପରେ ଘର ବାନ୍ଧିବ । ତା'ଛଡ଼ା ପ୍ରକୃତି ତ ମଣିଷ ଲାଗି କେବଳ ଏଇ ପୃଥିବୀଟାକୁ ତିଆରି କରି ନାହିଁ !! ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡ ପଡ଼ିରହିଛି । ମଣିଷ ଯେ କୌଣସି ପ୍ରାଣହୀନ ଗ୍ରହରେ ବି ତାର ଜୀବନକୁ ପ୍ରତିଷ୍ଠିତ କରିପାରିବ ।

କିନ୍ତୁ ହାୟ ! ! କମଳର ଦର୍ଶନ ବଦଳିଲେ ମଧ୍ୟ ସେ ଆଜି ତାର ସୃଷ୍ଟିକ୍ଷମତା ହରାଇ ବସିଛି । ଦୁଇଟି ପିଲାଙ୍କ ମଧ୍ୟରୁ ତାର ପ୍ରଥମ ସନ୍ତାନ ପୁଅଟି ମାତ୍ର ପାଞ୍ଚ ବର୍ଷରେ ଗୋଟାଏ ଦୁଃସାଧ୍ୟ ରୋଗରେ ସେମାନଙ୍କୁ ଠକିଦେଇ ଚାଲିଗଲା । ଆଉ ବୋଧହୁଏ ସେଇ ଦୁଃଖରେ ତାର ସ୍ତ୍ରୀ ମଧ୍ୟ ଅଳ୍ପଦିନ ମଧ୍ୟରେ ଆତ୍ମହତ୍ୟା କରି ମଲା । ଆଉ ତାର ଆପଣାର କହିବାକୁ କେବଳ ଝିଅଟିଏ । ତାକୁ ମହାରାଷ୍ଟ୍ରର ଆର୍ଯ୍ୟକନ୍ୟା ମହାବିଦ୍ୟାଳୟରେ ଛାଡ଼ିଦେଇ କମଳ ବର୍ତ୍ତମାନ ଏଇ 'ଜୀବନବାଦ' ର ପ୍ରଚାର କରି ବୁଲୁଛି ।

ଆଉ ଥରେ ବିବାହ କଲା ନାହିଁ କମଳ । କିପରି ବା ବିବାହ କରନ୍ତା ? କେଉଁ ନାରୀକୁ ସେ ସେ ଆଉ ମାତୃତ୍ୱର ଅଧିକାର ବା ସୌଭାଗ୍ୟ ଦେଇପାରିବ ନାହିଁ ! ! କିଏ ଭଲ ଆଉ ତାକୁ ବିବାହ କରନ୍ତା ?

ନିଜର ଖିଆଲରେ ନିଜେ ବଞ୍ଚିତ—ବିଡ଼ମ୍ବିତ ଚିତ୍ରକର କମଳ !!

ବେଳେ ବେଳେ ଖୁବ୍ ଭାବପ୍ରବଣ ହୋଇ କହେ—ମୁଁ ଆଜି କାହାକୁ ଚାହେଁ ନାହିଁ ଡାକ୍ତର ! ମୁଁ ଚାହେଁ ପ୍ରିୟା । ବହୁତ ମୁଁ ଖୋଜିଛି ଡାକ୍ତର, କିଏ ସେହି ମହୀୟସୀ ପ୍ରେମବତୀ କରୁଣାମୟୀ ନାରୀ – ଯିଏ ମୋର ଏହି ସୃଷ୍ଟିକ୍ଷମତାହୀନ ପୌରୁଷକୁ ତାର ନିଷ୍କାମ ପ୍ରଣୟ ମାଧୁର୍ଯ୍ୟରେ ଆଜୀବନ ତପସ୍ୱିନୀ କରି ରଖିବ ।

କମଳ ଦିନେ କହୁଥିଲା – ସେ କୁଆଡ଼େ ସେଇ ନାରୀକୁ ପାଇଛି !!

ସେ ନାରୀ ତୁମେ ଡାକ୍ତର ! ତୁମେଇ ସେହି ପ୍ରେମବତୀ, କରୁଣାମୟୀ, ମହୀୟସୀ ନାରୀ । ଜୀବନରେ ବହୁ ନାରୀଙ୍କ ସଂସ୍ପର୍ଶରେ ଆସିଛି— କିନ୍ତୁ ତୁମେ ଅନନ୍ୟା । ତୁମେ ମୋର ସମସ୍ତ ଦୁର୍ବଳତା ଜାଣି ମଧ୍ୟ ମୋତେ ଭଲ ପାଉଛ । ତୁମେ ଭଲକରି ଜାଣ – ମୁଁ ତୁମ ଉଦ୍ୟାନର ପୁଷ୍ପକୁ ଫଳବତୀ କରାଇବାରେ ସମ୍ପୂର୍ଣ୍ଣ ଅକ୍ଷମ···ତଥାପି···

କ'ଣ ତଥାପି ? ? ? ?

ମୁହଁରେ ପ୍ରକାଶ ନ କଲେ ବି ଡାକ୍ତର ମନୋରମା ମନେ ମନେ କଣ୍ଟକିତ ବିରକ୍ତ ମଧ୍ୟ ହୋଇଉଠନ୍ତି । ଛେନାଗୁଡ଼ ବୁଝନ୍ତି ଏଇସବୁ କବି,

ଶିଳ୍ପୀ ଆଉ ଲେଖକମାନେ । ମଣିଷର ହୃଦପୃକୁ ଏମାନେ କଅଣ ବା ବୁଝନ୍ତି ? କେତେ ବା ବୁଝନ୍ତି ? ନିଜ ମନର ମାଧୁରୀ ମିଶାଇ ଏମାନେ ଜଗତର ସ୍ୱାଦ ଗ୍ରହଣନ୍ତି—ଶୁଖିଲା ହାଡ଼ ଚୋବାଇ କୁକୁର ଯେମିତି ନିଜ ଦାନ୍ତମୂଳର ରକ୍ତର ସ୍ୱାଦ ଗ୍ରହି ଆନନ୍ଦ ପାଏ ।

ଆପଣା ମନର ରଙ୍ଗ ବୋଳି, ରସ ଲେପି, ରୂପ ଆଙ୍କି, ଏମାନେ କ ଆପଣା ବୁଦ୍ଧିର ଖିଆଲି ଦର୍ଶନ ଦେଇ ଏମାନେ ଚରିତ୍ର ଗଢ଼ନ୍ତି । ବାସ୍ତବ ଜୀବନ ସଙ୍ଗେ କେତେ ପ୍ରଭେଦ ଏମାନଙ୍କ ବର୍ଣ୍ଣିତ ଚରିତ୍ରଗୁଡ଼ାକର ! ବିଧାତାର ଜଗତ ସଙ୍ଗେ ଖୁବ୍ କମ୍ ମେଳ ଏମାନଙ୍କ ଜଗତର ! !

ବିଚିତ୍ର କମଳ !

ଖିଆଲି କମଳ ! !

ଆପଣା ମନର ସୌରଭରେ କସ୍ତୁରୀ ମୃଗ ପରି ଆପେ ପାଗଳ । ସେ କପରି ବୁଝିବ—ମନୋରମା-ହୃଦପୃର କ୍ଷୁଧା ! ସେ କପରି କଳିବ ତାର ଅନ୍ତରର ଅତଳସ୍ପର୍ଶୀ ବେଦନାର ସମୁଦ୍ରକୁ ?

କେତେ ଜନନୀର ଗର୍ଭ ବିଦାରଣ କରି ନିଏ କେତେ ଶିଶୁର ଅସ୍ଫୁଟ କୋମଳ କାକଳିରେ ଏ ଧରଣୀକୁ ସଙ୍ଗୀତ ଶୁଣାଇଛନ୍ତି ନୂତନ ସୃଷ୍ଟିର ସଙ୍ଗୀତ । କିନ୍ତୁ—କିନ୍ତୁ—ଆଜି ପର୍ଯ୍ୟନ୍ତ ସେହି ନୂତନ ସୃଷ୍ଟିର ମଧୁର ଅସ୍ଫୁଟ କୋମଳ କାକଳିର ସଙ୍ଗୀତ ତାଙ୍କ ନିଜ ଦେହରୁ ସମସ୍ତ ସ୍ନାୟୁତନ୍ତ୍ରୀକୁ ଥରାଇ ଦେଇ—କମ୍ପାଇ ଦେଇ—ଜଗତର ଶ୍ରବଣକୁ ଧ୍ୱନିମଧୁର କରି ନାହିଁ ।

ଏ କ'ଣ କମ୍ ବଡ଼ ବ୍ୟର୍ଥତା !

ସେ କ'ଣ ଖୋଜି ନାହାନ୍ତି ? ସେ ମଧ୍ୟ ଖୋଜିଛନ୍ତି ଆଜିଯାଏ—ମନେ ମନେ – ସେଇ ପୁରୁଷଟିକୁ – ଯେ ତାଙ୍କ ଭିତରର ଏଇ ଅପୂର୍ଣ୍ଣ ମାତୃତ୍ୱର ଆକାଂକ୍ଷାଟିକୁ ଚରିତାର୍ଥ କରିଦେଇ ପାରିବ । ଯଦ୍ୱାରା ପୌରୁଷୀ ଲୋକ ସଂଯୋଗରେ ତାଙ୍କର ମନ-କାନନର ସମସ୍ତ ଫୁଲ – ଏକ ଏକ ହୋଇ ପରିପୂର୍ଣ୍ଣ ସଫଳତାରେ ସାର୍ଥକ ହୋଇ ଉଠିବେ । ସେହି ପୁରୁଷଟିର ମିଳନ ମୁହୂର୍ତ୍ତକୁ ସେ କି କ'ଣ କମ ଉଦ୍‌ବେଗର ସହିତ ଅପେକ୍ଷା କରି ଆସିଛନ୍ତି ଆଜିଯାଏ ! କିନ୍ତୁ ସେ ପୁରୁଷ ମିଳିନାହିଁ । ମିଳିବ ବି ନାହିଁ ! !

ଆଉ କମଳ ମିଶ୍ର ! !

କାହିଁକି ତା ପ୍ରତି ସେ ଏତେ ଆକୃଷ୍ଟ ? ସବୁ କଥା ଜାଣି ମଧ୍ୟ ପ୍ରକୃତରେ କାହିଁକି ସେ କମଳ ପ୍ରତି ଏତେ ପ୍ରେମପ୍ରବଣ ? ହୃଦୟର ସମସ୍ତ ଉତ୍ତପ୍ତ ଆତୁରତା ଦେଇ କାହିଁକି ସେ କମଳର ଆସିବା ବାଟକୁ ଏମିତି ଚାହିଁ ବସିଥାନ୍ତି ?

ଅଥଚ କମଳ ସଙ୍ଗେ ପରିଚୟ ସେମିତି କିଛି ନାଟକୀୟ ନୁହେଁ । ବହୁ ରୋଗୀଙ୍କ ଭଳି କମଳ ବି ଦିନେ ଆସିଥିଲା ଡାକ୍ତରଖାନା । ପେଟରେ ଲକ୍ଷ ଲକ୍ଷ ଆମି ବାଏସିଧ୍ ଜୀବାଣୁଙ୍କର ଚକ୍ରାନ୍ତରେ ଉତ୍ପୀଡ଼ିତ ହୋଇ । ଔଷଧ ନେଇ ସେଦିନ ସେ ଚାଲିଗଲା; ମାତ୍ର ପୁଣି ଆସିଲା କିଛିଦିନ ପରେ ଏବଂ ବାରମ୍ବାର ଔଷଧ ଖାଇ ମଧ୍ୟ ସେ ବାରମ୍ବାର ସେହି ଅଭିଯୋଗ ନେଇ ଆସିଲା ।

ସେଦିନ ଓପରଓଳି । ହଠାତ୍ କଣ୍ଠରୁ କୌତୂହଳର ଆବେଗ ନେଇ ମନୋରମା ପଚାରିଦେଲେ –

ଆପଣ ଏଠି ରହୁଛନ୍ତି କେଉଁଠି ?

ଆପଣ ମୋତେ ଜାଣନ୍ତି ?

ହଁ, ଜାଣେ । ଆପଣଙ୍କୁ ବା ନ ଜାଣେ କିଏ ? କଲେଜରେ ପଢ଼ିବା ଦିନୁ ଆପଣଙ୍କ ଗଳ୍ପ ଉପନ୍ୟାସ ପଢ଼ିଆସୁଛି । ଆପଣଙ୍କ ଲେଖା ନେଇ ଆମ ମହଲରେ ସେତେବେଳେ ବହୁତ ଆଲୋଚନା ହୁଏ । ଜୀବନର ନାନା ସମସ୍ୟା ଉପରେ ଆପଣ କେମିତି ଅଦ୍ଭୁତ ଭାବରେ ଆଲୋକପାତ କରନ୍ତି······

କ'ଣ ଖୁବ୍ ଭୁଲ୍ କଥା କହେ ?

ନା ଭୁଲ୍ କ'ଣ ? କେତେକ କହନ୍ତି ଠିକ୍ । କେତେକ କହନ୍ତି ଭୁଲ୍ । ବାସ୍—ଏଇ ନେଇ ତର୍କ ଚାଲେ—ଆଉ କ'ଣ ?

ଆପଣଙ୍କର ନିଜ ମତ କ'ଣ ?

ମୋ ମତ କାହିଁ ପଚାରୁଛନ୍ତି ? ମୁଁ ବା ସାହିତ୍ୟର ଜାଣେ କ'ଣ ? ରୋଗ ଆଉ ଔଷଧ ନେଇ ଆମର କାରବାର । ତେବେ ଆପଣଙ୍କର ଅନେକ ଯୁକ୍ତିକୁ ମୁଁ ପସନ୍ଦ ନ କଲେ ବି ଆପଣଙ୍କର ଦୃଷ୍ଟିକୋଣର ମୌଳିକତା ପ୍ରତି ମୋର ଅନ୍ତରର ସମର୍ଥନ ଥିଲା ଓ ଏବେ ବି ଅଛି ।

ମଣିଷ-ଜୀବନ ପ୍ରତି ଆପଣଙ୍କର ଯେମିତି ଶ୍ରଦ୍ଧା ଆଉ ସହାନୁଭୂତି ଅଛି ମଣିଷର ମୌଳିକ ସମସ୍ୟା ପ୍ରତି ମଧ୍ୟ ଆପଣଙ୍କର ଦୃଷ୍ଟି ସେମିତି ତୀକ୍ଷ୍ଣ :

କମଳ ମିଶ୍ର ମନୋରମାଙ୍କ କଥା ଶୁଣିଲି କି ନାହିଁ କେଜାଣି— ହଠାତ୍ ଚଉକୀଟା ଟାଣିନେଇ ସେ ବସିପଡ଼ିଲେ । ତା ପରେ ବେଶ୍ ଗମ୍ଭୀର ଭାବରେ ଟେବୁଲ ଉପରେ ହାତଭରା ଦେଇ – ସତେ କି ମନୋରମା ପାଖରେ ସେ ଶରଣ ପଶିଛି – ଏମିତି ଭାବରେ ସେ ଆରମ୍ଭ କଲେ— କ'ଣ କରିବା କୁହନ୍ତୁ ତ ? କିଛିଦିନ ହେଲା ମୋତେ ଏଇ ଆମିବକ୍ ଉସେଣ୍ଟି କାବୁ କରିଦେଲାଣି । ଅଥଚ ବାରଆଡ଼େ ହୋଟେଲହିଁ ହୋଇଛି ମୋର ଏକମାତ୍ର ଆଶ୍ରୟ ବର୍ତ୍ତମାନ ।

କାହିଁକି ଆପଣ ବାରଆଡ଼େ ଘୂରୁଛନ୍ତି ?

କମଳ ତା'ର ଜୀବନ-କାହାଣୀ କହିଯାଇଥିଲେ ବେଶ୍ ସଂକ୍ଷେପରେ । ଶେଷରେ ସେ କହିଲେ ।

ବର୍ତ୍ତମାନ ମୋର କାମ ହେଉଛି ବିଭିନ୍ନ ସ୍ଥାନରେ ସ୍ୱାଧୀନ ଚିନ୍ତାଶୀଳ ସାଂସ୍କୃତିକ ଗୋଷ୍ଠୀ ଗଢ଼ିବା । ଏହି ଗୋଷ୍ଠୀଗୁଡ଼ିକର କର୍ତ୍ତବ୍ୟ ହେବ—ସବୁ ବ୍ୟାପାର ଉପରେ ମୁକ୍ତ ଭାବରେ ଚିନ୍ତା କରିବା । ଏ ଦେଶରେ କେବଳ ରାଜନୀତିକ ଦଳ ଛଡ଼ା ଆଉ ଅନ୍ୟ ଦଳ ନାହିଁ । ବିଭିନ୍ନ ଚିନ୍ତା ଓ ଧାରଣା ଉପରେ ମଧ୍ୟ ଗୋଷ୍ଠୀ ଗଢ଼ାହେବା ଉଚିତ । ଫ୍ରାନ୍ସରେ ଘୂରିହେଇ ଆସିଲି—ଏହିଭଳି ଅସଂଖ୍ୟ ଧରଣର ଗୋଷ୍ଠୀ ସେ ଦେଶରେ । ଗୋଷ୍ଠୀ ନ ଥିଲେ ଦେଶରେ ଚିନ୍ତାଶୀଳ ସାଂସ୍କୃତିକ ଭିତ୍ତି ପଡ଼ିପାରିବ ନାହିଁ । ଗୋଷ୍ଠୀ ଜରିଆରେ ହିଁ ନୂତନ ଚିନ୍ତା ଓ ଧାରଣାକୁ ଦେଶବାସୀଙ୍କ ହୃଦୟ ଭିତରେ ସଞ୍ଚାରିତ କରିହେବ । ସ୍ୱାଧୀନତା ପରେ ଆମେ କେବଳ ରାଜନୀତିକ ଗୋଷ୍ଠୀ ଗଢ଼ିଛୁ । ଫଳରେ ଆମେ ଜୀବନର ଅନ୍ୟାନ୍ୟ ଅଂଶ ଉପରେ ଏହି ସ୍ୱାର୍ଥସର୍ବସ୍ୱ କ୍ଷମତାଲୋଭୀ ମୂର୍ଖ ରାଜନୀତିକ ଉଚ୍ଚାଭିଳାଷୀମାନେ ହିଁ ଆଧିପତ୍ୟ ବିସ୍ତାର କରି ସାରିଲେଣି । ତେଣୁ ଖାଲି ରାଜନୀତି ନୁହେଁ—ବୌଦ୍ଧିକ ଓ ସାଂସ୍କୃତିକ କ୍ଷେତ୍ରରେ ବି ଏଭଳି ଗୋଷ୍ଠୀର ଆବଶ୍ୟକତା ବର୍ତ୍ତମାନ ଯଥେଷ୍ଟ ପଡ଼ିଲାଣି ।

ପାଗଳର ପ୍ରଳାପ ଭଳି କାନକୁ ଶୁଭୁଥିଲା ସେତେବେଳେ କମଳର ଏହି କଥାଗୁଡ଼ାକ । କି ବିଚିତ୍ର ଏ ସ୍ୱପ୍ନ ! ! କି ଅସମ୍ଭବ ଏ ଖିଆଲ ! !

ଅଥଚ ଏଇ ସ୍ୱାର୍ଥକୈନ୍ଦ୍ରିକ ଅର୍ଥବଶ ଦୁନିଆରେ କେବଳ ଚିନ୍ତାକୁ ନେଇ ଗୋଷ୍ଠୀ ଗଢ଼ିବାର ଖିଆଲ ଯେମିତି ଅଦ୍ଭୁତ—ସେମିତି ଚମତ୍କାର ।

କମଳର ଏହି ପ୍ରଳାପ ଭିତରୁ ବି ତାର ପ୍ରାଣର ଆବେଗ ଓ ବିଶ୍ୱାସର ନିଷ୍ଠା ମନୋରମାଙ୍କୁ ଖୁବ୍ ଭଲ ଲାଗିଥିଲା । ସେ ପଚାରିଥିଲେ କଣ୍ଠରେ କାଞ୍ଚନ୍ର ମଧୁର ଉତ୍ସୁକତା ଦେଇ—

ଆପଣ ବର୍ତ୍ତମାନ କେଉଁ ମତ ପ୍ରଚାର କରୁଛନ୍ତି ?

ଜୀବନବାଦ ।

ତା' ମାନେ ??

ତା' ମାନେ ଜୀବନର ଜୟଗାନ ।

କମଳ ଫେର୍ ବକ୍ତୃତା ଦେଲା । ବେଶ୍ ଉତ୍ତେଜିତ କଣ୍ଠରେ—ଅନୁପ୍ରାଣିତ ହେଲା ଭଳି—ସତେ କି ଆଗରେ ତାର ବିରାଟ ଉତ୍ସୁକ ଜନତା—

ପ୍ରକୃତରେ ଦେଖିବାକୁ ଗଲେ—ମଣିଷର ସମସ୍ତ ବିଦ୍ୟା, ବୁଦ୍ଧି ଆଜି କାର୍ଯ୍ୟ ଜୀବନକୁ ରକ୍ଷା କରିବାରେ ହିଁ ନିୟୋଜିତ ହେବା ଉଚିତ । ଆମର ରାଜନୀତି, ସମାଜନୀତି, ଅର୍ଥନୀତି, ବିଜ୍ଞାନ, ଧର୍ମ ଓ ଶିଳ୍ପ, ସାହିତ୍ୟ ଆଦି ସବୁ ଜୀବନମୁଖୀ ହେବା ଦରକାର । ଆଧୁନିକ ଯୁବକସମାଜର ମନ ଭିତରେ ଏହି ବିଶ୍ୱାସ ଓ ଚିନ୍ତା ସୃଷ୍ଟି କରିବା ଦିଗରେ ମୁଁ ବର୍ତ୍ତମାନ କାର୍ଯ୍ୟ କରୁଛି ।

ମନୋରମା ଟିକିଏ ହସି କହିଲେ—ମାଫ ସମସ୍ତେ ବି ତ ଏଇ କଥା କୁହାନ୍ତି !!

କମଳ ଫେର୍ ଉତ୍ତେଜିତ ହୋଇ ଟେବୁଲ ଉପରେ ଚପେଟା-ଘାତ କରି କହିଲା—

ନା—ସମସ୍ତେ ବର୍ତ୍ତମାନ ସେ କଥା କୁହୁଁନାହାନ୍ତି । ଆଜି ସେଇଥିଲାଗି କେବଳ--ଆଜି ପୃଥିବୀ ଉପରେ ମୃତ୍ୟୁର ଇଗଲ ଡେଣା ମେଲି ଉଡ଼ୁଛି । ଆଜି ମଣିଷ ଭିତରେ ବଞ୍ଚିବା ଅପେକ୍ଷା ମରିବାର

ଆକାଂକ୍ଷା ହିଁ ପ୍ରବଳ ହୋଇଉଠୁଛି । ଜୀବନ ଶୂନ୍ୟ ଥିଲେ ମଣିଷ ଆଜି ଅନ୍ୟର ଜୀବନକୁ ହରଣ କରିବାରେ ସଂକୋଚ ବୋଧ କରନ୍ତା ! ଏଇ ମରିବାର ଇଚ୍ଛାହିଁ ତାକୁ ଅନ୍ୟକୁ ମାରିବାର ଖିଆଲ ଓ ପ୍ରେରଣା ଯୋଗାଉଛି । ଆମର ସମସ୍ତ ମାନବିକ ଜ୍ଞାନ ବା ପ୍ରଜ୍ଞା ବା କର୍ମ କେବଳ ନିଜର ସଂକୀର୍ଣ୍ଣ ସ୍ୱାର୍ଥଗତ ଖଣ୍ଡିତ ଜୀବନକୁ କେନ୍ଦ୍ରକରି ଏମିତି ଖଣ୍ଡିତ ଭାବରେ ଜୀବନର ସ୍ୱତନ୍ତ୍ରକରି ଦେଖିବା ମାନେ—ଜୀବନକୁ ହତ୍ୟା କରିବା । ସମସ୍ତ ଜୀବନର ଅଖଣ୍ଡତାକୁ ନେଇ ମଣିଷର ଜ୍ଞାନ, ଅନୁଭୂତି ଓ କାର୍ଯ୍ୟ ନିୟୋଜିତ ନ ହେଲେ ଏ ପୃଥିବୀ ଧ୍ୱଂସ ପାଇଯିବ । ଅତୀତରେ "ଧର୍ମ" ଏ ଦିଗରେ କିଛି ଚେଷ୍ଟା କରିଥିଲା; ମାତ୍ର ପରେ 'ଧର୍ମ'କୁ ମଧ୍ୟ ଏଇ ରାଜନୀତି ଗ୍ରାସ କରିଗଲା । ଫଳରେ ଜୀବନଧାରଣ ଲାଗି ଉଦ୍ଦିଷ୍ଟ ଧର୍ମକୁ ନେଇ ଜୀବନମରଣର ସୂତ୍ରପାତ ହେଲା ଧର୍ମ-ଯୁଦ୍ଧରେ । ଆଜି ବର୍ତ୍ତମାନ ମଧ୍ୟ ଏଇ ରାଜନୀତି "ବିଜ୍ଞାନ"କୁ ଗ୍ରାସ କରି ବସିଛି ଏବଂ ତା ସଙ୍ଗେ ସଙ୍ଗେ ଅଜଗର ପରି ପୃଥିବୀର ସମସ୍ତ ମାନବୀୟ ପ୍ରଚେଷ୍ଟାକୁ ତାର ଭୀଷଣ କୁଣ୍ଡଳୀ ଭିତରେ ଜଡ଼ାଇ ଧରିଛି । ଆଜି ରାଜନୀତିର ଏଇ ଅଜଗର-ଆଲିଙ୍ଗନ ଭିତରୁ ମୁକୁଳିଗଲେ ପୃଥିବୀର ଜୀବନ ନିରାପଦ ହେବ । ମୁଁ ବର୍ତ୍ତମାନ ସେଇ ଉଦ୍ଦେଶ୍ୟରେ ମୋ ଜୀବନକୁ ଉତ୍ସର୍ଗ କରିଛି । "ଜୀବନବାଦ"ର ପ୍ରତିଷ୍ଠା ଲାଗି ମୁଁ ବର୍ତ୍ତମାନ "ରାଜନୀତି" ବିରୁଦ୍ଧରେ ହିଁ ପ୍ରଚାର ଚଳାଇଛି ।

କମଳର ଏଇ ପ୍ରଳାପ ଭିତରେ ତାର ଅନ୍ତରର ଯେତିକି ବିଶ୍ୱାସ, ନିଷ୍ଠା ଓ ଆବେଗ ପ୍ରକାଶିତ ହୋଇ ପଡ଼ୁଥିଲା – ସେତିକିରେ ହିଁ ମନୋରମାଙ୍କର କୋମଳ ହୃଦୟ ଆଲୋଡ଼ିତ ହୋଇପଡ଼ିଲା । ତାଙ୍କ ଭିତରେ ଏଇ ସୃଷ୍ଟିଛଡ଼ା ଜୀବନବାଦୀ ପାଗଳଟି ଲାଗି ଅପୂର୍ବ କରୁଣା ଓ ମମତା ଜାଗିଉଠିଲା । ସେ ପ୍ରେମପ୍ରବଣ ସ୍ନିଗ୍ଧ ଗୃହିଣୀରେ ଅଳ୍ପ ହସି ଉତ୍ତର ଦେଲେ—ଅବଶ୍ୟ ଟିକିଏ ଲଘୁ ସ୍ୱରରେ ।

କିନ୍ତୁ ଆପଣ ନିଜ ଜୀବନଟା ଉପରେ ଏତେ ଅତ୍ୟାଚାର କରୁଛନ୍ତି ଯେ······?

କ'ଣ କରିବି କୁହନ୍ତୁ । ଅଖଣ୍ଡ ଜୀବନର ବିଜୟ ଲାଗି ମୁଁ ମୋର ଏଇ ଖଣ୍ଡିତ ଜୀବନଟାକୁ ବଳି ଦେଇପାରେ । ସେଥିଲାଗି ମୋର କୌଣସି ଚିନ୍ତା ନାହିଁ । ଅବଶ୍ୟ ପେଟର ଏଇ ଯନ୍ତ୍ରଣାଟା ବେଳେ ବେଳେ ବଡ଼--

ନା—ନା ! ଜୀବନର ପ୍ରତିଷ୍ଠା ଲାଗି ଅନ୍ତତଃ ଆପଣଙ୍କୁ ବଞ୍ଚିବାକୁ ପଡ଼ିବ ।

କମଳ ହଠାତ୍ ଅନ୍ୟମନସ୍କ ହୋଇପଡ଼ିଲା । ତା ପରେ ନିର୍ଲିପ୍ତ ଭାବରେ ସ୍ୱରଅଙ୍କୁ କ୍ଷଣକାଳ ଚାହିଁ ବିଦାୟ ନମସ୍କାର ଜଣାଇ ହଠାତ୍ ଉଠିପଡ଼ିଲା—

ଅଚ୍ଛା ! ଆଅନ୍ତୁ ଆଜ୍ଞା । ବହୁତ ବିରକ୍ତ କଲି – କ୍ଷମା କରିବେ ।

ସତେ କି ସେ ଦୃଶ୍ୟ ମଝିରେ ହଠାତ୍ ଗ୍ରୀନ୍‌ ପରଦାର ଦଉଡ଼ିଟାକୁ ଟାଣି ପକାଇଦେଇ ରଙ୍ଗମଞ୍ଚ ଉପରୁ ଅନ୍ତରାଳକୁ ଚାଲିଯିବା ଲାଗି ଚଞ୍ଚଳ ହୋଇଉଠିଲା ।

କମଳର ଏଇ ହଠାତ୍ ନିର୍ଲିପ୍ତ ଅନ୍ୟମନସ୍କତାରେ ମନୋରମା ଟିକିଏ ଆହତ ହୋଇଥିଲେ । ସଙ୍ଗେ ସଙ୍ଗେ କିନ୍ତୁ ସେ ଅପ୍ରସ୍ତୁତ ଭାବରେ ହେଲେ ବି କାଞ୍ଚନ୍ ରସାଭ୍ରୂର ଭଙ୍ଗୀରେ କହିଉଠିଲେ—ରହନ୍ତୁ ଆଜ୍ଞା ! ସନ୍ଧ୍ୟା ହୋଇଆସିଲାଣି । ଡାକ୍ତରଖାନା ବନ୍ଦକରି ମୁଁ ମଧ୍ୟ ଯିବି ; ଆସନ୍ତୁ ନା ମୋ ବସା ଅଡ଼େ ଦୟାକରି—ଟିକିଏ ଚାହା ଖାଇଯିବେ ଅନ୍ତତଃ ।

କମଳ ମନୋରମାଙ୍କୁ କୃତକୃତ୍ୟ କଲା ଭଳି ସଙ୍ଗେ ସଙ୍ଗେ ରାଜି ହୋଇଯାଇ ବେଶ୍ ଉଦାର କଣ୍ଠରେ କହିଲା—

ଧନ୍ୟବାଦ !!

···ବହୁ ସମୟ ସେମାନେ ବଗିଚାରେ ବସି ସେହିଦିନ ଗପିଥିଲେ । ଏଣୁ ତେଣୁ ବହୁ କଥା । ମନୋରମାଙ୍କ ଜୀବନର କେତେ ନିଃସଙ୍ଗ ସନ୍ଧ୍ୟା କେତେ ବିଫଳ ପ୍ରତୀକ୍ଷାର ଦୀର୍ଘଶ୍ୱାସରେ ସୃଷ୍ଟି ହୋଇଯାଇ ଅର୍ଦ୍ଧ ରଜନୀର ତିମିର ଭିତରେ ଲୀନ ହୋଇ ନ ଯାଇଛୁ !! ମାତ୍ର ସେହିଦିନର ସେଇ ସନ୍ଧ୍ୟାଟି ! ଆଃ—ଅସ୍ତସୂର୍ଯ୍ୟର ଅଜସ୍ର ରଙ୍ଗର ବର୍ଣ୍ଣାଢ୍ୟ ସୁଷମାରେ ଶ୍ରୀମନ୍ତ ଆଜି ମନ୍ତ୍ରମାନ୍ୟତ ହୋଇ ତାଙ୍କର ମନ-କାନନରେ ଶତ ମନୋରଥର ନୀଡ଼୍‌ଜାଳିକ ଝଲକ ସୃଷ୍ଟି କରି ଦେଇଥିଲା ସେହିଦିନର ସେହି ସନ୍ଧ୍ୟାଟି । ଆଜି ସେହି ଅବିସ୍ମରଣୀୟ ସନ୍ଧ୍ୟାଟିର ଅତିଥି ଭାବରେ ବହୁ ଆବେଗ, ବହୁ ଉନ୍ମାଦନା, ଆଜି ବହୁ ଅଧୀର ଆନନ୍ଦ ଉଲ୍ଲାସର ଚମକ ତାଙ୍କ ରକ୍ତରେ ଖେଳାଇ ଦେଇଥିଲା ଏଇ କମଳ ।

ଜୀବନକୁ ପୁଣି ଥରେ ଆଶାତୁର ଭାବରେ ଗଢ଼ିବା ଲାଗି ସେଦିନ ଯଥେଷ୍ଟ ପ୍ରେରଣା ଯୋଗାଇ ଦେଇଥିଲା କମଳ । ସେଇଦିନ ବି ମନୋରମା ପ୍ରସ୍ତାବ ଦେଇଥିଲେ, ଆପଣ ଅନ୍ତତଃ ଏ ସହରରେ ଯେତେ ଦିନ ରହୁଛନ୍ତି – ଆସନ୍ତୁ ଦୟାକରି – ଆମ ଘରେ ଖାଇବେ । ମୋର ତ ରାନ୍ଧିବାକୁ ସ୍ତ୍ରୀଲୋକଟିଏ ଅଛି । ଆଉ ବି ମୋର କିଛି ଜଞ୍ଜାଳ ନାହିଁ । ଆସନ୍ତୁ ନା – ଆପତ୍ତି କ'ଣ ?

ବୌଦ୍ଧ ସନ୍ନ୍ୟାସୀ ଭିକ୍ଷୁ ପରମକାରୁଣିକ ଉପଗୁପ୍ତ ମଥୁରାର ପ୍ରଖ୍ୟାତଯଶା ପରମ ରୂପବତୀ ନର୍ତ୍ତକୀ ବାସବଦତ୍ତାର ଅନୁରାଗଭରା ନିମନ୍ତ୍ରଣକୁ ଉଦାର କରୁଣାରେ ସ୍ମିତହାସ୍ୟରେ ଗ୍ରହଣ କଲା ଭଳି କମଳ ବେଶ୍ ଗୋଟେ ତଥାଗତ ଉଦାରତାରେ ଅଳ୍ପ ହସି କହିଲା –

ତଥାସ୍ତୁ । ଜୀବନର ଜୟ ହେଉ ଡାକ୍ତର ! ସତେ କି ଏତିକି ସ୍ୱୀକୃତି ଦେଇ ସେ ଖୁବ୍ ଗୋଟାଏ କରୁଣା ଦେଖାଇ କୃତାର୍ଥ କଲା ମନୋରମାଙ୍କୁ !! ଆଉ ମନୋରମାଙ୍କୁ ବି କମଳର ଏଇ ଅଙ୍ଗୀକାର ବେଶ୍ ଭଲ ଲାଗିଥିଲା ।

…ବାସ୍, ସେହିଦିନୁ ବେଳେ ବେଳେ କମଳ ଆସେ ଗୋଟାଏ ଝଡ଼ ଭଳି । ଆଉ ସେଇ ଝଡ଼ ଭଳି ପୁଣି କୁଆଡ଼େ ହଠାତ୍ ବି ଅନ୍ତର୍ଦ୍ଧାନ ହୋଇଯାଏ । କମଳକୁ ବାନ୍ଧିରଖି ହୁଏନା । ଯଦିଓ କମଳ ବାରମ୍ବାର ସ୍ପଷ୍ଟ ବାଣୀ ଶୁଣାଏ –

ତୁମେ ମୋତେ ହମେ ବାନ୍ଧିଦେଲଣି ଡାକ୍ତର ! ଯୁଆଡ଼େ ଯାଉଛି – ତୁମରି ପ୍ରେରଣା ହିଁ ମୋ ଅନ୍ତରକୁ ନିତ୍ୟ ଏକ ପ୍ରୀତିମଧୁର ସଙ୍ଗୀତର ଆବେଶରେ ସିକ୍ତ କରି ରଖୁଛି । ତୁମ ଭିତରେ ଏକ ମହୀୟସୀ ପ୍ରଣୟିନୀର ଆତ୍ମା ଲୁଚିରହିଛି ଡାକ୍ତର ! ଏକ ନିଷ୍କାମ ପ୍ରେମାସ୍ପଦାର ହୃଦୟ ଦେଇ ତୁମେ ମୋତେ ବାନ୍ଧି ଦେଇଛ । ତୁମ ହାତରେ ମୁଁ ମୋର ଜୀବନକୁ ସମର୍ପିଦେଇ ନିଶ୍ଚିନ୍ତରେ 'ଜୀବନବାଦ'ର ପ୍ରଚାର କରି ଚାଲିଛି । ତୁମକୁ ମୁଁ ଭକ୍ତି କରେ ।

ମିଛ କଥା !! ଯାଃ !!!

ଆପଣା ଭିତରେ ଫୁଲି ଫୁଲି ମନୋରମା ଗେହ୍ଲେଇ ହୁଅନ୍ତି । ଆଉ ତାଙ୍କୁ ଲାଗେ…

ସତରେ ବି କମଳଙ୍କୁ ଭଲ ପାଇ ହୁଏ—ପ୍ରେମ କରିହୁଏ । କମଳର ସ୍ପୃହଣୀୟ ବାଣୀକୁ ଅବିଶ୍ୱାସ କରି ହୁଏନା । କମଳ ନିଶ୍ଚିନ୍ତ ଭାବରେ ହୃଦୟବାନ୍, ପ୍ରେମ ପ୍ରବଣ ।

ମାତ୍ର – ହାୟ ବିଚରା କମଳ !

କମଳ ନିଓରେଟିକ୍ । ପରିବାର ନିୟନ୍ତ୍ରଣ ଲାଗି ନିଜର ସୃଷ୍ଟି-କ୍ଷମତା ହରାଇସାରିବା ପରେ କମଳ ଅନ୍ତର ଅସହାୟ ଭାବରେ ନିଓରେଟିକ୍ ହୋଇପଡ଼ିଛି ।

କେବେ କେବେ ମନୋରମାଙ୍କ ହୃଦୟ ବ୍ୟାକୁଳ ହୋଇଉଠେ ।

ହାୟ ! ହାୟ ! କମଳର ସମସ୍ତ ଖିଆଲ ଓ ପାଗଳାମି ସତ୍ତ୍ୱେ ପଛ କମଳର ପୌରୁଷ ସୃଷ୍ଟି କ୍ଷମ ହୋଇ ରହିଥାଆନ୍ତା । ।

ସେଥିଲାଗି ତ ଯେତେବେଳେ କମଳକୁ ସବୁ କିଛି ସମର୍ପଣ କରିଦେବାକୁ ଦେହ ଓ ମନ ଚଞ୍ଚଳ ହୋଇଉଠେ, କିଏ ଯେପରି ତାଙ୍କର ଅନ୍ତର ଭିତରୁ ବାରଣ କରିଉଠେ –

ସାବଧାନ ମନୋରମା । । ଏଇ ନିଷ୍ଫଳ ଉତ୍ତେଜନାକୁ ହଠାତ୍ ସ୍ୱୀକାର କରିନିଅ ନାହିଁ । ଏ ସମର୍ପଣର କିଛି ମୂଲ୍ୟ ନାହିଁ । ଯାହା ତୁମେ ଥରେ ଦେଇଦେବ – ଲକ୍ଷେ ଗୁଣ ମୂଲ୍ୟରେ ସେ ଆଉ ତୁମ ନିକଟକୁ ଫେରିଆସିବ ନାହିଁ । ଏ ବର୍ଷା ଭୂମିକୁ କେବଳ ଆର୍ଦ୍ର କରିବ – ଶୀତଳ କରିବ; ମାତ୍ର ଏ ବର୍ଷାରେ ଫୁଲ ଫୁଟେ ନାହିଁ, ଫଳ ଫଳେ ନାହିଁ । ଅକାରଣ ହେବ ତୁମର ଏ ସମର୍ପଣ ।

ଡା: ମନୋରମା ପୁଣି ସଚେତ ହୋଇଯାଆନ୍ତି – ହଟିଆସନ୍ତି । କମଳର ଆଲିଙ୍ଗନ ଭିତରୁ ସେ ଖୁବ୍ ଧୀରେ ନିଜକୁ ମୁକୁଳେଇ ଆଣନ୍ତି । କମଳ କିନ୍ତୁ ଭାବପ୍ରବଣ ହୋଇ କହିଉଠେ –

ବହୁ ନାରୀ ମୁଁ ଜୀବନରେ ଦେଖିଛି ଡାକ୍ତର । ତୁମେ କିନ୍ତୁ ଅନନ୍ୟା । ସମ୍ପୂର୍ଣ୍ଣ ନିଷ୍କାମ ତୁମର ଏଇ ଭଲପାଇବା । ଏଣିକି ମୋର ସମସ୍ତ ଲେଖା ଭିତରେ ମୁଁ ତୁମକୁ ହିଁ ଚିରନ୍ତନ ନାୟିକାର ମହିମାରେ ଫୁଟାଇ ଦେଇ ଯିବି । ତୁମର ପ୍ରେମ ପାଇ ମୁଁ ଧନ୍ୟ ।

ହାୟ – ବିଚରା କମଳ । ।

ବାଇଆଟାଏ ।

ବାତୁଲଟାଏ ।

କଅଣ ସେ ବୁଝେ ? ଆଜ କଏ ବା ତାର ଅଛି ତାକୁ ବୁଝିବାକୁ ? ଆଜ କେବଳ ଏତିଥିଲାଗି ତ କମଳକୁ କୁଣ୍ଢାଇ ଧରି ଉଚ୍ଛକଣ୍ଠ କଣ୍ଠରେ କାନ୍ଦିବାକୁ ମନହୁଏ ମନୋରମାଙ୍କର ।

କାହିଁ—କାହିଁ କମଳ ?

ଡା: ମନୋରମା ଅଧୀର ଅଗ୍ରହରେ କୋଠରୀ ଭିତରେ ଘୂରି ଲାଗିଲେ ।

ବାହାରେ ଶ୍ରାବଣର ଝଡ଼—ଅନ୍ଧକାର ଅନ୍ଧର ନିବିଡ଼ ହୋଇ ଉଠିଲାଣି । ଘର ଭିତରେ ଚମ୍ପା, କରବୀର ଅଉ ମଧୁମାଳତୀର ଉନ୍ମତ୍ତ ସୁରଭି । ସେଥିରେ ଘରୁ ସିଝା କୁକୁଡ଼ା ମାଂସର ଅଇଁଷିଆ ଚରମ ବାସ୍ନା ଆ ବାସ୍ନା ମଝେ ମଝେ ଘର ଭିତରକୁ ପଶିଆସୁଛି । ଅସହ୍ୟ— ଅସହ୍ୟ ଏଇ ପ୍ରତୀକ୍ଷାହତ କାମନାତପ୍ତ ନିଃସଙ୍ଗ ରାତିର ବେଦନାର୍ଦ୍ର ଅଭିଶାପର ଜ୍ୱାଳା ।

କମଳ ବୋଧେ ଆଜ ଆସିବ ନାହିଁ । ।

ବିଶ୍ୱାସ ନାହିଁ ପାଗଳଟାର କଥାରେ । ବହୁ ବାର କଥା ଦେଇ ମଧ୍ୟ ସେ ଆସେ ନାହିଁ । ଆପଣାର ଖିଆଲରେ ଅପେ ବିଭୋର । କେବେକେବେ ଅଗ୍ରନକ ଭାବେ ଅସି ପହଞ୍ଚିଯାଏ । ବହୁଦିନ ହେଲା ଏ ସହର ଛାଡ଼ି କୁଆଡ଼େ ଯାଇଥିଲା – ଏବେ ଆସିଛି ଏଠିକି । ସବୁଆଡ଼େ ବୁଲି ବୁଲି 'ଜୀବନବାଦ' ପ୍ରଚାର କରୁଛି । ତାର ପେ ଆଜ ଉପନ୍ୟାସ ଲାଗି ମଧ୍ୟ ଘଟଣା ଓ ଚରିତ୍ରର ଯୋଗାଡ଼ କରୁଛି । କାଲି କହି ଯାଇଥିଲା —ଅଜ ରାତି ଅଠଟାରେ ଏଠି ଅସି ଖାଇବ ବୋଲି । ତା ହେଲେ ଏଇ ଝଡ଼ ବର୍ଷା ଦେଖି କ'ଣ ଆଜ ସେ ଆସିଲା ନାହିଁ । !

ଉଃ । । ।

କାହିଁ କମଳ ?

କାହିଁ ??

ଓଃ । ।

ହାରାମଣି ଅସି ଖବର ଦେଲା – ମା । ସେ ମାତାଜୀ ଭାରି ବ୍ୟସ୍ତ ହୋଇ ଡାକୁଛନ୍ତି ।

ଡା । ମନୋରମା ବିରକ୍ତିରେ ଉଠି ଠିଆ ହେଲେ ।

ଓଃ । । ସ୍ୱଲ୍ । ଯାଉଛୁ ।

× × ×

ଉର୍ଦ୍ଧ ରୁମ୍‌ରେ ପଶିଲାମାତ୍ରେ ଇ ସ୍ତ୍ରୀଲୋକଟି ଠିଆ ହେଲା । ପ୍ରାୟ ଷାଠିଏ ବର୍ଷ ବୟସ୍କା, ଦୀର୍ଘଦେହା, କଞ୍ଚନ ମେଦବହୁଳା ଗୌରାଙ୍ଗୀ ଗୋଟିଏ ନାରୀ ।

ଡା: ମନୋରମା ଭଲକରି ସ୍ତ୍ରୀଲୋକଟିକୁ ଆପାଦମସ୍ତକ ଚାହିଁଲେ । ମସ୍ତକରେ ପୁରୁଷ ଭଳି କର୍ତ୍ତିତ କେଶ । କପାଳରେ ନାସାଗ୍ର-ବିସ୍ତୃତ ରାମାନନ୍ଦୀ ତିଳକ । ବାହୁ ଓ ଗଳାରେ ରୁଦ୍ରାକ୍ଷର ମାଳା । ଗୈରିକବସନା ଏଇ ମାତାଜୀଟିର ଆପାଦସ୍କନ୍ଧ କାନ୍ଥ ଖଣ୍ଡିଏ ସୁନ୍ଦର କମ୍ବଳରେ ଆବୃତ ।

ମାତ୍ର ସବୁଠାରୁ ଆକର୍ଷଣୀୟ ତାର ଏଇ ଖୁବ୍ ବିସ୍ତୃତ ଆକ୍ଷି ଦୁଇଟି । ସେଇ ଅକ୍ଷି ଦୁଇଟାକୁ ଚାହିଁଦେଲାମାତ୍ରେ ଇ ଡା: ମନୋରମଙ୍କ ହୃଦୟରେ ତାଙ୍କର ସମସ୍ତ ବିରକ୍ତି ଓ ବିସ୍ମୟ ସତ୍ତ୍ୱେ ମାତାଜୀଟି ପ୍ରତି ହଠାତ୍ ଏକ ସମ୍ବେଦନଶୀଳ ମମତା ଜାଗିଉଠିଲା । ତାର ସେଇ କଳାକଳା ବିସ୍ତୃତ ଆକ୍ଷି ଦୁଇଟି ଭିତରେ ଯେମିତି ଏକ ଶିଶୁସୁଲଭ ଚପଳ ବେଦନାଭୂତିର ମାୟା ଉଜ୍ଜ୍ୱଳ ହୋଇଉଠିଛୁ । ସତେ ଯେମିତି ତାର ସେଇ ଚାହାଣୀ ଭିତରେ ଏକ ଅବୋଧ ସରଳ ବିଶ୍ୱାସ ସଙ୍ଗେ ଏକ ଦୁର୍ବୋଧ ତିକ୍ତ ବିଡ଼ମ୍ବନାର ଯୁଗ୍ମ ଲୀଳାମାଧୁରୀ ବିଚ୍ଛୁରି ପଡ଼ୁଛି ! କିମ୍ବା ତାର ସେଇ ଚାହାଣୀ ଭିତରେ ଯେମିତି ଚେତନ ଓ ଅଚେତନ—ଆଲୋକ ଓ ଅନ୍ଧକାର—ସ୍ୱପ୍ନ ଓ ଜାଗରଣ—ବେଦନା ଓ ବିଦ୍ରୂପ ମିଶି ଏକାକାର ହୋଇ ଯାଇଛନ୍ତି ! ଏଇ କଳାକଳା ବିସ୍ତୃତ ଅକ୍ଷି ଦୁଇଟାରେ ସତେ ବା ସେସବୁ କିଛି ଦେଖିଦେଉଛି ଏବଂ ସଙ୍ଗେ ସଙ୍ଗେ କିଛି ମଧ୍ୟ ଦେଖିପାରୁ ନାହିଁ । କହିବା ବାହୁଲ୍ୟ ଯେ—

ଅକ୍ଷି ଦୁଇଟାର ଚାହାଣୀରେ ମନୋରମା ସମ୍ମୋହିତ ହୋଇ ଗଲେ ।

ତାପରେ ମାତାଜୀଟିର ଓଠ ଉପରେ ଖୁବ୍ ସରୁ ସରୁ (ଆଜ ଲକ୍ଷିତ ଶେତା ହେଲେ ବି—ତାକୁ ନାଲି କହିହେବ) ମାତ୍ର ଦୁଇଟି ରେଖା । ମାତ୍ର ସେ ରେଖାଗୁଡ଼ିକ ନୁହେଁ । ସତେ ବା ଦୁଇଟି କମ୍ପିତ ରେଖା

କମ୍ବା ଗ୍ରେଟ ଗ୍ରେଟ ଅମାନିଆ ଢେଉ ଦୁଇଟି। ଅସୀମ ସମୁଦ୍ରର ଅସଂଖ୍ୟ ବସ୍ତୁସ୍ତ ଆଉ ବିଶାଳ ଢେଉମାନଙ୍କର ଶୃଙ୍ଖଳିତ ଶୋଭଯାତ୍ରାରୁ ଲୁଚି ଖସି ଆସି – ଏଠି ଛପିଯାଇ ଖଜୁରୀକୁ ହେଉଛନ୍ତି ଦୁଇଟି ଗ୍ରେଟ ପିଲାଙ୍କ ଭଳି। ମାତ୍ର ସେଥିରେ ବି ଯେମିତି ମେଳିଛଡ଼ା ଦୁଇଟି ନିର୍ବୋଧ ଶିଶୁଙ୍କର ଅସହାୟ ଅବୋଧ ଆର୍ତ୍ତି ଫୁଟିଉଠୁଛି ! ! ଏଥିରେ ସନ୍ଦେହ ନାହିଁ ଯେ – ଡା: ମନୋରମାଙ୍କ ହୃଦୟରେ ଏଇ ୫୦ ଦୁଇଟି ମାଧ୍ୟମରେ ମହାଜାଗିଟି ପ୍ରତି କରୁଣ ମାୟା ଏଇ ପ୍ରଥମ ଦର୍ଶନରେ ହିଁ ସଞ୍ଚରିତ ହୋଇଗଲା। କଣ୍ଠରେ ଯଥେଷ୍ଟ ସୌଜନ୍ୟ ଆଉ ସହାନୁଭୂତି ଦେଇ ମନୋରମା ପଚାରିଲେ –

କଅଣ ମା ? କୁଆଡ଼େ ଏତେ ରାତିରେ ?

ଏତିକ ପ୍ରଶ୍ନରେ ମାତାଜୀଟିର ଆଖି ଅଶ୍ରୁସଜଳ ହୋଇଉଠିଲା। ତାର ସମସ୍ତ ମୁଖମଣ୍ଡଳରେ ଏକ ଅବ୍ୟକ୍ତ ବେଦନାର ଛାଇ ମନୋରମାଙ୍କ ଆଖିର ଆଲୁଅକୁ ବି ଘୋଡ଼ାଇ ପକାଇଲା। ସେ କହିଲେ –

ବସ – ବସ ମା ! କୁହ – କ'ଣ ହେଲା ତୁମର ?

ମାତାଜୀ କରୁଣ ଯନ୍ତ୍ରଣାଜନିତ କ୍ରନ୍ଦନ ପ୍ରକାଶ କରି – ଖୁବ୍ କଷ୍ଟରେ ସୋଫା ଉପରେ ବସିଲେ ଓ କେତେକ ମୁହୂର୍ତ୍ତ ପରେ ଗାଗାନୁଗା ବୈଷ୍ଣବୀୟ ଶୈଳୀରେ ତାଙ୍କର ସମସ୍ତ ଯନ୍ତ୍ରଣାଜନିତ କ୍ରନ୍ଦନକୁ ଚାପି ଚାପି – ମୁହଁରେ ଯଥାସମ୍ଭବ ମୃଦୁ ହାସ ପ୍ରକଟାଇ ବଙ୍ଗ ଭାଷାରେ କହିବାକୁ ଲାଗିଲେ –

ବସ ମାଆ ! ତୁମକୁ ଇ ସବୁ କଥା କହିବ ବୋଲି ତ ଏତେ ବାଟ ଧାଇଁ ଆସିଛି। ମୋର ବ୍ରଜଗୋପାଳର ଅନୁକମ୍ପା ମା ! ତୁମର ଲକ୍ଷ୍ମୀ ନାମ ଶୁଣିଥିଲି। ଏତେ କମ୍ ବୟସରେ ଖୁବ୍ ସୁନାମ ଅର୍ଜନ କରିଛ ମା ! ମୁଖେ ମୁଖେ ତୁମର ପ୍ରଶଂସା ଶୁଣି ଛୁଟିଆସିଲି। ଯାହା ଦେଖୁଛି ମା – ତୁମେ ମହାଭାଗ୍ୟବତୀ – ସୁଲକ୍ଷଣୀ। ତୁମର ଏଇ ପରମ ରମଣୀୟ ଚେହେରାରେ ତାହା ସମ୍ପୂର୍ଣ୍ଣ ବ୍ୟକ୍ତ ହୋଇ-ପଡୁଛି। ତାହା ନାଇଁକ ହେବ ନାହିଁ ମା ! ଗୁରୁ, କୃଷ୍ଣ, ବୈଷ୍ଣବଙ୍କ ଉପରେ ତୁମର ଯେ ଗାଢ଼ ଶ୍ରଦ୍ଧା, ଯେ ଅଚଳା ଭକ୍ତି – ସେଥିରେ ଆପେ ଆପେ ଏପରି ଶ୍ରୀ, ଏପରି – ଔଜ୍ଜ୍ୱଲ୍ୟ, କାନ୍ତ ବ୍ରଜଗୋପାଳର ଦୟାରେ

ତୁମେ ଫାଇଛ ମାଆ ! ତୁମକୁ ଦେଖି ମୋର ଚକ୍ଷୁ-କର୍ଣ୍ଣର ବିବାଦ ଆଜ ଭଞ୍ଜନ ହେଲା । ତୁମେ ମହା ପୁଣ୍ୟବତୀ ମା !

ମାତାଜୀଙ୍କର କଣ୍ଠସ୍ୱର ଓ କହିବାର ଭଙ୍ଗୀରେ କିଛିଟା ବେଦନା-ମାଧୁର୍ଯ୍ୟର ସ୍ୱାଦ ଥିଲେ ବି ଆପଣାର ପ୍ରଶଂସା ଶୁଣିବା ଲାଗି ମନୋରମାଙ୍କର ବିଶେଷ ଆଗ୍ରହ ନ ଥିଲା । ତେଣୁ ସେଥିଲାଗି ଆଉ ବେଶୀ ପ୍ରଶ୍ରୟ ନ ଦେଇ ସେ କହିଲେ –

କଣ ଦରକାର କୁହନ୍ତୁ ଚଞ୍ଚଳ । ମଠ କେଉଁଠି ?

ସେହିଭଳି କୁନ୍ଥେଇ କୁନ୍ଥେଇ ମାତାଜୀ କହିଲେ—

ମଠ ଆଉ କେଉଁଠ ମାଆ ? ଥାଏ ନବଦ୍ୱୀପେ, ଶ୍ରୀ ଶ୍ରୀ ଗୌରାଙ୍ଗ-ଦେବେର ଜନ୍ମସ୍ଥଳୀ । ଖୁବ୍ ବାଲ୍ୟ ବୟସେ ବାପ ମାଆ ମୋତେ ବିବାହ ଦେଇଥିଲେ । ଶ୍ୱଶୁରବାଡ଼ି ପାକସ୍ଥାନେ । ସ୍ୱାମୀସଙ୍ଗସୁଖ ଜୀବନେ କେବେ ଥରେ ହେଲେ ଭୋଗ ନ ଥିଲା । ସ୍ୱାମୀର ଘର କରିବା ପୂର୍ବରୁ ହଠାତ୍ ଦିନେ ଦଙ୍ଗା ଆରମ୍ଭ ହୋଇଗଲା । ଯେଉଁଦିନ ସ୍ୱାମୀ ସଙ୍ଗେ ମୋର ମଧୁଶଯ୍ୟା ହେବାର କଥା - ସେଇ ଦିନ ହିଁ ହଠାତ୍ ଦଳେ ଗୁଣ୍ଡା ଆମର ଘର ଉପରେ ଚଢ଼ାଉ କଲେ । ଘାତକମାନଙ୍କ ହାତରେ ମୋର ଶ୍ୱଶୁର, ଶାଶୁ ଓ ଶେଷରେ ମୋର ସ୍ୱାମୀ ମାରିଗଲେ । ଈଶ୍ୱର ମୋତେ ଗୁଡ଼ି ପ୍ରାଣ ଭୟରେ କୁଆଡେ ପଳାଇଗଲି । ସାହିର ଅନ୍ୟମାନେ କେହି ପ୍ରାଣ ବିକଳରେ ଆମକୁ ସହାୟ ହେଲେ ନାହିଁ । ପାଷାଣ୍ଡଗଣ ମୋର ସ୍ୱାମୀକୁ ମାରି—ମୋର ସ୍ୱାମୀକୁ ମାରି – ମୋର ଇଜ୍ଜତ ସର୍ବନାଶ କରିବାକୁ ଉଦ୍ୟତ ହୋଇଥିଲେ, ମାଁ ଜୀବନ ବିକଳରେ ମୁଁ ସେଇ ଅନ୍ଧାର ଭିତରେ ଦୌଡ଼ି ପଳାଇଗଲି ଏବଂ ସାହିର ଶେଷ ମୁଣ୍ଡରେ ଗୋଟାଏ ମଠ ଥିଲା - ସେଇ ମଠ ପାଖରେ ପହଞ୍ଚି ଦେଖେ ତ ମଠର ପାଚେରି କବାଟ ବନ୍ଦ । ପାଷାଣ୍ଡଗଣ ମୋତେ ଅନୁଧାବନ କରୁଥାଆନ୍ତି । ପାଚେରି କଡ଼ରେ ମସ୍ତ ଗୋଟାଏ କୂଅ ଥିଲା । ପ୍ରାଣ ବିକଳରେ – ଇଜ୍ଜତ ବଞ୍ଚାଇବା ଲାଗି— ଅନ୍ଧ ଭାବରେ ମୁଁ ସେ କୂଅ ଭିତରକୁ ଡେଇଁ ପଡ଼ିଲି ।

ମନୋରମାଙ୍କ ଉତ୍କଣ୍ଠା ବଢ଼ିଗଲା । ସେ କହିଲେ – ଆଚ୍ଛା – ତାପରେ ? ?

ତା'ପରେ—ତାପରେ—ମା, ତୁମର ବିଶ୍ୱାସ ହେବ ନାହିଁ—ସେହି କୁଞ୍ଜ ଭିତରେ ପଡ଼ିଯିବା ମାତ୍ରେ ହିଁ ମୁଁ ଚେତନାଶୂନ୍ୟ ହୋଇ ପଡ଼ିଲି । କେଉଁ ଭାବରେ କ'ଣସବୁ ଘଟିଲା ମୁଁ ଜାଣି ନାହିଁ । ପାଖ ସକାଳ ହେବାବେଳେ ହେଲା—ମୁଁ ଆଖି ମେଲି ଚାହିଁଲି । ଏ କ'ଣ ? ଏ କିଏ ? ପ୍ରେମ, ଆନନ୍ଦ ଓ କରୁଣାର ପ୍ରତିମୂର୍ତ୍ତି ଜଣେ ସନ୍ୟାସୀ ମୋତେ କୋଳ ଧରି ବସିଛନ୍ତି—ଆଉ ମୋର ଆଖି ଖୋଲିବା ମାତ୍ରେ ହିଁ ସେ ତାଙ୍କର ମଧୁର ଆଶ୍ୱାସଭରା ବାଣୀରେ କହିଲେ—

ଭୟ ନାହିଁ ମା ! ବ୍ରଜଗୋପାଳର ଅଶେଷ କରୁଣା ତୋ ଉପରେ ବର୍ଷିତ ହୋଇଛି । ତୁ ଏଷଣି ନିରାପଦରେ ଅଛୁ ।

ମନୋରମା ପଚାରିଲେ—

କ'ଣ ସେଇ କୁଞ୍ଜ ଭିତରେ ?

ହଁ ମା ! ସେଇ କୁଞ୍ଜ ଭିତରେ ହିଁ ଶ୍ରୀ ଶ୍ରୀ ବ୍ରଜଗୋପାଳର ଅନୁକମ୍ପା ମୁଁ ପ୍ରତ୍ୟକ୍ଷ କଲି । ମୋର ଭାଗ୍ୟକୁ ନିତ୍ୟାନନ୍ଦ ମଠର ମହନ୍ତ ବୈଷ୍ଣବପ୍ରବର ଶ୍ରୀ ଶ୍ରୀ ଲଳିତା ବାବା ମଧ୍ୟ ଗୁଣ୍ଡାମାନଙ୍କ ଆକ୍ରମଣ ଭୟରେ ଗତ ରାତିରେ ସେଇ କୁଞ୍ଜ ଭିତରେ ଆତ୍ମଗୋପନ କରିଥିଲେ ।

ମୋଠାରୁ ସବୁକଥା ଶୁଣିସାରି ଲଳିତା ବାବା କହିଲେ—ଓ ରେ ମୂଢ଼ା ! ଆଉ କାହିଁରେ ସଂସାର ବାନ୍ଧିବୁ ? ସଂସାରକୁ ଦେଖିଲୁ ତ ! ଆଉ କାହାରେ ବିବାହ କଲେ ଆଉ ପାଞ୍ଚଟା ସଂସାରୀଙ୍କ ଭଳି ଖାଲି ସଂସାର ସଂସାର ହୋଇ ମରିବୁ । ସଂସାର କି ତୋତେ ରକ୍ଷା କରିବ ? ରକ୍ଷା କଲା କିଏ ? ···ବ୍ରଜଗୋପାଳକୁ ବିବାହକର ..ସମର୍ପଣ କରିଦେ ତୋର ନାରୀତ୍ୱ ତାର ପାଦତଳେ । ଲୋଟାଇ ଦେ ତୋର ଯୌବନ, ତୋର କାମନା, ତୋର ବାସନା ସେଇ ଅଖିଳରସାମୃତସିନ୍ଧୁ ମନ୍ଦାକିନୀପ୍ରାନ୍ତସାରିକାଶୀ ରାଖାଲ ବାଳକଟାର ଚରଣତଳେ—ଉଦ୍ଧାର ପାଇଯିବୁ ।

ବାବାଙ୍କ କଥାରେ ଦୀକ୍ଷା ନେଲି । ସେତେବେଳେ ମା ମୋର ସୋମର୍ଥ ବୟସ । ଊଣେଇଶି କୋଡ଼ିଏରୁ ବେଶୀ ହେବ ନାହିଁ । ଦେହରେ ଭରା ଯୌବନ ଲହଡ଼ୀ ଭାଙ୍ଗୁଥାଏ । ଏଇ ଦେହରେ ସେତେବେଳେ ରୂପର ନିଆଁ ଜଳୁଥିଲା ମା ! ମନର ଗଳିକନ୍ଦିରେ କାମନାର ସ୍ପୃହାସ

ଛୁଟୁଥିଲା—କିନ୍ତୁ ଶ୍ରୀ ବ୍ରଜଗୋପାଳର ଯାହା ଉପରେ ଅନୁକମ୍ପା ହୁଏ ସବୁ ଘୁଡ଼ୁଛୁଡ଼ ଦେଇ ସେ ତା'ର ପଛରେ ଛୁଟିଯାଏ ନା କ ମା ?

ମନୋରମା ମାତାଜୀଙ୍କର ଆଖି ଭିତରେ ଏକ ସରଳ ଶିଶୁସୁଲଭ ପ୍ରତ୍ୟୟ ଓ ପ୍ରଶ୍ନ, ଜିଜ୍ଞାସୁର କୌତୂହଳପୂର୍ଣ୍ଣ ପ୍ରକାଶ ଲକ୍ଷ୍ୟ କରିପାରିଲେ ଏବଂ ସଙ୍ଗେ ସଙ୍ଗେ ମାତାଜୀଙ୍କର ରସମଧୁର ଜୀବନକାହାଣୀର ଉତ୍ସପରେ ତାଙ୍କ ହୃଦୟ ବି ଆଗ୍ରହତପ୍ତ ହୋଇଉଠିଲା । ଏକ ରସଗ୍ରାହୀ ଚିତ୍ତର ସହଜ ବିଶ୍ୱାସ ନେଇ ସେ ଉତ୍କଣ୍ଠିତ ହୋଇ ଶୁଣିବାକୁ ବସିଲେ ।

କିନ୍ତୁ କମଳ କାହିଁ ? କମଳ ଆସିଲା ନାହିଁ ଯେ ଏତେବେଳ ଯାଏ ! ଆସିଥିଲେ ଶୁଣି ନ ଥାନ୍ତା ! ଏତେ ଚମତ୍କାର କାହାଣୀ !! ଚରିତ୍ର-କାଙ୍ଗାଳ, ଘଟଣା-କାଙ୍ଗାଳ, ତାର ଲେଖା ଲାଗି ଖୋରାକ ପାଇଥାନ୍ତା ତ !

ଉଃ ! ! ବାହାରେ ଶ୍ରାବଣର ଝଡ଼ ମଧ୍ୟ କ୍ରମେ କ୍ରମେ ରସୋନ୍ମତ୍ତ ହୋଇଉଠୁଛି ଯେମିତି ! !

ହଠାତ୍—ସେହି ରାତିର ଦମ୍କାଏ ହାଓ୍ୱା ଭଳି ପ୍ରବେଶ କଲା କମଳ ।

ମନୋରମାଙ୍କ ହୃଦୟ ସଙ୍ଗେ ସଙ୍ଗେ ଅଧୀର ଆନନ୍ଦାବେଗରେ ନାଚିଉଠିଲା । ହେ ଭଗବାନ୍ ! ଏ ରାତି ତା'ହେଲେ ପରିପୂର୍ଣ୍ଣ ହେଲା ! ସାର୍ଥକ ହେଲା ତେବେ ଏଇ ଭରା ଶ୍ରାବଣ ରଜନୀର ଆର୍ଦ୍ର ଶୀତଳ ଅନ୍ଧକାରର ଜ୍ୱାଳା ! !

କମଳ ବିନା ଭୂମିକାରେ ଘର ଭିତରକୁ ପଶିଆସି ଦେହରୁ ଓଦା ବର୍ଷାତିଟାକୁ କାଢ଼ି ଧରିଲା । ମନୋରମା ସେଇଟି ତା ହାତରୁ ଆଣି ଘର ଭିତରକୁ ନେଇ ବାରଣ୍ଡାରେ ଟାଙ୍ଗିଦେଇ ପୁଣି ଫେରି ଆସିଲେ । ତାପରେ କଣ୍ଠରେ କଅଁଳ ଅଭିମାନର ଉଷ୍ମତା ଆଣି ପଚାରିଲେ—

ଘଣ୍ଟାରେ କେତୁଟା ବାଜୁଛି ?

ଅନନ୍ତ ସମୟକୁ ଗୋଟିଏ ଘଣ୍ଟାର ଡାଏଲ୍ ଭିତରେ ମାପି ହୁଏନା ମନ ! ( ଆଜକାଲି ସେ "ମନ" ବୋଲି ଡାକେ । ) ତା ମାନେ ସମୟ ଜିନିଷଟା ଯେ ପୂରା ଆପେକ୍ଷିକ । ମୋର ସମୟ ଓ ତୁମର ସମୟ କେତେବେଳେ ଏକ ସ୍ରୋତରେ ବହିବ ତୁମେ ଜାଣ ?

କେତେବେଳେ ?

ମନୋରମା ଏକ ଶିଶୁସୁଲଭ ନିଷ୍କଳଙ୍କ ନିର୍ବୋଧ ପ୍ରଗଳ୍‌ଭତାରେ ପଚାରିଲେ ।

ଯେତେବେଳେ ଆମେ ସମସ୍ତଙ୍କୁ ପୂର୍ଣ୍ଣରୂପେ ଭୁଲି ପାରିବା । ତାପରେ

ଖୁବ୍ ଗୋଟାଏ ଦାର୍ଶନିକ ଭଳି, ମନୋରମାଙ୍କର ଅଧୀର ଉତ୍କଣ୍ଠା ଆଜି ଆନନ୍ଦକୁ ଧ୍ୟାନ ନଦେଇ କମଳ କହିଚାଲିଲା । ଗୋଟାଏ ବକ୍ତୃତା—ସମସ୍ତ ଓ ଆପେକ୍ଷିକ ତତ୍ତ୍ୱ ଉପରେ—ନିଜ ଉପଲବ୍‌ଧିର ରଙ୍ଗ ଓ ରସର ପ୍ରଲେପ ଦେଇ । ଆଜି ଏଣେ ମାତାଜୀଙ୍କି ହୃଦୟର ନିଜର ସମସ୍ତ ବେଦନା, ଯନ୍ତ୍ରଣା ଓ କ୍ରନ୍ଦନ ସତ୍ତ୍ୱେ ଏକ ସହଜ ମାତୃସୁଲଭ ରସସିକ୍ତ କୌତୂହଳରେ ଏ ଦୁହିଁଙ୍କର ଗଣ୍ଠବନ୍ଧ ଓ କଥୋପକଥନ ଲକ୍ଷ୍ୟ କରୁଥିଲେ । ଦୁହିଁଙ୍କର ଏହି ବଚନିକା ଭିତରେ ପରୀକ୍ଷାସ୍ତ ପୂର୍ବରାଗର ରସୋଲ୍ଲାସମୟ ପ୍ରଗଳ୍‌ଭ ବ୍ୟଞ୍ଜନା ଯେପରି ଗୁଞ୍ଜରି ଉଠୁଛି !! ମାତାଜୀଙ୍କର ଆଖିରେ ଏଇ ବାସ୍ତବ ଦୃଶ୍ୟଟି ବି ସ୍ୱପ୍ନ ହୋଇ ଫୁଟିଉଠୁଛି ।

କମଳକୁ ଉଦ୍ଦେଶ୍ୟ କରି ମନୋରମା କହିଲେ—ହଜୁ ! ଦୟାକରି ବକ୍ତୃତା ବନ୍ଦ କରନ୍ତୁ । ଖିରି ଖାଇବ କି ? ନା କଫି ?

ଯାହା କିଛି ପାଇଲେ ଧନ୍ୟ ହେବି । ଏଇ ପୁଣ୍ୟ ଘରର ଯେ କୌଣସି ଅବଦାନ—ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ହୃଦ୍ୟ—ଯାହା କିଛି ପାଇଲେ ବି ଭାବିନେବି ପରମ-ସୌଭାଗ୍ୟ ।

ମନୋରମାଙ୍କ ଆଖିରେ ଏକ ଅଦ୍ଭୁତ କୌତୁକ ଝଲମଲ ହୋଇଉଠିଲା । ସେ ହାସ୍ୟମଣିକୁ ତିନି ଗ୍ଲାସ୍ ଖିରି ଲାଗି ବରାଦ ଦେଲେ । କମଳ ମଝିରେ ମାତାଜୀଙ୍କ ବୈଷ୍ଣବୀ-ସୁଲଭ ବିନୟରେ ବାରଣ କରି ଉଠିଲେ—

ମୋତେ ମାଫ୍ କରିବ ମା ! ଆମେ ତ ତୁମମାନଙ୍କ ପରି ସଂସାରୀ ମନୁଷ୍ୟ ନୋହୁଁ ! ଶ୍ରୀ ଶ୍ରୀ ବ୍ରଜଗୋପାଳର କୃପାବାରି ବ୍ୟତୀତ ଆମର ତୃଷ୍ଣା ଆଜି କୌଣସି ପାନୀୟରେ ନିବୃତ୍ତ ହୁଏନା ଯେ—ଖିରି ଟାହା ଆମେ ଖାଉ ନାହିଁ ମା ! !

ଏଇ ସମୟରେ ହାସ୍ୟମଣି ଆସି କହିଲ—

ଖାଇବାକୁ ହୋଇଗଲାଣି ମା ! ଆଜି ଏତେବେଳେ ଯାଏ ହା ନ ଖାଇ ଆସ ଖାଇବ । ତା ପରେ ପଟ୍ଟନେ ଗପ କରିବ ।

କମଳ ତାର ସ୍ୱାଭାବିକ ବେଖାତିର ଢଙ୍ଗରେ ସୋଫା ଉପରେ ଗୋଡ଼ହାତ ଲମ୍ବାଇଦେଇ ଅର୍ଦ୍ଧଶାୟିତ ଅବସ୍ଥାରେ ସିଗ୍ରେଟ ଫୁଙ୍କି ଉପରକୁ ଗୋଟିଏ ମୋଟା ସୂଅରେ ଧୂଆଁ ଛାଡୁଥିଲ । ହାସ୍ୟମଣିର ପ୍ରସ୍ତାବରେ ସେ ଏକମତ ହୋଇ କହିଲ—

ବାସ୍—ବାସ୍—ତାହାହିଁ ହେଉ ମନ ! ଘର ଭିତରୁ ଫାଉଲ୍ କରିର ବାସ୍ନା ମନକୁ ଉତଳା କରିଦେଲାଣି ।

ମନୋରମା କହିଲେ—

କିନ୍ତୁ ଆଜି ଟିକିଏ ଅପେକ୍ଷା କଲେ ଭଲ ହୁଅନ୍ତା ପରା ! ତୁମକୁ ମୁଁ ପରିଚୟ କରାଇଦେବି କମଳ ! ଏ ହେଉଛନ୍ତି—ଜଣେ ବୈଷ୍ଣବୀ ମାତାଜୀ ! !—ଆଉ—

ଏକ କୌତୁକପୂର୍ଣ୍ଣ ଅଥଚ ସମ୍ବେଦନଶୀଳ କଣ୍ଠରେ କଞ୍ଚିତ୍ ଶିଶୁସୁଲଭ ଚପଳତା ଦେଖାଇ କମଳ କହିଲ—

ତା'ତ ଦେଖିପାରୁଛୁ । ମାତ୍ର ଏତେ ରାତିରେ—ମାନେ—ଏଇ ଝଡ଼ ଅନ୍ଧାର ବର୍ଷା—ଅର୍ଥାତ୍—ଲେଡ଼ି ଡାକ୍ତରଙ୍କ ଘରେ—ମାନେ—କିନ୍ତୁ—ଅଥଚ—ତଥାପି—ଅର୍ଥାତ୍—

ଅର୍ଥାତ୍—ଶୁଣ ତୁମେ । ଗୋଳମାଳ କରନା । ସେ ତାଙ୍କର ଜୀବନର କାହାଣୀ ଶୁଣାଉଛନ୍ତି ।

କମଳ ଗୋଟିଏ ଚପଳ ଶିଶୁ ଭଳି ହୋ ହୋ ହୋଇ ହସି ଉଠି ନିଜ ଜଙ୍ଘ ଉପରେ ଚାପଡ଼ା ମାରି ପାଟି କରିଉଠିଲ—

ହାଃ ହାଃ ହାଃ—ଜୀବନର ଜୟ ହେଉ ମିନୁ, ଆଉ ଶୁଣିବା ଦରକାର ନାହିଁ । ମୁଁ ସବୁ ଜାଣିପାରୁଛି । ଚେହେରା ଓ କଥାରୁ ମୁଁ ସବୁ ବୁଝୁଛି । ମାନେ ଏଇ ମହୀୟସୀ ବୈଷ୍ଣବୀପ୍ରବରା ମାତାଜୀଟି ଜୀବନର ସହଜ ଡାକକୁ ହିଁ ସହଜ ମନରେ ଶୁଣିଛନ୍ତି । ଆଜି ସେହି ଜୀବନର ଡାକରେ ହିଁ ଏଇ ଝଡ଼ଝଞ୍ଜାପୂର୍ଣ୍ଣ ରାତିରେ ଲେଡ଼ି ଡାକ୍ତରଙ୍କ ପାଖକୁ ଧାଇଁ ଆସିଛନ୍ତି ! ଅର୍ଥାତ୍—ମାନେ—ହାଃ ହାଃ ହାଃ—ଜୀବନକୁ ଅବହେଳା ଦେଖାଇ ଯେଉଁମାନେ ଜୀବନର ସ୍ୱାଭାବିକ ପଥରୁ ଭୁଲରେ

ବା ଅଜାଣତରେ ଦୂରେଇଯା'ନ୍ତି—ଜୀବନ ତାଙ୍କ ଉପରେ ଏମିତି ସହଜ ଭାବେ ପ୍ରତିଶୋଧ ନିଏ । ଠିକ୍ ଅଛି ମାଉସୀ, ଠିକ୍ ଅଛି—ଜୀବନର ଜୟ ହେଉ । ଜୀବନ ଦେବତା ଜିନ୍ଦାବାଦ । ଏଇଠି—ଜାଣନ୍ତୁ ତ'ହେଲେ ଆପଣଙ୍କ ଜୀବନ ଉପରେ ଜୀବନ ଦେବତାଙ୍କ ସେଇ ପ୍ରେମଙ୍କ୍ ପ୍ରତିଶୋଧର କାହାଣୀ । ଚମତ୍କାର ସତ ହୋଇଛି—

ମାଷ ମଉସୀ ଟିକେ ସଙ୍କୁଚିତ ଓ ଅପ୍ରସ୍ତୁତ ହୋଇଉଠି ଆହତ କଣ୍ଠରେ କହିଲେ—

ନାହିଁ ବାବା ! ମୁଁ ତ କାହାଣୀ ଶୁଣିବା ଲାଗି ତୁମ ମାନଙ୍କ ପାଖକୁ ଆସି ନାହିଁ ! ବ୍ରଜଗୋପାଳଙ୍କ ଆଦେଶରେ ବ୍ରଜ-ଗୋପାଳଙ୍କ ସେବା ଲାଗି ହିଁ ମୁଁ ଏଠିକି ଧାଇଁ ଆସିଛି ।

ତାହେଲେ କହନ୍ତୁ—ଆପତ୍ତି କାହିଁକି ?

ମନୋରମା ଧୀର ଭାବରେ କହିଲେ ।

ନା ! ଥାଉ ! ବ୍ରଜଗୋପାଳର ଆଦେଶ – ତୁମ ଛଡ଼ା ଆଉ କାହାକୁ ସେ ବୃତ୍ତାନ୍ତ ଶୁଣାଇବ ନାହିଁ ।

କମଳ ଉଠି ଠିଆ ହେଲା –

ଠିକ୍ ଅଛି ମାଁନୁ ! ଚାଲ – ଆମେ ଖାଇନେବା । ତା'ପରେ ତୁମେ ଗୋପନରେ ବସି ଶୁଣିବ ବ୍ରଜଗୋପାଳଙ୍କର ସେଇ ପ୍ରେମଙ୍କ୍ କୀର୍ତ୍ତିର କାହାଣୀ – ମାନେ ଜୀବନର ଜୟଗାନ ।

ମନୋରମା ଆଖିରେ ଈଷତ୍ ମଧୁର କଟାକ୍ଷ କରି କମଳ ଉଦ୍ଦେଶ୍ୟରେ ଇଂରାଜୀରେ କହିଲେ –

It is cruel—Don't offend her Kamal !
( ଛି – କମଳ ! ଏମିତି ନିଷ୍ଠୁର ଭାବେ ବୟସ୍କଙ୍କୁ ଅପ୍ରସ୍ତୁତ କର ନାହିଁ ।)

କମଳ ସୁନା ପିଲାଟି ଭଳି ତାଳମାରି କହିଲା –

ଆଉରି ନଃ – ରାମ୍ – ରାମ୍ – କିଏ କାହାକୁ ଅପ୍ରସ୍ତୁତ କରୁଛି ବନ୍ଧୁ ! ମୁଁ ପୂରା ମାନବବାଦୀ – ଜୀବନର ଦାବୀ ହିଁ ମୋର ଶ୍ରେଷ୍ଠ ଦାବୀ । କିନ୍ତୁ ବର୍ତ୍ତମାନ ଅବଶ୍ୟ ପେଟର ଦାବୀ – ପିଲେ ଛୁଞ୍ଛୁରି ଭଳି ଗୋଟାଏ ମାଂସଲାଗି ମସଲାପିକ୍ସ ଗୋଡ଼ – ଆସ ନା···

ସମାନେ ଖାଇବାକୁ ଗଲେ ।

× × ×

କମଳ କୁକୁଡ଼ା ମାଂସ ଭାରି ସୁଖ ପାଏ । ମନଭରି ଖାଇଲା କମଳ । ଖାଇବା ଟେବୁଲ ଉପରେ ମନୋରମା କୁକୁଡ଼ାର ଗୋଟାଏ ମାଂସଲଗା ଗୋଡ଼ କମଳ ପାଟି ପାଖରେ ଧରି ବଢ଼ାଇ ଦେଉଥିଲେ । ଆଉ କମଳ ସୁନା ପିଲାଟି ଭଳି ଆଖିବୁଜି ସେଇଟିକୁ ଚୋବାଉଥିଲା । ଖାଇବା ମଝିରେ କମଳ କହିଲା –

ଆଜିର ଏଇ ରାତିଟା କେମିତି ଲାଗୁଛି ମିନୁ ! !

ଭଲ ଲାଗୁଛି । କିନ୍ତୁ ତୁମେ ଯଦି ନ ଆସିଥାନ୍ତ ! ! !

ଓଃ ! !......

ଆଃ – ! !

କ'ଣ ହେଲା କମଳ । ମାଂସ ଚୋବାଇଁ ଚୋବାଇଁ ଜିଭ କାମୁଡ଼ି ଦେଲ ନା ?

ନା —ନା । ଜିଭ ନୁହେଁ ହେ – ତୁମର ସେଇ "ଓ ! ! !" ଟାକୁ କାମୁଡ଼ିଦେଲି ଆଃ ! ! !

କ'ଣ ଆଃ ! ! ¡

ମାନେ – ଓଃ ! ! !

ମନୋରମାଙ୍କ ମୁହଁ ଲାଜ ଓ ଆନନ୍ଦର ଅରୁଣିମାରେ ଲାଲ ହୋଇଉଠିଲା । ମନୋରମାଙ୍କ ଆଖିକୁ ଚାହିଁଲା କମଳ । ସେଇ ଆଖି ଭିତରେ ଶ୍ରାବଣର ଏଇ ଝଡ଼ ରାତିର ଆର୍ଦ୍ର ଶୀତଳ ଅନ୍ଧକାର ନଚଡ଼ହୋଇ ଉଠିଛି । କ୍ଷୁଧିତ କାମନାର ଏକ ଉଗ୍ର ହଲ୍ଲୋଳ ଉଷ୍ଣସ୍ରୋତାଣୀ ତାଙ୍କର ଆଖି ଭିତରୁ ବାହାରି ଆସି କମଳର ସ୍ନାୟୁ ଭିତରେ ସେହି କ୍ଷୁଧାକୁ ଇ ସଞ୍ଚରିତ କରିଦେଉଛି । ଆଜି ମନୋରମାର ସେହି ଅପୂର୍ବ ଆକର୍ଷଣୀୟ କେଶର ପରିପାଟୀ । ସେ ଯେମିତି ଗୋଟାଏ ଗମ୍ଭୀର ଅଥଚ ଉଚ୍ଛ୍ୱାସପୂର୍ଣ୍ଣ ତରଙ୍ଗିତ ନୀଳ ସମୁଦ୍ର ! ଦୁଇ ବେଣୀର ମୂଳ ଦେଶରେ ଏଇ ଚମ୍ପା ଆଉ କରବୀର ଫୁଲଗୁଡ଼ିକ ।

ମୋଟ ଉପରେ ତାର ଏଇ ଗହନ କେଶ ଭିତରେ ବି ଯେମିତି ଏଇ ତାମସୀ ଝଡ଼ ରାତିର ଅତି ଶୀତୋଷ୍ଣ କାମନାର ଅନ୍ଧକାର ଘୋଟି ରହିଛି ! !

କମଳ ଅନୁଭବ କଲା – ଡାକ୍ତର ମନୋରମାଙ୍କର ସେଇ ନିଷ୍କାମ ପ୍ରେମ-ଚତ୍ବରରେ ଆଜ ସଚେତନ ଅସୂମାଷ୍ଟ କାମନାର ଫୁଲ ଫୁଟି ଉଠିଛନ୍ତି । ସେଇ ଫୁଲର ମଶୁଆଳ ସୁରଭିରେ କମଳର ଦେହ ଓ ମନ ଉଭୟେ ପୁଲକତ ହୋଇଉଠିଲେ ।

ଖାଇସାର କମଳ କହିଲା –

ତୁମେ ଯାଅ ମୀନୁ । ଜଲ୍ଦି ସେ ମାତାଜୀଙ୍କର ଯଥା ବ୍ୟବସ୍ଥା କରିଦେଇ ଆସ । ମୁଁ ତୁମ ଖଟ ଉପରେ ବସି ଆଜର ଖବର କାଗଜଟା ପଢିନିଏ ।

ଡା: ମନୋରମା ଡ୍ରଇଁ ରୁମ୍‌କୁ ଗଲେ । ମାତାଜୀ ସେତିକିବେଳ ଅଧୀର ପ୍ରତୀକ୍ଷାରେ ବସି ରହିଛନ୍ତି । ଆଉ ମୁହଁରେ ତାଙ୍କର ଅତି ଅସ୍ଥିର ଆଉ ଅଶ୍ବସ୍ତିକର ଯନ୍ତ୍ରଣାର ଭାବ ଫୁଟିଉଠୁଛି ।

ଆଚ୍ଛା । ହାଁ ଏଥର କୁହନ୍ତୁ—ଆପଣଙ୍କର କଥା ସଂକ୍ଷେପରେ କହନ୍ତୁ କନ୍ତୁ–

ମାତାଜୀ କଣ୍ଟ ସମସ୍ତ କୁନ୍ଥାଇଲା ଭଳି ହୋଇ କହିଲେ –

ବିଶେଷ ଆଉ କ'ଣ କହିବି ମା ? ରାତି ବି ହେଲାଣି ବହୁତ । ତୁମମାନଙ୍କର ଅସୁବିଧା ହେବ । ସଂସାରୀ ମଣିଷ ତୁମେମାନେ । ସଂସାରର ସୁଖ ନେଇ ବ୍ୟସ୍ତ ହୋଇଥାଅ । ସେଇ ଭଲ ମା—ସେଇ ବରଂ ଭଲ—

ପୁଣି ଟିକଏ କୁନ୍ଥାଇଲେ ମାତାଜୀ । ତାପରେ କହିଲେ—ସଂସାରକୁ ଛାଡ଼ି ବ୍ରଜଗୋପାଳଙ୍କୁ ଧରିଲି । ଆଉ ବ୍ରଜଗୋପାଳ ମୋ ସଙ୍ଗେ ଏ ବୟସରେ ଏମିତି ରସିକତା କଲେ ! !

ମନୋରମା ଟେବୁଲ ଉପରୁ "ଫେମିନା" ପତ୍ରିକାଟି ଆଣି ପୃଷ୍ଠା ଓଲଟାଇ ଓଲଟାଇ ପଚାରିଲେ—

କ'ଣ କଲେ ବ୍ରଜଗୋପାଳ ?

ସେ କଥା ଆଉ କହିବାକୁ ଅଛି ? ଯେତେବେଳେ ଦେହରେ ମୋର ରୂପର ନିଆଁ ଜଳୁଥିଲା—ଯୌବନର ଜ୍ୱାଳାରେ ଯେତେବେଳେ ମୁଁ ପୋଡ଼ି ମରୁଥିଲି—ସେତେବେଳେ କେତେ ବ୍ୟାକୁଳତାରେ ମୁଁ ତାକୁ ଡାକଚି ! ! ଆରେ ମୋର ବ୍ରଜଗୋପାଳ ! ଆରେ ଜୀବନ-ସର୍ବସ୍ୱ ! ମୋର ଯୌବନ-ସମୁଦ୍ରର କଣ୍ଡାରୀ । ଆରେ ତୁଇ କେଉଁଠି ଅଛୁ ?

ଆସ—ଆସ ମୋର ହୃଦ-ବୃନ୍ଦାବନେ – ହୃଦ-କୁଞ୍ଜବନେ—ବଂଶୀ ବଜାଇବୁ ଆସ । ଆସ ମୋର ଯୌବନ-ଯମୁନାରେ କେଳି କରିବୁ ଆସ ଆସ ମୋର ଦେହ-କଦମ୍ବ ବେମଞ୍ଜ ଜଗ କବୁ ଆସ । ଆସରେ ନିଠୁର ଚଞ୍ଚଳ ପିଲା । ଆସ ମୋର ମନ-ବୃନ୍ଦାବନେ – ରାସ କରିବୁ ଆସ । କିନ୍ତୁ—କିନ୍ତୁ—ସେ ଆସିଲା ନାହିଁ ।

ମୋର ସକଳ ଧର୍ମ ମିଥ୍ୟା ହେଲା—ମୋର ସକଳ କର୍ମ ବୃଥାରେ ଗଲା – ମୋର ସମସ୍ତ ଡାକ ମହାଶୂନ୍ୟରେ ମିଳେଇଗଲା । ସେ ନିଠୁର ସେତେବେଳେ ଆସିଲା ନାହିଁ । ମୁଁ ତାକୁ କେତେ ଭର୍ତ୍ସନା ବା ନକଲି !! ଅରେ ନାରୀ-ମନଚୋର । ଆରେ ନାରୀ-ପ୍ରାଣଚୋର । ଅରେ ଡକାୟତ । ନାରୀର ମନ ନେଇ—ଅବଳାନାରୀର ପ୍ରାଣ ନେଇ ଏମିତି ଖେଳ ଖେଳନାରେ ।—ତୋର ମଙ୍ଗଳ ହେବ ନାହିଁ । ମୋର ଜାତି ଖାଇଛୁ—କୁଳ ଖାଇଛୁ—ମୋର ଇହକାଳ ଖାଇଛୁ—ମୋତେ ଯଦି ଖାଇବୁ ତ ଖା—କିନ୍ତୁ ଆଉ ମୋତେ ଏପରି ବିରହବ୍ୟଥାରେ ନେଇ ମାରନାରେ । ଅରେ ନିଠୁର ହରି ! ଷୋଳସହସ୍ର ଗୋପିନୀର ସର୍ବସ୍ୱ ଲୁଣ୍ଠନ କରିଛୁ – ପୂତନା ନାରୀର ପ୍ରାଣ ଶୋଷିଛୁ – ବନର ଦାବାନଳ ଗିଳି ପାର କରିଛୁ – ସେଥିରେ କି ତୋ ମନର ଓଟ୍ରମାନା ମେଣ୍ଟିଲା ନାହିଁ ? ଖାଅରେ ନିଆଁ ଟେଳା – ମୋର ଏଇ ପୋଡ଼ା ପ୍ରାଣଟାକୁ ଖାଇବୁ ଯଦି ନେ ଖାଅ !!......

କିନ୍ତୁ ମା ! !

ମାତାଜୀ ଫେର୍ କିଛି ସମୟ କୁନ୍ଥାଇଲେ । କିନ୍ତୁ ମା ! ସେତେବେଳେ ମୋର ଏଇ କାତର ମିନତିରେ ତାର ପାଷାଣ ହୃଦୟ ତରଳିତ ହେଲା ନାହିଁ । ସେତେବେଳେ ମୋର ସବୁ ଥିଲା । ସେ ନିଠୁର କିନ୍ତୁ ସେତେବେଳେ ମୋର ପାଖର ଗୁଇ ପର୍ଯ୍ୟନ୍ତ ବି ମାଡ଼ିଲା ନାହିଁ ।

କିନ୍ତୁ ବର୍ତ୍ତମାନ···ମୋର ଏଇ ବୟସେ·

ମାତାଜୀ ଫେର୍ ଟିକେ କୁନ୍ଥାଇଲେ । ତଉକା ଉପରେ ଟିକଏ ଏକଡ଼ ସେକଡ଼ ହେଲେ । ଉଃଃଃ—ଆଃଃଃ—ଓହୋ ।

ଡା: ମନୋରମାଙ୍କ ହୃଦୟରେ ରସଳାଳସାର ପ୍ଲାବନ । ତାଙ୍କର ଆଖି ଦୁଇଟିରେ ଏକ ଉଦ୍ଗ୍ରୀବ ରସକୌତୁକ ଉଜ୍ଜ୍ୱଳ ହୋଇଉଠୁଛି ସେ ଅଧୀର ଉତ୍କଣ୍ଠାରେ ପଚାରିଲେ –

ଓହୋ ! କ'ଣ ହେଲା କୁହନା !

ସେ କଥା ଆଜ କେମିତି କହିପାରିବ ମା ? କହିବାକୁ ଇ ଲାଜ ଲାଗୁଛି ମତେ । ବ୍ରଜଗୋପାଳ ଲାଗି ନାରୀର ଭୂଷଣ ଲଜ୍ଜା ଛୁଡ଼ିଛି । କିନ୍ତୁ ତଥାପି ସେ କଥା କହିବାକୁ ପାଟି ଖୋଲୁ ନାହିଁ ମୋର । ତୁମକୁ ବି ଶୁଣିବାକୁ ଲାଜ ଲାଗିବ ମା ।

ନାଇଁ – ନାଇଁ— ଆମେ ଡାକ୍ତର । ଆମର ଗୋଟେ ଲଜ୍ଜା କ'ଣ ? କୁହ— ପ୍ରକୃତ ଘଟଣାଟା କ'ଣ କୁହନା ଆଗ ।

ସେତେବେଳେ ଅସିଲା ନାହିଁ । ବର୍ତ୍ତମାନ କିନ୍ତୁ ମୋତେ ଏଇ ଫାନ୍ଦରେ ପକାଇ ଦେଇଛି । ମୋ ସାଙ୍ଗରେ ଏଇ ବୟସରେ ପୁଣି ଏମିତି ପରିହାସ ଲଗେଇ ଦେଇଛି । ନଟନାଗର ତ ' ! କେତେ ନଟ ଜାଣେ ! କେତେ ରସ ଜାଣେ ! ତୁମେ ତ ପାଠ ଶାଠ ପଢ଼ିଛ ମା ! ପୁଣି ସାଧୁ ବୈଷ୍ଣବ ଆଦରେ ତୁମର ବି ଯେମିତି ଶ୍ରଦ୍ଧାଭକ୍ତି ଥାଏ—ତା ବି ମୋତେ ଜଣା । ତୁମେ କ'ଣ ଜାଣି ନାହଁ ? ସେ କି କମ୍ ନଟ ଜାଣେ କମ୍ ସାଦୁ ଜାଣେ !'! ଲୀଳାନିଧି ତ ! ନିଜେ ନିଜେ ଲୀଳା କରି ନିଜ ଲୀଳାର ସ୍ୱାଦୁ ନିଜେ ପାଏ । ଲୀଳାନିଧିର ଲୀଳାତତ୍ତ୍ୱ କିଏ ବୁଝିପାରେ ? କାହିଁ ଏତେ ଶକ୍ତି ?

ସେତେବେଳେ ତାର ମନ ନ ଥିଲା । ଆଜ କାହାକୁ ନେଇ ଲୀଳା କରୁଥିଲା । ଏତେ ଦିନେ ମନେ ପଡ଼ିଲା । •••ମୋତେ ନେଇ•••ତା ଆଜ କହିପାରିବ ନାହିଁ ମା••• ! !

କହନ୍ତୁ ନା--ଓଃ ଲଜ୍ଜା କ'ଣ । କହନ୍ତୁ ।

••••••ସରମର ସମୁଦ୍ର ଭିତରକୁ ଠେଲିଦେଇ – ପୁଣି କୁଆଡ଼େ ଗୁଳିଗଲା ନିଠୁର । ବର୍ତ୍ତମାନ ମୁଁ କଅଣ କରିବି ? ।

ମାତାଜୀଙ୍କର କଣ୍ଠ ଆର୍ଦ୍ର ହୋଇ ଉଠିଲା । ଆଉ ତାଙ୍କର ସେଇ ସରଳ ଶିଶୁସୁଲଭ ବିସ୍ମୃତ ଆକ୍ଷି ଦୁଇଟି ଅଶ୍ରୁସଜଳ ହୋଇଉଠିଲା ।

ମନୋରମା କଣ୍ଠରେ କଷ୍ଟର୍ ଉଦାର ସମ୍ବେଦନାଶୀଳ ଉତ୍ତାପ ଦେଇ ଧୀରସ୍ୱରରେ ଅଶ୍ରୁସ୍ତ କଲବଲ କହିଲେ –

କହନ୍ତୁ ନା ପଟେଶ୍ବାର – କ'ଣ ହେଲା ? ମୁଁ ବୁଝିବ ସବୁ କଥା । ନିଶ୍ଚିନ୍ତରେ କୁହନ୍ତୁ ।

ମାତାଜୀ ସେହିଭଳି ଅଶ୍ରୁପ୍ଲାବିତ ଆଖିରେ ଚାହିଁ ଗଦଗଦ କଣ୍ଠରେ ପୁଣି କହିଲେ –

ତା ହେଲେ ଶୁଣ ମା । – ସମୁଦ୍ର ଭିତରେ ଶଯ୍ୟା ପାତିଛୁ – ଆଉ ଶିଶିର ବୃଷ୍ଟିକି ବା ଭୟ କାହିଁକି ? ମୂଳରୁ ତା ହେଲେ କହେଁ ମା…

ସେଦିନ – ସେଦିନ ଦୋଳପୂର୍ଣ୍ଣିମା । ବ୍ରଜଗୋପାଳ ହୋରି – ଖେଳର ଦିନ । ଦିନଯାକ ରଙ୍ଗ ଖେଳରେ ମାତାମାତି ଚାଲିଲା – କେତେ ଜାଗାରେ – କେତେ ରଙ୍ଗର ଲୀଳା କଲା ସେଦିନ ଗୋପାଳର ଛେଲେ । ବିମାନରେ ବସି କେତେ ଦ୍ୱାର ଘୂରିଲା…

ସେହିଦିନ ରାତିରେ – ମଠ ବାରଣ୍ଡାରେ ଶୋଇ ଆଖି ମେଲି ବ୍ରଜଗୋପାଳ ଲୀଳା ସ୍ମରଣ କରୁଥିଲି । ବାହାରେ ଏତେ ଜ୍ୟୋସ୍ନା । ମୃଦୁମନ୍ଦ ମଳୟ ବହି ଆସୁଥାଏ – ଅଦୂରରେ ମଲ୍ଲିକା, ବକୁଳ ଆଉ ନାଗେଶ୍ୱରର ବନ ଦେଇ ଫୁଲର ସୌରଭ ଲୁଟିକରି । ଫୁଲର ଏଇ ମଧୁ ସୌରଭ ମୋର ମନଟାକୁ ଉତଲା କରିଦେଲା । ବାହାରେ ଏତେ ଜ୍ୟୋସ୍ନା – ଏତେ ମଳୟ – ଏତେ ଫୁଲ – ଏତେ ସୁବାସ । ଏଇଭଳି ମଧୁ ପୂର୍ଣ୍ଣିମାର ରାତିରେ ଶ୍ରୀ ଶ୍ରୀ ବ୍ରଜଗୋପାଳ ଶ୍ରୀ ବୃନ୍ଦାବନରେ ଷୋଳସହ ଗୋପବଧୂଙ୍କୁ ନେଇ ବସନ୍ତ ରାସ କରିଥିଲେ ।

ମୋର ଉଦ୍ଧାରକର୍ତ୍ତା ଗୁରୁଦେବ ଲଳିତା ବାବାଙ୍କର ଜଣେ ତରୁଣ ଶିଷ୍ୟପ୍ରବର – ନାଁ ତାଙ୍କର ଆନନ୍ଦ ବାବା – ଖୁବ୍ ମଧୁର ଗଳା ଭରି ଚମତ୍କାର ରାସକୀର୍ତ୍ତନ ଗାଇପାରନ୍ତି ସେ – ସେ କୀର୍ତ୍ତନ ଶୁଣିଲେ ଥୁଣ୍ଟା ଗଛରେ ପତ୍ର କଅଁଳେ – ଫୁଲ ଫୁଟେ – ପଥର ତରଳି ବହିଯାଏ ପାଣି ହୋଇ – ଆଉ ପାଣି ହୋଇଯାଏ ପଥର – ବଣର ପଶୁପକ୍ଷୀ ବି ଚକିତ ହୋଇ କାନ ଡେରନ୍ତି । ଏଭଳି କୀର୍ତ୍ତନ ସୁରମୂର୍ଚ୍ଛନାରେ ଅବଳା ନାରୀ ମାନେ କ ଧୃତି ଧରି ରହିପାରେ ? ପ୍ରତିଦିନ ସନ୍ଧ୍ୟାରେ ସେ କୀର୍ତ୍ତନ କରନ୍ତି – ଝରଝର ହୋଇ ଝରିପଡୁଥାଏ ତାଙ୍କର ଆଖିରୁ ଅଶ୍ରୁର ଧାରା

ସେଇଁମାନେ ସେ କୀର୍ତ୍ତନ ଶୁଣନ୍ତୁ, ସମସ୍ତେ କାନ୍ଦନ୍ତି । ମୁଁ ବି ସମ୍ଭାଳି ପାରେନା ମା । ମୋର ବି ଛାତି ଫାଟାଇ କୋହ ଉଠେ—ଆଖି ଫାଟାଇ ଝରିଯାଏ ଲୁହର ଝରଣା ।

ସେଦିନ ସନ୍ଧ୍ୟାରେ ବି ଆନନ୍ଦ ବାବା କୀର୍ତ୍ତନ ଗାଉଥିଲେ । ବ୍ରଜଗୋପାଳର ଏଇ ବସନ୍ତରାସଲୀଳାର ଅନବଦ୍ୟମୟ ମାଧୁର୍ଯ୍ୟ ଫୁଟି ଉଠିଥିଲା ତାଙ୍କର କଣ୍ଠର ଲହର ଭିତରେ । ସବୁଦିନ ତାଙ୍କର କୀର୍ତ୍ତନ ସଙ୍ଗେ ମୁଁ ପାଳି ଧରୁଥିଲି । ସେଦିନ ବି ତାଙ୍କର ଗଳା ସଙ୍ଗେ ଗଳା ମିଶାଇ—ସ୍ୱର ସଙ୍ଗେ ସ୍ୱର ମିଳାଇ ମୁଁ ତନ୍ମୟ ହୋଇ କୀର୍ତ୍ତନ ଗାଉଥାଏ । ଗୋପୀମାନଙ୍କୁ ଶୀଘ୍ର ଦିନରେ ଆସିବି ବୋଲି କହି କୃଷ୍ଣ ମଥୁରାକୁ ଚାଲିଗଲେ—ଆଉ ଆସିଲେ ନାହିଁ—ଦିନ ଦିନ ହୋଇ ମାସେ ଗଲା—ମାସ ମାସ ହୋଇ ବର୍ଷେ ବିତିଲା—ମହାଭାବମୟୀ ପ୍ରେମିକା-ଶିରୋମଣି ଶ୍ରୀ ରାଧା ବିରହବିଚ୍ଛେଦରେ ଆକୁଳ ହୋଇ ଭୂଇଁ ଉପରେ ଗଡ଼ୁଥାନ୍ତି—ସଖୀ ଲଳିତା ତାଙ୍କୁ ବୁଝାଉଥାନ୍ତି—ସଖୀ ! କାହିଁ ଏତେ ଆତୁର ହେଉଛ ? ଆସିବେ ଗୋ—ପ୍ରାଣପ୍ରିୟ ନିଶ୍ଚେ ଆସିବେ—ମାତ୍ର ଶ୍ରୀରାଧା ଦୁଃଖ, ବେଦନା ଆଉ କ୍ଷୋଭରେ ଉନ୍ମତ୍ତ ହୋଇ ଗାଇ ଉଠିଲେ—

କେ କହ ଆଓବ ମାଧାଇ ! !
ବିରହ ପୟୋଧି ପାର କିୟେ ପାଓବ,
ମଝୁ ମନେ ନହି ପତିଆଇ !
ଏଖନ ତଖନ କରି ଦିବସ ଗମାଓଲି
ଦିବସ ଦିବସ କରି ମାସ
ମାସ ମାସ କରି ବରଷ ଗମାଓଲି
ଛୋଡ଼ଲୁଁ ଜୀବନକ ଆଶ ।

ରାଧାର ଏହି ଦୁଃଖରେ ମୋର ବି ଛାତି କରତ ହୋଇଗଲା ମା ! ଆନନ୍ଦ ବାବା ଗାଉ ଗାଉ ଭୂଇଁ ଉପରେ ଭାବାବେଶରେ କମ୍ପିତ ହୋଇ ପଡ଼ିଲେ—ଆଉ କାନ୍ଦି କାନ୍ଦି ଗଡ଼ି ଗଡ଼ି ସେଇ ପଦକ ଇ ଗାଇଲାଗିଲେ କେତେ ସୁରରେ—କେତେ ଭଙ୍ଗୀରେ—ଆଉ ମୂର୍ଚ୍ଛନାରେ । ସତେ କି ଆନନ୍ଦ ବାବା ଇ ଗୋକୁଳର ସେଇ ମହାଭାବମୟୀ ରାଧା ! ମୁଁ କି ଆଉ ନିଜକୁ ସମ୍ଭାଳି ପାରିଲି ମା । ରାଧାର ଅନ୍ତରର

ସେହି ଶିଶୁର ଅଭିମାନ ସଙ୍ଗେ ମୋର ଅନ୍ତରର ଅଭିମାନ ମିଶି ଏକାକାର ହୋଇଗଲା—ସଙ୍ଗେ ସଙ୍ଗେ ନିଷ୍ଠୁର ବ୍ରଜଗୋପାଳ ପ୍ରତି ମୋର ମନଟା ବି ତିକ୍ତ ଅଭିମାନରେ ଭରିଉଠିଲା । ଆରେ ନିଠୁର ! ସବୁରି ମନର ବୃନ୍ଦାବନରେ ଫୁଲ ଫୁଟାଇଲୁ । ମୋର ମନର ବୃନ୍ଦାବନରେ ବି କେତେ ଫୁଲ ଫୁଟିଲା ତୋର କରୁଣାରେ । ଜ୍ୟୋସ୍ନାରେ ଭ୍ରମର ହୋଇ ତୁ କେତେ ଫୁଲରୁ ମଧୁ ଲୁଣ୍ଠନ କଲୁ । କିନ୍ତୁ ମୋର ଉଦ୍ୟାନର ଫୁଲସବୁ ତୋର କି ଦୋଷ କରିଥିଲେ ରେ ? ସବୁ ଫୁଲ ମୋର ଏମିତି ଧୂଳି ଉପରେ ଖସିପଡ଼ିବେ ନିଷ୍ଫଳ ବ୍ୟର୍ଥତାର ଅଭିମାନରେ ? ତୋର ଦାରୁଣ ପ୍ରବଂଚନାରେ ଉଷ୍ଣ ନିଶ୍ୱାସର ଝଞ୍ଜାରେ ସବୁ ଫୁଲ ମୋର ଏମିତି କରୁଣ ଭାବରେ ଶୁଖି ଜଳିଯିବେ ? ଖାଲି ଧୂଳି ଆଉ ଝରାଫୁଲର ବ୍ୟର୍ଥତାରେ ଧୂସରିତ ହୋଇଯିବ ମୋର ମନର ଏଇ ବୃନ୍ଦାବନ ? ଆରେ ନିଠୁର ! ଆରେ ଗୋପାଳ ରେ ! କଅଣ ତୁ ମୋର କରିଦେଲୁ ? ଜୀବନଟା ସାରା ମୁଁ ତୋତେ କ'ଣ ବା ନ ଦେଇଦେଲି ? ଆଉ କଅଣ ବା ପାଇଲି ମୁଁ ? ତୁ ମତେ କ'ଣ ଦେଲୁରେ ପ୍ରବଂଚକ ? ଶଠ !

ଆଉ କହିପାରିଲେ ନାହିଁ ମାତାଜୀ । ତାଙ୍କର ଆଖି ଓ କଣ୍ଠ ବାଷ୍ପାଚ୍ଛନ୍ନ ହୋଇଉଠିଲା । ମନୋରମା ସ୍ୱପ୍ନ ଦେଖିଲା ଭଳି ନିଃସ୍ତବ୍ଧ ଚିତ୍ତରେ ସବୁ ଶୁଣୁଥିଲେ । ମାତାଜୀଟିର ଏଇ ସରଳ ସହଜ ବିଶ୍ୱାସର ଆବେଗପୂର୍ଣ୍ଣ କଥାସ୍ରୋତରେ ସେ ନିଜକୁ ଭସାଇ ଦେଇଥିଲେ । ଆଉ ତାଙ୍କର ଆଖିରେ ମଧ୍ୟ ଏକ ସହଜ ବିଶ୍ୱାସର ଅଶ୍ରୁ ବାଷ୍ପାୟିତ ହୋଇ ଉଠୁଥିଲା । ଆଉ ଦେହରେ ଏକ ଅପୂର୍ବ ରୋମାଞ୍ଚ ଓ ଶିହରଣରେ ସେ ଥରି ଉଠୁଥିଲେ ! ଏଇ ଅବୋଧ ଅଭିମାନର ସ୍ୱର ଭିତରେ ଯେମିତି ପ୍ରତିଧ୍ୱନିତ ହୋଇଉଠୁଛି ତାଙ୍କର ହୃଦୟର ଏକ ସଂଗୁପ୍ତ ବେଦନାର କ୍ଷୁବ୍ଧ ଅବୋଧ ଓ କାରଣହୀନ କାରୁଣ୍ୟର ଧ୍ୱନି !! ଛଳଛଳ ଆଖିରେ ସେ କହିଲେ—

ହାଁ—ତା'ପରେ ? ତା'ପରେ କ'ଣ ହେଲା ?

ଆଖିରୁ ଲୁହ ପୋଛି – କଣ୍ଠ ପରିଷ୍କାର କରି ଓ ପୁଣି କିଛି ସମୟ କୁନ୍ଥାଇ—ଏକଡ଼ ସେକଡ଼ ହୋଇ ମାତାଜୀଟି କହିଲେ –

କୀର୍ତ୍ତନମଣ୍ଡଳୀରୁ ଉଠି ଆସି – ମୋ ଘର ବାରଣ୍ଡାରେ ଶୋଇ ପଡ଼ିଲି । ଆଷାଢ଼ିକ କ'ଣ ଆଉ ନବ ଆନନ୍ଦ ? ବାହାରେ ପୂର୍ଣ୍ଣିମାର ଗନ୍ଧ ଅଗଣିତ ଅମୃତ ଝରଣର ଧାରାରେ ବହିଯାଉଛି, ମନ୍ଦିର ଉଦ୍ୟାନରେ ଚମ୍ପା, ମଲ୍ଲିକା, ବକୁଳ ଆଉ ନାଗକେଶର ଫୁଲ ଫୁଟି ମେଲା – ସେଇମାନଙ୍କର ମଥା ଦୋହଲାଇ ସୁବାସ ଲୁଟିଆଣି ମନ୍ଦିରେ ଦେଇ ବହିଯାଉଥାଏ ମୃଦୁମନ୍ଦ ମଳୟ । ମୁଁ ସେମିତି କାନ୍ଦି କାନ୍ଦି ଆଖିର ଜଳରେ ମା ଧରଣୀକୁ ଅର୍ଘ୍ୟ କରୁଥାଏ । ବାହାରେ ଏତେ ଜ୍ୟୋସ୍ନା – ଏତେ ମଳୟ—ଏତେ ଫୁଲ—ଏତେ ସୌରଭ; ମାତ୍ର ମୋର ମନ ଭିତରେ ଆନନ୍ଦ ବାବାଙ୍କର ସେହି କୀର୍ତ୍ତନର ଶେଷ ପଦକ ଫୁଟି ଉଠୁଥାଏ ।

ଏଖନ ତଖନ କରି ଦିବସ ଗମାଓଲି
ଦିବସ ଦିବସ କରି ମାସ
ମାସ ମାସ କରି ବରଷ ଗମାଓଲି
ଛୋଁଡ଼ଲୁ ଜୀବନକୀ ଆଶ ।

ମୋ ଭିତରେ ମୋର ଅନ୍ତରାତ୍ମା ଇମିତି କ୍ରନ୍ଦନ କରୁଥାଏ ମା ! ରୂପ ଗଲା – ଯୌବନ ଗଲା – ଶେଷକୁ ଏଇ ଜୀବନଟା ବି ଏମିତି ସରିଯିବ – ନିଷ୍ଠୁର ବ୍ରଜଗୋପାଳ ଆଉ ମତେ ଧରା ଦେଲା ନାହିଁ – ଧରା ଦେବ ନାହିଁ । ଶୂନ୍ୟ ପଡ଼ିଲା ମୋର ଏଇ ମନର ବୃନ୍ଦାବନ । ଚିରଦିନ ଲାଗି ବ୍ୟର୍ଥ ହେଲା ମୋର ଏହି ଦେହ-ଦେଉଳର ପ୍ରତୀକ୍ଷା – ଯୌବନର ରତ୍ନ ବେଦୀ ଉପରେ ଆଉ ମୋର ମନର ଦେବତା ଅର୍ଚ୍ଚିତ ହେବାକୁ ଆସିଲେ ନାହିଁ – ଆସିବେ ବି ନାହିଁ ! !

କାନ୍ଦି କାନ୍ଦି ଅକ୍ଷିରୁ ଲୁହ ବୁହାଇ ବୁହାଇ କେତେବେଳେ ଜାଣିନି – ଅକ୍ଷି ଦୁଇଟି ମୋର ଘୁମ ନିଦରେ ବୁଜି ହୋଇଆସିଲା । ମୁଁ ଗହନ ନିଦରେ ଅଚେତନ ହୋଇପଡ଼ିଲି ।

ତା'ପରେ – ତା'ପରେ – ତା'ପରେ ମା, କେମିତି କହିବି ମୁଁ ତାପରେ କ'ଣ ହେଲା ? ?

ଡା: ମନୋରମା ଅଧୀର ହୋଇପଡ଼ିଲେ । ସବୁ ଜାଣି ମଧ୍ୟ – ବୁଝି ମଧ୍ୟ – ପ୍ରବଳ ଉତ୍କଣ୍ଠାରେ ସେ ଚଞ୍ଚଳ ହୋଇପଡ଼ିଲେ ।

କହନ୍ତୁ ନା ! ! ହଁ – କହନ୍ତୁ, – ତା'ପରେ ?

ମାତାଜୀ ଉତ୍ତେଜିତ ହୋଇ କହୁ କହୁ ହାଫାସି ଯାଉଥାନ୍ତି । ହଠାତ୍ କି ଏକ ତୀବ୍ରବେଦନାରେ ସେ ଚିତ୍କାର କରିଉଠିଲେ । ତାପରେ କମ୍ବଳ ଭିତରେ ହାତ ପୂରାଇ ସେ ନିଜର ପେଟରେ ହାତ ଦେଇ କିଛି ସମୟ ଅଧୀର ଭାବରେ "ଉହୁ", "ଆହା" ହେଲେ । ତା'ପରେ ପୁଣି ନିଶ୍ଚଳ ହୋଇ ଉଠି ସେ ପୁଣି ଆରମ୍ଭ କଲେ –

ତା'ପରେ – ତା'ପରେ ମା, ଗଭୀର ନିଦ୍ରାରେ ଯେତେବେଳେ ମୁଁ ଅଚେତନ—ମୋର ପାର୍ଥିବ ଚେତନା ଯେତେବେଳେ ସଂପୂର୍ଣ୍ଣ ଅବଲୁପ୍ତ —ଯେତେବେଳେ ସେହି ଭୂସ୍ୱପ୍ନଲୋକରେ ମୋର ଆତ୍ମା-ବଧୂ ଅଭିସାରିକା ହୋଇ ଘୂରିବୁଲୁଛି—ସେତେବେଳେ ସେଇ ସ୍ୱର୍ଗୀୟ ଚେତନାଲୋକ—ସେ ମୋତେ ଧରି ପକାଇଲେ···

କିଏ ? ? ?

ମନୋରମାଙ୍କ ଦେହ ଓ ମନରେ ଏକ ଅପୂର୍ବ ରୋମାଞ୍ଚ ଶିହରିତ ହୋଇଉଠିଲା ।

କିଏ ଆଉ ହେବ ମା ? ସେଇ—ସେଇ ନିଖିଳ ରସାମୃତ ସିନ୍ଧୁ – ନାଗରଚତୁରଶେଖର—ଆନନ୍ଦ ଘନମୂର୍ତ୍ତି—ନିଠୁର ! ! ହରି – ମୋର ଚିରନ୍ତନର ସ୍ୱପ୍ନର ବ୍ରଜଗୋପାଳ । ମୋତେ ତାଙ୍କର ଆଲିଙ୍ଗନରେ ଭିଡ଼ିଧରି ସେ ମୋର ସର୍ବାଙ୍ଗରେ ଜଡ଼େଇଗଲେ । ମୁଁ ସେତେବେଳେ କି ଏକ ଅଲୌକିକ ଲୋକୋତ୍ତର ସ୍ୱର୍ଗୀୟସୁଖାବେଶ ଶକ୍ତିର ଅନବଚ୍ଛିନ୍ନ ମହାନନ୍ଦର ସମୁଦ୍ର ଭିତରେ ପଡ଼ିଯାଇଥାଏ । ମୋର ସର୍ବାଙ୍ଗରେ ମହାନନ୍ଦର ପୁଲକ – ଆଖିରେ ମହାନନ୍ଦର ଅଶ୍ରୁ – ଲୋମ କୂପେ କୂପେ ପ୍ରଳୟାନନ୍ଦରେ ମୁଁ ପରମାନନ୍ଦଙ୍କ ସଙ୍ଗେ ମିଳିତ ହୋଇ ମହାନନ୍ଦରେ ଚେତନା ହରାଇ ଦେଇଥାଏଁ । ମୁଁ ଜାଣିପାରୁ ନ ଥାଏଁ – ସେ ମୋଠାରୁ ଆନନ୍ଦ ପାଉଛନ୍ତି କି ମୁଁ ତାଙ୍କଠାରୁ ଆନନ୍ଦ ପାଉଛି !

କେତେ ସମୟ ସେ ମୋତେ ତାଙ୍କର ଆଲିଙ୍ଗନ ଭିତରେ ଧରି ରଖିଲେ ମୁଁ ଜାଣିନି । ଯେତେବେଳେ ହଠାତ୍ ମୋର ନିଦ ଭାଙ୍ଗିଗଲା— ସମ୍ପୂର୍ଣ୍ଣ ଭାବରେ ମୋର ପାର୍ଥିବ ଚେତନା ଫେରିଆସିଲା— ସେତେବେଳେ ଆନନ୍ଦ ଅବଶ୍ୱାସେ ଆଖି ମେଲି ଚାହିଁଲି—କେହି କୁଆଡ଼େ ନାହିଁ । ମଠରେ ସମସ୍ତେ ଯେ ଯେଉଁଠି ଶୋଇ ଯାଇଛନ୍ତି । ଆକାଶର

ସ୍ୱନ୍ଦ କେବଳ ବ୍ରଜଗୋପାଳର ପ୍ରେମରେ ପ୍ଲାବିତ ହୋଇ ବହିଯାଉଛି ଧରଣୀ ଉପରେ ଜ୍ୟୋତ୍ସ୍ନାର ଅଜସ୍ର ଧାରାରେ । ଆଉ ଆଖି ମେଲି ଚାହିଁଛନ୍ତି ଉଦ୍ୟାନର ଶତ ଶତ ଫୁଲ ।

ନିଦ୍ରାର ଜଡ଼ତା ପୂରାପୂରି କଟିଗଲା । ଚକିତ ହୋଇ ମୁଁ ଭାବିଲି — ଏ କ'ଣ ସତ୍ୟ ? ଏ କ'ଣ ସ୍ୱପ୍ନ ? ନିଜ ଦେହର ଗନ୍ଧ ନିଜେ ହିଁ ଆଘ୍ରାଣ କଲି । ଏ ଯେ କସ୍ତୁରୀ, ଚନ୍ଦନର ସୁବାସ । ଏ ଯେ ବନଫୁଲର ସୌରଭ ! ବନଫୁଲର ମାଳା ପିନ୍ଧି ବନବିହାରୀ ବ୍ରଜଗୋପାଳ ମୋର ଆସିଥିଲେ ମୋ ପାଖକୁ । ଏଥିରେ ଆଉ ସନ୍ଦେହ କ'ଣ ? ମୋର ଏଇ ଧୂଳିମାଟିର ଦେହ ଉପରେ ତାର ସେଇ ଦିବ୍ୟଦେହର ସୁବାସ ରଖି-ଯାଇଛି ସେ । ମୋର ସର୍ବାଙ୍ଗକୁ ନିଠେଇ ନାଠେଇ ଦେଖିଲି । ମୋର ସର୍ବାଙ୍ଗରେ ତାର ନଖ ଓ ଦଶନର ଆଘାତ ଜ୍ୱାଳା କରୁଥାଏ । ମନଟା ମୋର ଅସୀମ ତୃପ୍ତିରେ ଭରିଉଠିଲା । ଭାବିଲି—ଜୀବନ ମୋର ଧନ୍ୟ ହେଲା—ସାର୍ଥକ ହେଲା ମୋର ଧର୍ମ—ସଫଳ ହେଲା ଏତେ ଦିନେ ମୋର ଏଇ ବୈଷ୍ଣବୀ ତପସ୍ୟା !

ମନୋରମା ମନ୍ତ୍ରମୁଗ୍ଧ ହୋଇ ଶୁଣୁଥାନ୍ତି । ଦେହ ଟାଙ୍କୁରିତ — ମନ ପୁଲକିତ । ତାଙ୍କର ସଚେତନ ଶିକ୍ଷିତ ତର୍କପ୍ରବଣ ଦୃଢ଼ ଅଟଳ ସଂଶୟ ପାହାଡ଼ର ଶୃଙ୍ଗକୁ ଯେମିତି ପୁଞ୍ଜ ପୁଞ୍ଜ ବିଶ୍ୱାସର କୃଷ୍ଣମେଘ ଆବୃତ କରି ପକାଇଛନ୍ତି । ଆଜି ତାରି ପରିଣାମରେ ଯେମିତି ତାଙ୍କର ବାଷ୍ପାଚ୍ଛନ୍ନ ଆଖି ଦୁଇଟିରୁ ବହିଆସୁଛି ଅବାରିତ ଅବିରଳ ଝର ଝର ଲୁହର ଝରଣା । ମାତାଜୀ କଣ୍ଠ ସମସ୍ତ କୁନ୍ଥାଇ ସାରି ପୁନଶ୍ଚ କହିଲେ –

ପରଦିନ ପ୍ରଭାତରେ ଆନନ୍ଦ ବାବାଙ୍କୁ ମୋର ଏହି ସ୍ୱପ୍ନର ବୃତ୍ତାନ୍ତ ଜଣାଇଲି । ଆନନ୍ଦ ବାବା ଶୁଣିଲା ମାତ୍ରେ ହିଁ ଭାବବିଭୋର ହୋଇ ମୋ ଚିବୁକ ଧରି ନାଚିଉଠିଲେ । ଆଉ ସଙ୍ଗେ ସଙ୍ଗେ କହିଉଠିଲେ ଆନନ୍ଦ ବାବା –

ସାର୍ଥକ – ସାର୍ଥକ ହେଲା ତୋର ତପସ୍ୟା ହରିପ୍ରିୟା ! ଆନନ୍ଦ ଘନମୂର୍ତ୍ତି ବ୍ରଜଗୋପାଳର ଅନୁକମ୍ପା ଲାଭ କଲୁ – ଜୀବନ ତୋର ଧନ୍ୟ ହେଲା । ଆନନ୍ଦ – ଆନନ୍ଦ – ହରିପ୍ରିୟା ! ସଚ୍ଚିଦାନନ୍ଦର ରତିବଲ୍ଲଭ

ହେବାର ସୌଭାଗ୍ୟ ସଜ୍ଜନଙ୍କର ଜୀବନ ନାହିଁ । ସ୍ୱପ୍ନ ବୋଲି କ'ଣ କହୁଚୁ ଛୁ ? ଯେ ସ୍ୱପ୍ନ — ସେଇ ବାସ୍ତବ । ଯେ ବାସ୍ତବ — ସେଇ ସ୍ୱପ୍ନ । ଆନନ୍ଦ ଘନମୂର୍ତ୍ତିର ମିଳନ ଯେତେବେଳେ ସ୍ୱପ୍ନ ହୁଏ ବାସ୍ତବ — ଆଉ ବାସ୍ତବ ହୁଏ ସ୍ୱପ୍ନ — ଏଥର ସେଇ ଆନନ୍ଦ ସମୁଦ୍ରରେ ଝାମ୍ପ ଦେଉ ହରିପ୍ରିୟା ।

ମୋର ଆଖି ଲୁହରେ ଭରିଗଲା । ମୋର ଦେହରେ ଅପୂର୍ବ ଆନନ୍ଦର ରୋମାଞ୍ଚ କଣ୍ଟକିତ ହୋଇଉଠିଲା । ସତେ — ସତେ ମୁଁ ଏତେ ଭାଗ୍ୟବତୀ ? ସତେ କ'ଣ ମୁଁ ହରିବଲ୍ଲଭା ? ଆନନ୍ଦ ଆଉ ବେଦନାରେ କାତର ହୋଇ, ଉତ୍ଫୁଲ୍ଲ ହୋଇ ମୁଁ ଆନନ୍ଦ ବାବାଙ୍କୁ କୁଣ୍ଠାସ୍ୱର ଥରି ଥରି କହିଲି —

ଏ ଆନନ୍ଦର ସୌଭାଗ୍ୟ ମୋର ଚିରଦିନର ନା ଏଇ କ୍ଷଣିକର ଛଳନାରେ ମୁଁ ବଞ୍ଚିତ ହୋଇ ପୋଡ଼ିମରିବି ବାବା !

ଆନନ୍ଦ ବାବା ମୋର ଦୁଇ ହାତକୁ ଧରି ବିଭୋର ହୋଇ ନୃତ୍ୟ କରିଉଠିଲେ — କୀର୍ତ୍ତନର ସୁରରେ ସେ ନାଚି ନାଚି ଗାଇଲେ —

କି କହିବି ରେ ସଖି ! ଆନନ୍ଦ ଓର !
ଚିରଦିନ ମାଧବ — ମନ୍ଦିରେ ମୋହର !!

ମତେ ଧରି କାନ୍ଦି କାନ୍ଦି, ନାଚି ନାଚି ସେଦିନ ମୋତେ ଆନନ୍ଦ-ବାବା ପ୍ରତିଶ୍ରୁତି ଦେଲେ —

ବ୍ରଜଗୋପୀଙ୍କର ଏଇ କରୁଣା ଚିରଦିନ ଲାଗି । ତୋର ପ୍ରତିଟି ରାତିର ସ୍ୱପ୍ନ ଏଇ ଆନନ୍ଦର କରୁଣାରେ ସାର୍ଥକ ହୋଇ ଉଠିବ ଆଜିଠାରୁ ହରିପ୍ରିୟା ! ତୁ ନିଶ୍ଚିନ୍ତ ରହ ।

ସେଇ ଦିନଠାରୁ ମା — ବହୁ ବାର ବହୁ ଥର — ଆନନ୍ଦ ଘନମୂର୍ତ୍ତି ବ୍ରଜଗୋପୀଙ୍କର ରାସଲୀଳା ଅନୁଷ୍ଠିତ ହେଲା ମୋ ସଙ୍ଗରେ । ବହୁବାର — ସେଇ ଦିନଠାରୁ ଅସଂଖ୍ୟ ଥର ତା ସଙ୍ଗରେ ସ୍ୱପ୍ନରେ ମିଳିତ ହୋଇଛି — କେତେ ପୂର୍ଣ୍ଣିମାର ନିଶୀଥ ଜ୍ୟୋତ୍ସ୍ନାର ଅପରୂପ ବନ୍ୟାରେ — କେତେ ଶ୍ରାବଣର ମେଘମୁଖର ଝଞ୍ଜାକ୍ଷୁବ୍ଧ ଅନ୍ଧାର ରାତିର ଅନ୍ଧକାରରେ — କେତେ ଶୀତର ହିମ ଶୀତଳ ରାତିର ନିର୍ଜନ ଗଭୀରତାରେ — କେତେ ଦିନ ମୁଁ ଗଭୀର ନିଦ୍ରା-ଅଚେତନ — ସ୍ୱପ୍ନରେ ଶୁଣିଛି ମୁଁ ତାର ନୂପୁର ମଞ୍ଜିର ଧ୍ୱନି — ତାର ଆକୁଳ ପ୍ରାଣର ରସବଧୁର ବଂଶୀର ଡାକରେ ଉନ୍ମାଦନା

ହୋଇଛୁ । ଯାଇଛୁ ତା ନିକଟକୁ—ଆଜି—ଆଜି—ସେଇ ସ୍ୱର୍ଗୀୟ ଚେତନାଲୋକ—ସ୍ୱପ୍ନରେ ମିଳିତ ହୋଇଛୁ ତା ସଙ୍ଗରେ—ତାର ଦୃଢ଼ନିବଦ୍ଧ ଆଲିଙ୍ଗନ ଭିତରେ ଅଜି ମୋର ସମସ୍ତ ଜ୍ୱାଳା ଏକ ଅଖଣ୍ଡ ଆନନ୍ଦର ସ୍ପର୍ଶରେ ଜଳିଉଠୁଛି—

କନ୍ଦୁ—କନ୍ଦୁ ମା···

ମନୋରମା ଚମକି ଉଠିଲେ ।

କ'ଣ କନ୍ଦୁ ? କ'ଣ ହେଲା ? କନ୍ଦୁ ???

କନ୍ଦୁ—କନ୍ଦୁ ମା—ମୁଁ କି ସେତେବେଳେ ଜାଣିଥିଲି ଯେ···

ମାତାଜୀ ଫେର୍ ଅଟକିଯାଇ କୁନ୍ଥାଇଲେ—ଓଃ ! ! ଆଃ ! ! ଓହୋ ! ଗୋପାଳ ରେ ! ! !

ମନୋରମା ଅଧୀର ହୋଇ ପଚାରିଲେ—

ହଁ—କ'ଣ ହେଲା ? କ'ଣ ତୁମେ ଜାଣି ନ ଥିଲ ?

କନ୍ଦୁ—କନ୍ଦୁ ମା—କ'ଣ ସେତେବେଳେ ଜାଣିଥିଲି ଯେ—ଏ ବୟସରେ—ସେ ମୋ ସଙ୍ଗରେ ଇତର ଲୋକଙ୍କ ଭଳି ଏମିତି ନଗ୍ନ ଇୟାର୍କି କରିବ ? ଏ ରକମ—ଏତେଟା ତ କେଲେଙ୍କାରୀ ହେବ ବୋଲି ତ ମୁଁ ସେତେବେଳେ ଜାଣି ନ ଥିଲି ! ଓଃ ! ! !

ଫେର୍ ଥରେ ପେଟକୁ ଚିପି ଧରି କୁନ୍ଥାଇ ଲାଗିଲେ ମାତାଜୀ । ମନୋରମାଙ୍କର ପ୍ରତିଟି ସ୍ନାୟୁରେ ଯେମିତି ଏକ ନୂଆ ଜୀବନବୋଧର ନୂଆଁ ସଞ୍ଚର ଯାଇଛି । ସେ ଅସ୍ଥିର ହୋଇ ଉଠିଲେଣି । ତାଙ୍କର ଦେହ ଝିମ୍‌ଝିମ୍ ହୋଇ ଉଠିଲାଣି । ସବୁ ତାଙ୍କର କେମିତି ଗୋଳମାଳ ହୋଇଯାଉଛି । ବାହାରେ ଧାରା ଶ୍ରାବଣର ଏଇ ଆର୍ଦ୍ର ଶୀତଳ ଦୁର୍ଭେଦ୍ୟ ଅନ୍ଧକାର ଭିତରେ ଯେମିତି ଜୀବନର କ୍ଷୁଧିତ ପ୍ରେମ ଗର୍ଜି ଉଠୁଛି ! ! ଶୋଇବାଘରେ ତାଙ୍କର ଶୋଇବା ବିଛଣା ଉପରେ ବସି କମଳ ମିଶ୍ର ଖବର କାଗଜ ପଢ଼ୁଛି । ମନୋରମା ଥର ଥର କଣ୍ଠରେ କହିଲେ—

ବେଶ୍ ତ—ବେଶ୍ ହେଲା—ଠିକ୍ ଅଛି—କ'ଣ ? ବର୍ତ୍ତମାନ ତୁମର ଆଜି ଅସୁବିଧାଟା କ'ଣ ?

ମାତାଜୀ ଈଷତ୍ ଲଜ୍ଜିତ କଣ୍ଠରେ କୁନ୍ଥାଇ କୁନ୍ଥାଇ କହିଲେ—

ସେ କଥା ପୁଣି ପାଟିରେ ଖୋଲି କହିବାକୁ ହେବ ? ତୁମେ ଡାକ୍ତର ହୋଇ ରୋଗୀର ଚେହେରା ଦେଖି ବୁଝିପାରିବ ନାହିଁ ମା ? ସେଇ ଅଶରୀରୀ ପୁନର୍ବାର ରୂପ ନେଇଛି ମୋର ଗର୍ଭରେ ! ! ଅପ୍ରକଟ ପ୍ରକଟ ହେବାକୁ ବସିଛି । ଅରୂପ ଗ୍ରହଣ କରୁଛି ରୂପ ନେବାକୁ ।

ଲୀଳାନିଧି ତ ! ଲୀଳା ଲାଗି — ଅପ୍ରାକୃତ ପ୍ରେମର ପ୍ରଚାର ଲାଗି — ଆତ୍ମପରମାତ୍ମାରସୋଲ୍ଲାସର ଆଉ ଶୁଦ୍ଧ ରାଗାନୁଗା ଧର୍ମର ପ୍ରତିଷ୍ଠା ଲାଗି — ଆଉ ପୁନର୍ବାର ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରିବା ଲାଗି — ସେତ ବାରମ୍ବାର ଏଇ ମର୍ତ୍ତ୍ୟ ଭୂମିକୁ ଫେରିଆସେ ମର୍ତ୍ତ୍ୟ ଦେବକୀର ଗର୍ଭ ପଥ ଦେଇ ! ଏଥର କିନ୍ତୁ ମୋର ଗର୍ଭରେ ମୂର୍ତ୍ତି ପରିଗ୍ରହ କରିଛି ଦୁଷ୍ଟ ! କଅଣ କରିବି କହ ? ବର୍ତ୍ତମାନ — ମୋର ଏଇ ବୟସରେ ମୋତେ ଏଇ ଜଞ୍ଜାଳରେ ପକାଇଦେବାରେ ତାର ଆନନ୍ଦ । ହେଉ — ତାର ଇଚ୍ଛା ପୂର୍ଣ୍ଣ ହେଉ । ଇଚ୍ଛାମୟ ତ ! ! ଆଉ କରିବି କ'ଣ କହ ? ଭାବିଲି — ତା ଲାଗି ଯେତେବେଳେ ଥରେ ଲାଜସରମ ଛାଡିଦେଇଛି — ଆଉ ଯା ହବାର ହେଇଯାଉ । ବ୍ୟସ୍ତ ହୋଇ ଆନନ୍ଦ ବାବାକୁ କହିଲି ସବୁ କଥା ।

ଆନନ୍ଦ ବାବା ସବୁ ଶୁଣି କହିଲେ —

ଆରେ ମୂଢ଼ା ! ବ୍ରଜଗୋପାଳର ପରମ ଦୁର୍ଲ୍ଲଭ ଅନୁଗ୍ରହ ଲାଭ କରି ଧନ୍ୟ ହେଲୁ । ସେଇ ଅଶରୀର ମୂର୍ତ୍ତି ପରିଗ୍ରହ କରୁଛି ତୋର ଗର୍ଭରେ । ଲୀଳାନିଧି ଏଥର ଧରାରେ ପ୍ରକଟିତ ହୋଇ ପ୍ରକଟଲୀଳା କରିବ । ତୁ ଚାଲିଯା ଏ ସ୍ଥାନ ଛାଡ଼ି ପବିତ୍ର ଉତ୍କଳ ଦେଶେ — ନୀଳାଚଳେ । ସେଇଠି — ସେଇ କ୍ଷେତ୍ରରେ ତାର ପିଲାଟିକୁ ତାକୁ ସମର୍ପଣ କରିଦେଇ ଆସିବୁ । ସେଇ ନୀଳାଚଳରେ ବ୍ରଜଗୋପାଳ ଗୁପ୍ତ ହୋଇ ଅବସ୍ଥାନ କରୁଛି — ବୌଦ୍ଧ ରୂପରେ — ଦାରୁବ୍ରହ୍ମ । ତୁ ଚାଲିଯା ଏଠୁ ନୀଳାଚଳେ ।

ବାବାଙ୍କ କଥା ମାନି ନବଦ୍ୱୀପ ଛାଡ଼ି ଚାଲିଆସିଲି ନୀଳାଚଳ । ଭାବିଲି — ସେଇଠାରେ ହିଁ ଏଇଟାକୁ ମୁକ୍ତ କରି ତାରି ପାଖରେ ଛାଡ଼ି ଚାଲିଯିବି । ତାର ଇଚ୍ଛା ପୂରଣ ହେଉ । ନୀଳାଚଳକୁ ଆସି — ଜଣେ ବୈଷ୍ଣବ ଗୋସାଇଁଙ୍କଠାରୁ ତୋର ସୁନାମ ଶୁଣିଲି ମା — ସାଧୁ ବୈଷ୍ଣବ

ବୈଷ୍ଣବଙ୍କ ଆଜ ଗୁରୁ ଓ କୃଷ୍ଣ ପଦରେ ତୋର ସେ ଗାଢ଼ ଅନୁରାଗ, ଶ୍ରଦ୍ଧା ଭକ୍ତି – ସେ କଥା ମୁଁ ସେଇ ଶ୍ରୀକ୍ଷେତ୍ରରେ ଇ ଶୁଣିଲି ମା !

ଆଜ କ'ଣ ଶୁଣିଲି ଜାଣ ମା ? ମାତାଜୀ ଠିକଏ ମନୋହରମାଙ୍କ ପାଖକୁ ଘୁଞ୍ଚିଆସି ଖୁବ୍ ଧୀର ସ୍ୱରରେ ଗୋପନ କଥା ଭଳି କହିଲେ –

ଶ୍ରୀ କ୍ଷେତ୍ରରେ ଯେଉଁ ରାତିଟା କଟାଇଥିଲି – ସେଇ ରାତିରେ ଯେତେବେଳେ ମୁଁ ଗଭୀର ନିଦ୍ରାରେ ଅଚେତନ, ସେତେବେଳେ ସ୍ୱପ୍ନରେ ପୁଣି ଥରେ ଦେଖାଦେଲେ ବ୍ରଜଗୋପାଳ – ଆଉ ମୋର ମୁଣ୍ଡକୁ ଆଉଁସି ଆଉଁସି କହିଲେ –

ଓରେ ! ହରିପ୍ରିୟା ! ମୋର ସନ୍ତାନକୁ ଗର୍ଭରେ ଧାରଣ କରି ତୋର ଭୟ କ'ଣ ? ମୁଁ କହି ଦେଉଛି – କାଲି ସୂର୍ଯ୍ୟୋଦୟ ପୂର୍ବରୁ ତୁ ଏଇ କ୍ଷେତ୍ରଠାରୁ ପନ୍ଦର ମାଇଲ ଉତ୍ତର-ପୂର୍ବ ଦିଗରେ ଏକମୁହାଁ ଚାଲିଯା । ମୋର ସନ୍ତାନକୁ ତୁ ଧାରଣ କଲୁ, ସେ କିନ୍ତୁ ତାକୁ ପାଳନ କରିବ ।

ସ୍ୱପ୍ନବାଣୀ ଶୁଣି ତୋ ପାଖକୁ ଧାଇଁଆସିଛି । ଆଜ ଇ ଯା ହେବାର ହୋଇଯିବା ଭଳି ଲାଗୁଛି । ମୁଁ ଅନୁଭବ କରୁଛି ମା – ଗୋପାଳର ସନ୍ତାନ ଆଉ ବେଶୀ କାଳ ରହିବ ନାହିଁ ମୋ ଭିତରେ ବନ୍ଦୀ ହୋଇ । ଉଃ – ଭୀଷଣ କଷ୍ଟ ହେଉଛି ମା !······ତୁ କିନ୍ତୁ ମହାଭାଗ୍ୟବତୀ ମା – ପରମ ସୁଲକ୍ଷଣୀ ! ତୋର ତପସ୍ୟା ମୋଠାରୁ ବି ଅଧିକ । ମୁଁ ତାର ସନ୍ତାନକୁ କେବଳ ଧାରଣ କଲି – ତୁ କିନ୍ତୁ ମା – ଯଶୋଦାର ଭାଗ୍ୟ ନେଇ ଜନ୍ମ ହୋଇଛୁ – ତୁ ତାକୁ ପାଳନ କରିବୁ ।······

ଉଃ ଉଃ ! ! ଯାହା ପଛେ ହେଉ ମା – ଆଉ ପାରିବି ନାହିଁ – ଯାହା କିଛି କରିବାର – ଦେଖି ବ୍ୟବସ୍ଥା କରିଦେ' ତ ଏଇକ୍ଷଣି – ଉଃ··· ଆଃ !···କି କଷ୍ଟ ! ଆଃ ! ! ଆଃଃ ହାଃଃ – ଖୁବ୍ ଦୁଷ୍ଟ ହେବ ଏ ପିଲାଟା ମା – ଯାହା କଷ୍ଟ ଦେଲାଣି ନା ! ! ଉଃ ! ! ଓହୋ ! ! !

ନିଜର ଉଦରକୁ ଛୁଇଁ – ଉଦର ଉପରେ ଥାପୁଡାଇଲା ଭଙ୍ଗୀରେ ମାତାଜୀ ପେରେ୍ କହିଲେ –

ଆରେ ରହରେ ଗୋପାଳର ଛୁଆ ! ଟିକେ ଲେଖା ଆଉ କ୍ଷଣକାଳ ବି ଅପେକ୍ଷା କରିପାରିବୁ ନାହିଁ ? ? ଦେ' ମା, ଦେ' – ଆଉ ବୋଧେ ସମ୍ଭାଳି

ପାରିବ ନାହିଁ । ହେ' ଦେଖି ବ୍ୟବସ୍ଥା କରି — ଓଃଃ — ଆଃଃଃ ଆ ! ! ! ହା ! ! !

ସ୍ତମ୍ଭୀଭୂତା ମନ୍ତ୍ରମୁଗ୍ଧା ମନୋରମାଙ୍କ ମନ ଭିତରେ ଜଣା ଅଜଣାର — ସତ୍ୟ ଓ ରହସ୍ୟର — ଜ୍ଞାନ ଓ ଭକ୍ତିର — ବିଦ୍ରୁପ ଓ ବିଶ୍ୱାସର — ଘୃଣା ଓ ମମତାର ଏକ ଅଭେଦ ସତ୍ୟାନୁଭୂତି — ସର୍ବୋପରି ଜୀବନକୁ ପରିପୂର୍ଣ୍ଣ ଉଦାରତାର ସହିତ ସହଜ ଭାବରେ ଗ୍ରହଣ କରି ନେବାର ଏକ ସମ୍ପୂର୍ଣ୍ଣ ନୂତନ ଅଜ୍ଞାତ ରୋମାଞ୍ଚ ଓ ଆବେଗମୟ ପୁଲକ ଜାଗିଉଠିଲା । ସେ ମାତାଜୀଙ୍କର ପାଖକୁ ଯାଇ ପରମ ଆବେଗରେ ତାଙ୍କୁ ଆଲିଙ୍ଗନ କରି କହିଉଠିଲେ —

ଠିକ୍ ଅଛି — ଠିକ୍ ଅଛି ମା — ସବୁ ବ୍ୟବସ୍ଥା ମୁଁ ତୁମର ବର୍ତ୍ତମାନ କରିଦେବି । ତୁମେ କିଛି ଚିନ୍ତା କର ନାହିଁ । ଆଉ — ଏକଥା ବି ଜାଣିରଖ, ମୁଁ ତୁମକୁ ନିର୍ଭର ପ୍ରତିଶ୍ରୁତି ଦେଉଛିଯେ ପ୍ରସବ ପରେ ତୁମର ସେ ପିଲାଟାକୁ ମୁଁ ନିଶ୍ଚୟ ପାଳିବି ।

ମାତାଜୀଙ୍କର ମୁହଁଟି ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା । ତାଙ୍କର ସେହି ବିସ୍ମିତ ଆଖି ଦୁଇଟିରେ ସେହି ଶିଶୁସୁଲଭ ସରଳ, ସହଜ, ନିର୍ଭରଶୀଳ ଭାବ ବିଶ୍ୱାସ ଓ ଆସ୍ଥା ପୁଣି ଫୁଟିଉଠିଲା । ସେ ଆନତ ଚକ୍ଷୁରେ ଧୀରେ ଧୀରେ କହିଲେ—

ତୁମର ତା' ହେଲେ ନିଜର କିଛି ପିଲାପିଲି ନାହାଁନ୍ତି ?

ନା ।

ବିବାହ କରେଛ ?

ନା ।

ତେବେ—ସେ ଜଣକ—ମାନେ—ସେ କିଏ ?

ମନୋରମା କିଛି କହିଲେ ନାହିଁ । ଆଉ ମାତାଜୀଙ୍କର ଏଇ ବାଳସୁଲଭ ସୌଜନ୍ୟବର୍ଜିତ ଅନଧିକାର ପ୍ରଶ୍ନରେ ବି ସେ ଏତେ ଟିକିଏ ବି ଆହତ ହେଲେ ନାହିଁ । କିନ୍ତୁ ମାତାଜୀ ପୁଣି ପାଟି ଖୋଲିଲେ—

ଓ ! ! ବୁଝିଛି ମା ! ସବୁ ସେଇ ବ୍ରଜଗୋପାଳର ଅନୁକମ୍ପା ମା ! କେତେ ରୂପରେ—କେତେ ମାୟା ଲଗାଇ – କେତେ ଜଣଙ୍କ ନିକଟରେ ସେ ଯେ କେତେ ଲୀଳା କରି ଆନନ୍ଦ ପାଏ—ସେ ତତ୍ତ୍ୱ କିଏ ବୁଝିପାରିବ ? ଲୀଳାନିଧି ତୋ ! ! ତାରି କରୁଣାରେ ବୀଜରୁ ଗଛ ହୁଏ—ଆଉ ଗଛ

ଦେହରେ ଫୁଲ ଫୁଟେ—ଫୁଲରୁ ଜନ୍ମ ନଏ ଫଳ—ପୁଣି ସେଇ ଫଳ ଦେହରେ ହିଁ ପୁଣି ହୁଏ ବୀଜର ଉଦ୍‌ଗମ । ତୁଇ ସୁଲକ୍ଷଣୀ—ମହାପ୍ରେମମୟୀ ମା ! ଜୀବନ ତୋର ସୁଖମୟ ହେଉ—ସାର୍ଥକ ହେଉ ତୋର ଜୀବନ—ଆନନ୍ଦରେ ରହ ମା !

ମନୋରମା କିନ୍ତୁ ମାତାଜୀଙ୍କର କୌଣସି କଥାରେ ଯାଚି ନ ପିଟାଇ ହାରାମଣିକୁ ଡାକିଲେ । ଅଜ ହାରାମଣି ସାହାଯ୍ୟରେ ସେ ମାତାଜୀଙ୍କୁ ହାସପାତାଳର ପ୍ରସବ ବିଭାଗକୁ ନେଇଗଲେ । ଯଥୋଚିତ ପରୀକ୍ଷାଦି କରିସାରି ସେପ୍ର ସବର ସମସ୍ତ ବ୍ୟବସ୍ଥା କରିଦେଲେ ଏବଂ ଅଭୟ ଦେଲେ ଯେ—ଆଉ ମାତ୍ର କେତେଘଣ୍ଟା ମଧ୍ୟରେ ପିଲା ପ୍ରସବ ହୋଇଯିବ । କୌଣସି ପ୍ରକାର ଅସ୍ୱାଭାବିକ ପରିସ୍ଥିତି ଆଦୌ ନାହିଁ । ତା'ପରେ ସେ ହାରାମଣି ଓ ଜଣେ ଧାଈକୁ ପ୍ରସୂତି ପାଖରେ ଜଗାଇ ଦେଇ କହିଲେ—

ତୁମେ ଦୁହେଁ ଏଠି ଜଗିରହ । ଯଦି ଦରକାର ପଡ଼େ – ତେବେ ମତେ ସଙ୍ଗେ ସଙ୍ଗେ ଘରକୁ ଯାଇ ଖବର ଦେବ । ଆଉ ସୁରୁଖୁରୁରେ ପିଲାଟିଏ ହେବା ମାତ୍ରେ ବି ମୋତେ ସାଙ୍ଗେ ସାଙ୍ଗେ ଖବର ଦେବ ।…

ଡାକ୍ତରଖାନାରେ ମାତାଜୀଙ୍କର ସମସ୍ତ ବ୍ୟବସ୍ଥା କରିଦେଇ ଚଞ୍ଚଳ ପଦକ୍ଷେପରେ ଘରକୁ ଫେରିଆସିଲେ ଡାଃ ମନୋରମା । ବାହାରେ ଶ୍ରାବଣ ରାତିର ଝଡ଼ ଆଗ ଭଳି ମାତିଉଠୁଛି । ମନୋରମାଙ୍କ ଶିରାରେ ଶିରାରେ ଜୀବନର ଆକାଂକ୍ଷା ଝଡ଼ଭାବରେ ବାହିତ ହେବାକୁ ଲାଗିଲା । ତାଙ୍କର ସମସ୍ତ ସ୍ନାୟୁ ଭିତରେ ଜୀବନର ଉତ୍ତେଜନା ତାତି ଉଠିଲା ।

ମନୋରମା ଅନ୍ଧ ଆବେଗରେ ଶୋଇବା କୋଠରୀ ଭିତରକୁ ପଶିଗଲେ ।

କମଳ ମିଶ୍ର ତଥାପି ତାଙ୍କର ବିଛଣା ଉପରେ ଅର୍ଦ୍ଧଶାୟିତ ହୋଇ ଖବର କାଗଜ ପଢ଼ୁଛି ।

ସ୍ୱଷ୍ଟିକ୍ଷମତାତ୍ୟାଗୀ, ନିର୍ବିକାର, ନିଶ୍ଚିନ୍ତ, ସ୍ୱପ୍ନବିଳାସୀ, ଭାବ-ପ୍ରବଣ, ନିଉରୋଟିକ୍ କମଳ ମନୋରମାଙ୍କର ସେହି ନିଃସଙ୍ଗ ବିସ୍ତୃତ ଶଯ୍ୟା ଉପରେ ତଥାପି ଅର୍ଦ୍ଧଶାୟିତ ଭାବେ ତେଉଁ ବସିଛି ! !

ମନୋରମା ଘର ଭିତରେ ପଶି ଧଡ଼୍‌କିନା କବାଟର ଶିକୁଳି ଲଗାଇଦେଲେ । ତା ପରେ ସୁଇଚ୍ ଟିପି ଉଜ୍ଜ୍ୱଳ ଆଲୁଅଟା ବି ଲିଭାଇ ଦେଲେ । ଶ୍ରାବଣ ରାତିର ଝଡ଼ଝଞ୍ଜାକ୍ଷିପ୍ତ "ତାମସୀ" ଅନ୍ଧକାରର ଢେଉ ହୁ ହୁ ହୋଇ ଝରକା ବାଟେ ଘର ଭିତରକୁ ପଶିଆସିଲା ।

ଆଜି ସେହି ଆର୍ଦ୍ର ଶୀତଳ ଝଡ଼ଝଞ୍ଜାକୀର୍ଣ୍ଣ ଆକାଶର ଅନ୍ଧକାର ଭିତରୁ କ୍ଷୁଧିତ ଜୀବନର ପ୍ରେତ ପରିପୂର୍ଣ୍ଣ ଆନନ୍ଦରେ ମଦମତ୍ତ ଅଟ୍ଟ-ହାସ୍ୟରେ ପୃଥିବୀକୁ କମ୍ପାଇଦେଲା – ହାଃ ହାଃ ହାଃ ହାଃ ହାଃ ହାଃ ।

ଘର ଭିତରେ ଜୀବନର ସେଇ ଉଦାର ଆନନ୍ଦର ଅନ୍ଧକାର ସମୁଦ୍ର ଭିତରୁ ମନ୍ତ୍ରମୁଗ୍ଧା ମନୋରମାଙ୍କୁ ଆଲିଙ୍ଗନରେ ଆଶ୍ରୟ ଦେଇ ଆବେଗଜଡ଼ିତ କଣ୍ଠରେ ହସିଉଠିଲା କମଳ—ହାଃ ହାଃ ହାଃ – ଜୀବନର ଜୟ ହେଉ ମିନୁ ! ! !

× × ×

ସେହି ପରିପୂର୍ଣ୍ଣ ଆନନ୍ଦର ଉଦାର ଅନ୍ଧକାର ଭିତରେ ସମୟର ଆଜି ଅସ୍ତିତ୍ୱ ନ ଥିଲା । ସମୟର ଅସ୍ତିତ୍ୱକୁ ଅନୁଭବ କରିବାକୁ ତା' ଭିତରେ କେହି ମଧ୍ୟ ନ ଥିଲେ । ସେମାନେ ଏକ ଅସୀମ ଆନନ୍ଦ-ସମୁଦ୍ରର ଅସଂଖ୍ୟ ତରଙ୍ଗ ଭିତରେ ପରସ୍ପରକୁ ନିବିଡ଼ ଭାବରେ ଭିଡ଼ିଧରି ଦୁଇଟି ତରଙ୍ଗ ଭଳି କେବଳ ଆବର୍ତ୍ତିତ ହେଉଥିଲେ । ସେମାନେ ଊର୍ଦ୍ଧ୍ୱକୁ ଫୁଲି ଉଠୁଥିଲେ—ଘୂ ଘୂ ଗର୍ଜନ କରି ଆଗକୁ ଲହରେଇ ଯାଉଥିଲେ । ଧକ୍କା ଖାଇ କଚାଡ଼ି ପଡ଼ୁଥିଲେ—ଶ୍ରାନ୍ତକ୍ଳାନ୍ତ ନିଶ୍ଚେଷ୍ଟ ଦୁଇଟି ତରଙ୍ଗ ବେଳାଭୂମିରେ ଛିନ୍ନଛିନ୍ନ ହୋଇ ଚୂନାହୋଇ ଫାଟି ଯାଉଥିଲେ । ପୁଣି ସେମାନେ ପଛେଇ ଯାଉଥିଲେ—ଥରି ଥରି ଲହରେଇ ଲହରେଇ—ପଛକୁ ହଟି ଆସୁଥିଲେ । ମହାସମୁଦ୍ରର ଅତଳସ୍ପର୍ଶିତ ଜଳରାଶିରେ ମିଶି ଏକାକାର ହୋଇ ଯାଉଥିଲେ । ପୁନଶ୍ଚ ସେହି ଅତଳ ସ୍ଥିର ଜଳରାଶି ଭିତରୁ ଫେନାୟିତ ଉଚ୍ଛ୍ୱାସରେ ସେମାନେ ଲହରେଇ ଉଠିଯାଉଥିଲେ ଊର୍ଦ୍ଧ୍ୱକୁ । ସେମାନେ ଫେଣେଇ ଯାଉ-ଥିଲେ—ଫିଟି ଯାଉଥିଲେ—ଲେଟି ଯାଉଥିଲେ—ମିଶି ଯାଉଥିଲେ । ସେଠି କେବଳ ରହିଥିଲା—ତରଙ୍ଗିତ, ଉଚ୍ଛ୍ୱସିତ, ଫେନାୟିତ ସମୁଦ୍ରଥିତ, ବଳୟିତ, ଲହରାୟିତ ଜଳରାଶିର ଉତ୍ତାଳ ଉଚ୍ଛଳ ଆନନ୍ଦର ଅନୁଭୂତିମୟ ଲୀଳା··········

·········କ୍ରମେ ସମୁଦ୍ରର ଏହି ଉଚ୍ଛ୍ୱସିତ ଆବର୍ତ୍ତନ ସ୍ଥିର ହୋଇଆସିଲା । ମହୋଦଧିର ଏହି ମହାନନ୍ଦମୟ ପ୍ରଳୟ ଆଲୋଡ଼ନ ଶାନ୍ତ ହୋଇଆସିଲା । ଦୁଇଟି ପରିଶ୍ରାନ୍ତ ପରିକ୍ଲାନ୍ତ ଦେହ ଭଳି ସେମାନେ ନିଶ୍ଚେଷ୍ଟ ହୋଇ ଶୋଇଗଲେ ।······ସେତେବେଳେ ବି ସମୟର କ୍ରିୟା ଆରମ୍ଭ ହୋଇ ନଥିଲା ।·········

ସେହି ଅନ୍ଧକାର-ସମୁଦ୍ରର ପ୍ରଶାନ୍ତ ମଧ୍ୟରେ ମନୋରମାଙ୍କର ମନେ ହେଲା କିମ୍ବା ସେ ସ୍ୱପ୍ନ ଦେଖିଲେ—ସେ ଯେମିତି ଇତି ମଧ୍ୟରେ ଏକ ପରିପୂର୍ଣ୍ଣ ଜୀବନର ସତ୍ତ୍ୱକୁ ନିଜ ଭିତରେ ଧାରଣ କରି ସାରିଛନ୍ତି । ସେ ଅନୁଭବ କଲେ—ଏକ ନୂତନ ସୃଷ୍ଟିର ବେଦନାବୋଧ ଲାଗି ଯେମିତି ତାଙ୍କର ସ୍ନାୟୁମଣ୍ଡଳୀ ଝଙ୍କୃତ ହୋଇ ଉଠୁଛି । ସେ ଯେମିତି ଏଇ ଆନନ୍ଦର ପ୍ରଳୟ ପୟୋଧି ଜଳରେ ସମୁତ୍ଥିତା ଏକ ପୁଷ୍ପିତା ଲତା ! ଆଉ ସେହି ଲତାର ପୁଷ୍ପେ ପୁଷ୍ପେ ସତେ କି ଏକ ନୂତନ ଫଳଧାରଣର ସଫଳ ପ୍ରତିଶ୍ରୁତି କୋଢ଼ମେଇ ଉଠୁଛନ୍ତି ! ତାଙ୍କର ସେହି ପ୍ରଳୟାନନ୍ଦର ଉଚ୍ଛ୍ୱାସ-ଆବର୍ତ୍ତନ ମଧ୍ୟରେ ସତେ ବା ନିଜର ଅଜାଣତରେ ସେ ଟାଣି ଆଣି ସାରିଛନ୍ତି—ସେଇ ଅପ୍ରକଟ ଆନନ୍ଦ ଘନମୂର୍ତ୍ତିର ବୀଜ ସତ୍ତ୍ୱକୁ ନିଜର ଗର୍ଭ ଭିତରକୁ !! ସେହି ନିବିଡ଼ ଘନଉଦାରମହାନନ୍ଦମୟ ସୃଜନଶୀଳ ଅନ୍ଧକାରର ଆଲୋଡ଼ନ ଭିତରେ ଏକ ନୂତନ ସୃଷ୍ଟିର ଭ୍ରୂଣବ୍ୟଞ୍ଜନାକୁ ସେ ପରମ ବିଶ୍ୱାସରେ ଗ୍ରହଣ କରିନେଲେ ।

ଆଜି ତାଙ୍କର ସେହି ବିଶ୍ୱାସ ଭିତରେ ସ୍ୱପ୍ନ ଓ ବାସ୍ତବ, ସତ୍ୟ ଓ ମିଥ୍ୟା, ଚିନ୍ତା ଓ ଅନୁଭୂତି ସବୁ ମିଶି ଏକାକାର ହୋଇଗଲା । ତା'ରି ଭିତରେ ସେ ଅନୁଭବ କଲେ ମାତାଜୀଟିର ସେଇ ସ୍ୱପ୍ନର ବ୍ରଜଗୋପାଳର ସନ୍ତାନଟିକୁ, ଯେପରି ସେ ନିଜେ ଇ ଧାରଣ କରି ନେଇଛନ୍ତି । ଆଜି ଅନୁଭବ ବି କରୁଛନ୍ତି—ସେଇ ନୂତନ ପ୍ରକଟ ସମ୍ଭାବନାର ମହାନନ୍ଦମୟ ସୂରୁ ସୂପର ବେଦନା !·········

ମନୋରମା ପ୍ରସବବେଦନାରେ ଅସ୍ଥିର ହୋଇଉଠିଲେ—ଅଣନିଶ୍ୱାସୀ ହୋଇପଡ଼ିଲେ—ହାତ ଗୋଡ଼ ଛାଟିଲେ । ତାଙ୍କର ସମସ୍ତ ମାଂସପେଶୀ, ରକ୍ତବାହୀ-ନାଡ଼ୀ ସ୍ନାୟୁ ଓ ଶିରକୁ ଅକଥ୍ୟ ଯନ୍ତ୍ରଣାରେ

ଥପଇ ଦେଇ—ଝଙ୍କାଇ ଦେଇ—ବଦାଶତ କରି ନ ଏ ଯେମିତ ତାଙ୍କ ଭିତରୁ ମୁକ୍ତ ପାଇବାକୁ କ୍ଷିପ୍ତ ହୋଇଉଠୁଛି ! ! !

ଓ ଃ ଃ ଃ ଃ ! !

. ଆ ଃ ଃ ଃ ଃ ! ! !

ଃ ଃ ଃ ଃ ଃ

ଃ ଃ ଃ ଃ ଃ

ହଠାତ୍ ହାସପାତାଳର ପ୍ରସୂତ ଭବନରୁ ଭାସିଆସିଲା—ଏକ ନୂତନ ମାନବଶିଶୁର ପ୍ରଥମ ଭୂମିଷ୍ଠଜନିତ ଆନନ୍ଦ ବେଦନାମୟ ସଙ୍ଗୀତର କୋମଳ କାକଳି !

କୁଆଁ—କୁଆଁ—କୁଉଆଁ

କୁଆଁ – କୁଉଆଁ – କୁ-ଉ-ଉ-ଉ-ଉ-ଆଁ !!

ମନୋରମାଙ୍କ ନିଦ ଖୁଣ୍ଟିକନା ଭାଙ୍ଗିଗଲା । ଉତ୍ତେଜନାରେ ଚମକପଡ଼ି ସେ ଡାକଉଠିଲେ—

କମଳ ! କମଳ ! କମଳ !

କିନ୍ତୁ କମଳ ! କେତେବେଳୁ ବିଛଣାରୁ ଉଠି ବାଥ୍‌ରୁମରେ ପଶି ହାତ ଧୋଉଛି । ବହୁବେଳୁ ଝଡ଼ରାତର ସେଇ ତାମସୀ ଅନ୍ଧକାରର ଗର୍ଭକୁ ବିଦାରଣ କରି ପ୍ରକଟେଇ ଉଠିଲାଣି ମେଘମୁକ୍ତ ସକାଳର ସତେଜ ସଜୀବ ସ୍ନିଗ୍ଧକାନ୍ତ ସୂର୍ଯ୍ୟାଲୋକର ଅକୁଣ୍ଠ ଆଶ୍ୱାସନା ।

ମନୋରମା ଅଖି ମେଲି ଚାହିଁଲେ—ଆଗରେ ହାସ୍ପମଣି ଠିଆ ହୋଇଛି ।

ପୁଅଟିଏ ମା !!

ଏଁ ?? ପୁଅଟିଏ ????

ଡା: ମନୋରମା ସଦ୍ୟ ପ୍ରସୂତିର କ୍ଲାନ୍ତ ନେଇ ପୁଣି ଥରେ ବିଛଣା ଉପରେ ଢଳପଡ଼ିଲେ ।

---

# କପୋତ ପକ୍ଷୀ ଗୁରୁ ମୋର

—ଏକ—

ସ୍ତ୍ରୀଙ୍କ ଉପରେ ଦିନକୁ ଦିନ ମନ ଭକ୍ତହୋଇ ଉଠିଲାଣି ତୀର୍ଥବାସୀବାବୁଙ୍କର । ହେବ ନାହିଁ ? ପତ୍ନୀ ହେଉଛି ଅର୍ଦ୍ଧାଙ୍ଗିନୀ – ସବୁ ଧର୍ମସାଧନାର ସାଥୀ—ସବୁ କର୍ମସାଧନାର ସହଯୋଗିନୀ । ଧର୍ମ, ଅର୍ଥ କାମ, ମୋକ୍ଷ—ଏହି ଚାରି ପୁରୁଷାର୍ଥ କେବଳ ପତ୍ନୀଙ୍କୁ ନେଇ ହିଁ ପ୍ରାପ୍ତ ହୋଇଥାଏ । ମାତ୍ର କ'ଣ ହେଲା ? ଓ ବର୍ତ୍ତମାନ ବା କ'ଣ ହେଉଛି ?

ତୀର୍ଥବାସୀବାବୁ ପ୍ରାୟ ବିରକ୍ତହୋଇ ଉଠିଲେଣି । ମନୁଆବୋଉକୁ ନେଇ ଆଉ କିଛି ହେବ ନାହିଁ । ଅନ୍ତତଃ ଧର୍ମ ଆଉ ମୋକ୍ଷସାଧନରେ ମନୁଆବୋଉ ବରଂ ଗୋଟାଏ ଅନ୍ତରାୟ । ଜୀବନଟାଯାକ ସଂସାର-ଜଞ୍ଜାଳରେ ଘାଣ୍ଟିହୋଇ କୃମି ପାଲଟିଲାଣି । ତଥାପି ତା'ର ଚେତନା ପଶୁ ନାହିଁ । 'ମୂଢ଼ାପି ମୂର୍ଖ, କିଛି ବୁଝିଲା ନାହିଁ । କିଛି ବୁଝିବ ବି ନାହିଁ ।'

ଯଥେଷ୍ଟ ତ ହୋଇଗଲା । ବଡ଼ ଦରିଦ୍ର ଅବସ୍ଥାରୁ ପାଠ ପଢ଼ି ସାମାନ୍ୟ ଚାକିରିଟିଏ କରିଥିଲେ । ନିଜର କର୍ମନିପୁଣତା, ସାଧୁତା ଓ ଅଧ୍ୟବସାୟ ଫଳରେ ତାଙ୍କୁ ଚାହିଁ ଚାକିରିରେ ସେ ଯଥେଷ୍ଟ ଉପରକୁ ଉଠିଛନ୍ତି । ସବୁ ଅଭାବ ଭଗବାନ୍ ଦୂର କରି ଦେଇଛନ୍ତି । ତିନି ପୁଅ, ଗୋଟିଏ ଝିଅ । ସେମାନେ ସବୁ ପାଠ ପଢ଼ି ଜୀବନର ଯଥେଷ୍ଟ ଉନ୍ନତ ସ୍ତରକୁ ଉଠିଲେଣି । ସେମାନେ ବିବାହ କଲେଣି, ଯଥେଷ୍ଟ ଟଙ୍କା କମେଇଲେଣି । ପ୍ରତିପତ୍ତି ବଢ଼ିଲାଣି ସେମାନଙ୍କର । ଘରେ ନାତି, ନାତୁଣୀ, କୁକୁର, ମାଙ୍କଡ଼, ପଶୁପକ୍ଷୀ, ଚାକର ବାକର—ମଟର । ଏଡ଼େ ସାନ କୋଠାଟିକୁ ପିଲାଏ ବଢ଼େଇଦେଲେଣି ରାଜପ୍ରାସାଦ ସ୍ତରକୁ । ଆଉ କାହିଁକି ? ସେମାନଙ୍କ କଥା ଏବେ ସେମାନେ ବୁଝନ୍ତୁ, ତାଙ୍କୁ ରାଜ୍ୟଭାର ସମର୍ପଣ କରିଦେଇ ଏଣିକି ବାନପ୍ରସ୍ଥ କରିବାକୁ ହେବ ।

'ମାତ୍ର ମନୁଆବୋଉ କ'ଣ ବୁଝୁଛି ଏ କଥାର ମର୍ମ ?' କେତେ କେତେ ଦୁଃଖର ଦିନ ଆସିଛି ସେମାନଙ୍କର ଜୀବନରେ । ଟଙ୍କା ଗୃହିଣୀଟି ତରମା । କୁଆଡ଼କୁ ଯାଏ ନାହିଁ । ସେତେବେଳେ ମନୁଆବୋଉ କେତେ କଷ୍ଟରେ ତାଙ୍କ ସଂସାରକୁ ଜଗିରଖି ଚଳାଇ ଆଣିଛି । ବର୍ତ୍ତମାନ ପିଲାଙ୍କ କୁକୁରମାନେ ଯାହା ଖାଉଛନ୍ତି, ସେମାନେ ଦିନେ ସେତିକ ମଧ୍ୟ ପାଉ ନ ଥିଲେ । ବର୍ତ୍ତମାନ ଢେର୍ ହେଲାଣି । ପିଲାଏ ଢେର୍ ଉପରକୁ ଉଠିଲେଣି । ଏଇମାନଙ୍କୁ ବଢ଼େଇ କୁଢ଼େଇ ମଣିଷ କରିବା ଲାଗି ସେମାନେ ଯଥେଷ୍ଟ ଖଟିଛନ୍ତି—ଯଥେଷ୍ଟ ତ୍ୟାଗ କରିଛନ୍ତି । ଆଜି ଏଣିକି ଏ ପଙ୍କରେ ଫାଶି ନ ହୋଇ ମୋକ୍ଷପଥରେ ଆଗେଇ ଯିବାକୁ ହେବ ।

ତୀର୍ଥବାସୀବାବୁ ବହୁବାର ସ୍ତ୍ରୀଙ୍କୁ ବୁଝାଇଲେଣି—ଏସବୁ ଛାଡ଼, ଚାଲ ପଳେଇବା ପୁଣ୍ୟ କ୍ଷେତ୍ରକୁ । ସେଠି ତ ଗ୍ରେଟିଆ କୁଡ଼ଆ ଖଣ୍ଡିଏ ବାପ ଅମଳରୁ ଅଛି । ସେଇଠି ଶେଷ ଜୀବନ କଟାଇବା—ମାଳଚନ୍ଦନକୁ ଚାହିଁ ଚାହିଁ ଶେଷ ନିଶ୍ୱାସ ଛାଡ଼ିବା । ଛାଡ଼ ଏ ସଂସାର—ମାୟା—ଜଞ୍ଜାଳ ।

ଏଇଭଳି ଯିବେ ଯିବେ ବୋଲି ବହୁବାର ଅନୁକୂଳ କଲେଣି । ମାତ୍ର ମନୁଆବୋଉ ସବୁଥର ବିଗାଡ଼ୁଛି । କିଛି ନା କିଛି ଗୋଟାଏ ଅଘଟଣ ଘଟିଯାଉଛି, ତୀର୍ଥଯାତ୍ରାର ଯୋଗ ଭାଙ୍ଗିଯାଉଛି । ମନୁଆ ବୋଉଙ୍କ ଉପରେ ତୀର୍ଥବାସୀବାବୁଙ୍କର ସବୁବେଳେ ଅବିଶ୍ୱାସ ରହି ଆସିଛି । ତାଙ୍କର ଧାରଣା – ସ୍ତ୍ରୀ ଲୋକଟାର ଘୋର ସଂସାର ଆସକ୍ତି । ଅସଲ କଥା, ମନୁଆବୋଉର ମନ ଦୃଢ଼ ହୋଇ ନାହିଁ । ସଂସାରର ମାୟାଜାଲକୁ କାଟି ସେ ମୁକ୍ତ ହୋଇପାରୁ ନାହିଁ । ମାତ୍ର ତୀର୍ଥବାସୀ ବାବୁଙ୍କର ଚେଷ୍ଟାରେ ଅନ୍ତ ନାହିଁ । ସୁବିଧା ପାଇଲେ ସେ ତାଙ୍କୁ ନାନାଦି ପୁରାଣ, ଶାସ୍ତ୍ର, ଭାଗବତ ଶୁଣାଇ ତାଙ୍କର ମନକୁ ମୋକ୍ଷ ଆଡ଼କୁ ଟାଣିବାକୁ ଚେଷ୍ଟା କରୁଛନ୍ତି । ମନୁଆବୋଉ ସବୁ ବୁଝେ; ମାତ୍ର ଠିକଣା ବେଳକୁ ସବୁ ତା'ର ବିଗିଡ଼ି ଯାଏ । ଯୁଦ୍ଧକ୍ଷେତ୍ରକୁ ଯିବା ଲାଗି ସଜ ହୁଏ; ମାତ୍ର ଯୁଦ୍ଧବାଜା କାନରେ ପଡ଼ୁ ପଡ଼ୁ ପୁଣି ଲାଙ୍ଗୁଳ ଜାକି, ଯାଇ କାଞ୍ଜିପାଣି ହାଣ୍ଡି ଭିତରେ ଲୁଚିବସେ । ଏଇମିତି କରି କରି ସେ ନିଜେ ତ ଏ ସଂସାର-ନରକରେ ସଢ଼ୁଛି, ତାଙ୍କୁ ମଧ୍ୟ ଏଠି ସଢ଼ାଉଛି ।

ସେଦିନ ଦୁଇପ୍ରହରେ ସୁଯୋଗ ପାଇ ସେ ସ୍ତ୍ରୀଙ୍କୁ ଡାକିଲେ—ଦେଖ ମନୁଆବୋଉ ! ଆଜି ଏ ପଙ୍କ ଭିତରେ ଲଟପଟ ହେଉଛ

କାହିଁକି ? ପିଲାଙ୍କ ସଂସାର ଏବେ ପିଲାଏ ବୁଝନ୍ତୁ । ବୁଝନ୍ତୁ ସେ ତାଙ୍କର ଘରବାଡ଼ି, ବାଗ ବଗିଚ୍ଛ, ବୃକ୍ଷ, ବେଷେଇ, ପିଲାପିଲାକା । ଆମର ପେନ୍‌ସନ୍ ଗଣ୍ଡାକ ଅଛି । ଜୀବନସାମାରେ କିଛି ଟଙ୍କା ମଧ୍ୟ ଅଛି । ବଞ୍ଚିଥିବାପାଏ ଜଗନ୍ନାଥଙ୍କର ଶୁଖିଲା ବଗଡ଼ା ଅଭଡ଼ା ମୁଠାଏ ଆମକୁ ଖାଇବାକୁ ନଷ୍ଟେ ମିଳିବ ।‚କାଳଷଠା ଷାଠିଏ ହେଲାଣି ମତେ—ତୁମକୁ ବି ସେମିତି ପାଖାପାଖି ହେଲାଣି । ଆଉ କେଇଟା ବର୍ଷ ବା ? ଆଉ କାହିଁକି ମନୁଆବୋଉ ! ସେ ମାୟାକୁ ଆଉ କାହିଁକି ପାଉଛ ? ଛାଡ଼ ସବୁ— ଏଣିକି ବାନପ୍ରସ୍ଥ । ଆସ— ଏଣିକି ଆସ । ଆଣିବଟି ସେଠୁ ଜଗନ୍ନାଥ ଦାସଙ୍କ ଭାଗବତ ଏକାଦଶ ସ୍କନ୍ଧ । ଏଣିକି ଆସ—ଆସ—ବସ ଏଠି ଖଟ ଉପରେ । ଶୁଣ, ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖନିସୃତ ବାଣୀ ।

ମନୁଆବୋଉ ଏକାଦଶ ସ୍କନ୍ଧ ଭାଗବତ ଆଣି ସ୍ୱାମୀଙ୍କ ହାତକୁ ବଢ଼ାଇଦେଇ ତାଙ୍କ ପାଖରେ ଖଟ ଉପରେ ବସିଲେ । ଖରାବେଳର ଏ ଦୁଇପ୍ରହର । ଘରେ କିଛି ଆଉ କାମ ନାହିଁ । ପିଲାଏ ସବୁ ସ୍କୁଲରେ । ବୋହୂମାନେ ଯେଝା ଘରେ ସେ ଶୋଇଛନ୍ତି । ମନୁଆବୋଉ ଶାସ୍ତ୍ର କାହାଣୀ ଶୁଣିବାର ଉତ୍ସୁକତା ନେଇ ସ୍ୱାମୀଙ୍କ ପାଖରେ ବସିଲେ । ପାନ ଡବାରୁ ଖଣ୍ଡିଏ ପାନ କାଢ଼ି ପାକୁଆ ପାଟିରେ ପୂରାଇ ଲାଳେଇ ହସି ହସି ସେ କହିଲେ—ହଉ ପଢ଼ ।

ତୀର୍ଥବାସୀବାବୁ ସଂସାର-ମାୟାମୋହଗ୍ରସ୍ତା ମୂଢ଼ା ସ୍ତ୍ରୀଙ୍କୁ ଏପରି ଧର୍ମଶାସ୍ତ୍ର ଶୁଣାଇବାର ସୁଯୋଗ ଖୁବ୍ କମ୍ ପା'ନ୍ତି । ତେଣୁ ସେ ସ୍ତ୍ରୀଙ୍କର ଏହି ଧର୍ମଶାସ୍ତ୍ର ମନଯୋଗରେ ପରମ ଉତ୍ସାହିତ ହୋଇ ଖୁବ୍ ସରଳ ଗ୍ରାମ୍ୟ ଓ ନାରୀସୁଲଭ ଭାଷାରେ ଭାଗବତ ବୁଝାଇ ଲାଗିଲେ—

ଶୁଣ ! ଯଦୁରାଜା ପୃଚ୍ଛା କରୁଛନ୍ତି ଯୋଗୀ ଅବଧୂତଙ୍କୁ— ହେ-ମୁନେ ! ଏହି ଭବବନ୍ଧନରୁ ତୁ ଯେ ମୁକ୍ତ ପୁରୁଷ ବୋଲାଉଛୁ, କିପରି ତୁ ଏ ମାୟାରୁ ମୁକ୍ତି ପାଇଲୁ ? କହ ତୋର ଗୁରୁ କିଏ ? ଅବଧୂତ କହିଲେ —ହେ ରାଜନ୍ ! ମୋର ଚବିଶି ଗୁରୁ । ଗୋଟି ଗୋଟି କରି ମୁନି ବୁଝାଇଦେଲେ ଯଦୁରାଜାଙ୍କୁ – ଅଗ୍ନି ମୋର ଗୁରୁ—ପବନ ମୋର ଗୁରୁ —ଆକାଶ ମୋର ଗୁରୁ – ଅଜଗର ମୋର ଗୁରୁ ।

ସେଇଠୁ—

ତୀର୍ଥବାସୀବାବୁ ସୁର ଧରି ଭକ୍ତିଗଦ୍‌ଗଦ କଣ୍ଠରେ ଭାବପ୍ରବଣ ହୋଇ ଗାଇଲେ—

( ଆରେ ) "କପୋତ-ଅ-ଅ-ଅ ପକ୍ଷୀ ଗୁରୁ ମୋର
ଶୁଣ ସା-ଆ-ଆଜନ ସେ ବେଭାର ।"

ଘୋର ବନସ୍ତ ମଧ୍ୟରେ କପୋତ ପକ୍ଷୀଟିଏ କପୋତୀକୁ ନେଇ ବାସ କରିଥାଏ । ବଡ଼ ଆନନ୍ଦରେ ସେମାନେ ଥା'ନ୍ତି । ସଂସାରର ମୋହ-ମାୟାରେ ଘାରି ହୋଇ କାମସୁଖରେ ସେମାନେ କାଳ କାଟୁଥାନ୍ତି । କେହି କାହାକୁ ଦଣ୍ଡେ ଛାଡ଼ି ସୁଦ୍ଧା ରହନ୍ତି ନାହିଁ । ନିତ୍ୟ କ୍ରୀଡ଼ା ରଙ୍ଗରେ ମାତୁଥାନ୍ତି । ଏକାଠି ଖାଆନ୍ତି—ଏକାଠି ଶୁଅନ୍ତି । କପୋତୀ ଯେତେବେଳେ ଯୋଉ କଥା ଲାଗି ଅଳି କରେ, ସଙ୍ଗେ ସଙ୍ଗେ କପୋତ ତାକୁ ଆଣି ସେ ଦ୍ରବ୍ୟ ଦିଏ । ଆମର ବାହାଘର ପରେ ପରେ ତୁମର ସେ ଦିନଗୁଡ଼ାକ କଥା ମନେ ଅଛି ନା ? ସେଇମିତି ସେମାନେ ସଂସାର ସୁଖରେ ମତୁଆଲ ହୋଇଥାନ୍ତି । ଦିନେ କ'ଣ ହେଲା ନା—କପୋତୀର ଗର୍ଭ ଉପୁଜିଲା । ବାପ ମାଆ ଭାରି ଖୁସି ହୋଇ ଡ଼ିମ୍ବ ଚାପିଲେ । କିଛି ଦିନ ପରେ ଡ଼ିମ୍ବ ଫୁଟିଲା । ଦୁଇଟି ଅତି ସୁନ୍ଦର ଛୁଆ ସେ ଡ଼ିମ୍ବ ଦୁଇଟିରୁ ବାହାରିଲେ । ପିଲାଏ କ୍ରମେ କ୍ରମେ ବଢ଼ିଲେ । ପିଲାଙ୍କୁ ଦେଖି ବାପ ମାଆଙ୍କର ଆନନ୍ଦ ଆଉ ଦେଖେ କିଏ ?

( ଆରେ ) "ଅତି କୋ-ଓ-ଓମଳ ଦେଖି କାୟେ
ଦେଖି ସା-ଆ-ଆନନ୍ଦ ବାପ ମାଏ ।
ପୁତ୍ରଙ୍କ-ଅ-ଅ-ଅ କୋମଳ ବଚନ
ଶୁଣନ୍ତେ-ଏ-ଏ-ଏ ମୁଦ୍ରିତ ଲୋଚନ ।
ପତଙ୍ଗ-ଅ-ଅ-ଅ ଦେଇଣ ଆହାର
ପାଳନ୍ତି-ଇ-ଇ-ଇ ହୋଇ ସ୍ନେହଭର ।"

ଆଃ !! କି ସୁନ୍ଦର ପଦାବଳୀ । ତମର ମନେ ପଡ଼ୁଛି—ସେଇ ଯୋଉ ବରଷ ଆମେ ପୁରୀରେ ଥିଲେଇଁ—ବାପାଙ୍କ ଅମଳର ସେଇ ଦି ବଖରା ମାଟି ଆଉ ଖପର ଘରେ—ମନୁଆ ଯୋଉ ବର୍ଷ ଜନ୍ମ ହେଲା—

ତୁମରତ ନିଶ୍ଚେ ମନେଥିବ – କେମିତି – କେମିତି ଗୁଣ୍ଡିଗୁବାଡ଼ୀ ପାଖେ ସେ ବ୍ରାହ୍ମଣୀ ବୁଢ଼ୀ ଭଲ ଦୁଧ ଦିଏ ବୋଲି – ପ୍ରତିଦିନ ସକାଳୁ ଦାନ୍ତ ନ ଘଷି ଜଳଖିଆ ନ ଖାଇ – ଡ଼ାଲଟିଏ ସାଇକେଲରେ ବାନ୍ଧି ନିତି ପାଞ୍ଚ ମାଇଲ ବାଟ ଯାଏ ଆଉ ଆସେ । କେମିତି ଶୀତଦିନେ ଗଡ଼ପାକ ମନୁଆ ଦେଖସରେ ମୁତୁଥାଏ – ଆଜ ଗଡ଼ପାକ କାଦ କାଦ ତୁମକୁ ଶୁଆଇ ଦିଏ ନାହିଁ – ମୁଁ ତ ଜମା ଗଡ଼ପାକ ଶୋଇପାରେ ନାହିଁ – ବିରକ୍ତ ହୁଏ – ତୁମେ ବି ବିରକ୍ତ ହୋଇ କୁହ—ଯାଉନ – ଆର ଘରେ ଶୋଇବ; କିନ୍ତୁ ମୁଁ ଆଉ ଆର ଘରେ ଶୋଇପାରେ କି ? ଆର ଘରେ ଶୋଇଲେ ବି ମନୁଆର କାନ୍ଦ କାନରେ ବାଜିବା ମାତ୍ରେ ନିଦ ଭାଙ୍ଗିଯାଏ । ତୁମ ପାଖକୁ ଦଉଡ଼ିଆସି ତୁମକୁ ଉଠାଏ—ତୁମେ କିନ୍ତୁ ଶୀତରାତିରେ ବି ସେଇ ମୂତ-ସମୁଦ୍ରରେ ଲେଟିଥାଅ – ଦିନଯାକ ଖଟି ଖଟି ତୁମକୁ ନିଦ ହୋଇଯାଏ – ମାତ୍ର ମନୁଆର କାନ୍ଦରେ ମୁଁ ଜମା ଶୋଇପାରେ ନାହିଁ । କାହିଁକି ଏମିତି ହୁଏ ଜାଣିଛ ?

ମନୁଆବୋଉ ଲଜିତ ହୋଇ ତଳକୁ ମୁହଁ ପୋତି ବସି କଥା ଶୁଣୁଥାନ୍ତି । ବାରମ୍ବାର ଏ ପ୍ରଶ୍ନ ଶୁଣି ସେ ସ୍ୱାମୀଙ୍କ ମୁହଁକୁ ଚାହିଁ ହସି ହସି କହିଲେ –

କାହିଁକି ଆଉ କ'ଣ ? ସେତେବେଳେ ତ ତମକୁ ଭଲ ନିଦ ହେଉ ନ ଥିଲା ବୋଲି – କ'ଣ ଔଷଧ ଖାଉଥିଲ – ଘିଅ ବି ଟିକିଏ ଟିକିଏ ଖାଉଥିଲ –

ତୀର୍ଥବାସୀବାବୁ ନିଜ ଜଙ୍ଘ ଉପରେ ପଟାସକିନା ଗୋଟାଏ ଥାପଡ଼ ମାରି ଉତ୍ତେଜିତ କଣ୍ଠରେ କହିଲେ –

ଆହେ ନାହିଁ ହେ ! ନିଦ ହେଉ ନ ଥିଲା ! କିଓ ନିଦ କାହିଁକି ହେଉ ନ ଥିଲା ? ଶୁଣ ଦାସେ କ'ଣ କହୁଛନ୍ତି –

(ଆରେ) "ବସ୍ତୁ ଙ୍କ-ଅ-ଅ-ଅ ମାୟା ବଳେ ପକ୍ଷୀ
ପାଳନ୍ତି-ଇ-ଇ-ଇ କପୋତ କପୋଣୀ ।"

ମାୟା – ମାୟା – ଘୋର ମାୟା ମନୁଆ ବୋଉ ! ବସ୍ତୁର ମାୟାଜାଲ ଛିନ୍ନ କରିବା ବଡ଼ କଷ୍ଟ । ସେହି ମାୟାଜାଲ ଘେରିଥିଲା ସେତେବେଳେ । ଘୁଡ଼ ଆସୁଛି – ଘୁଡ଼ ଆସିଲଣି । କିନ୍ତୁ ତୁମର ଘୁଡ଼ିବ ନାହିଁ – ଧରିଥିବ – ଧରିଥିବ – ତୁମକୁ ନିଶା ଘୁଡ଼ିବ ନାହିଁ ।

ମନୁଆବୋଉ କଥାଟି ଶୁଣୁଥିଲେ ମନ ଦେଇ । ଭଲ କଥାଟିଏ – ଖାସା କଥାଟିଏ । କପୋତ ପକ୍ଷୀଙ୍କ କଥା ତ ଖାଲି ନୁହଁଇ, ଆମରି-ମାନଙ୍କ କଥା । ଭଲ ଲାଗୁଥିଲା, କିନ୍ତୁ ତାଙ୍କ ଉପରେ ସ୍ୱାମୀଙ୍କର ଏଇ କଟୁ ମନ୍ତବ୍ୟ ଶୁଣି ସେ ଧୀରଗଳାରେ ନିଜର ପ୍ରତିବାଦ ଜଣାଇଲେ । ସ୍ୱାମୀଙ୍କୁ ସେ ଚିରଦିନ ଭୟ କରନ୍ତି । ବଡ଼ ପାଟିରେ କେବେ ତାଙ୍କ କଥାରେ ପ୍ରତିବାଦ କରନ୍ତି ନାହିଁ । ଏ ବୁଢ଼ୀ କାଳରେ ବି ସେ ସେମିତି ଲାଜସ୍ର ଆଖିରେଇଁବି ମୃଦୁକଣ୍ଠରେ ପ୍ରତିବାଦ ଜଣାଇଲେ ଅଭିମାନ ସ୍ୱରରେ –

ମୋର ତ ସବୁଯାକ ମାୟା । ଆଉ ତୁମେ ଭଲ ସବୁ ମାୟା ଛାଡ଼ିଛ ?

ତୀର୍ଥବାସୀବାବୁ ଚିହିଁକ ଉଠି କହିଲେ –

ଆମେ ମାୟା ଛାଡ଼ିନୁ ? ପିଲାଙ୍କ କଥାରେ, ବୋହୂମାନଙ୍କ କଥାରେ କି ନାତି-ନାତୁଣୀଙ୍କ କଥାରେ ମୁଁ ଆଜକାଲି ଆଉ ମୁଣ୍ଡ ପୂରାଏ ? ସତ କହ । ସେମାନେ ତାଙ୍କ ଇଚ୍ଛା ଯାହା କରୁଛନ୍ତି—କରୁଛନ୍ତି । ମୋର କ'ଣ ଯାଏ ଆସେ ? କହ, କୋଉ କଥାରେ ମୁଁ ଆଉ କାହାକୁ କ'ଣ କହୁଛି ? କେଇଟି ଭଲ ଆଜକାଲି ମୋ ପାଖ ମାଡ଼ୁଛନ୍ତି ?

ମନୁଆବୋଉଙ୍କର ଟିକିଏ କଥାରେ କାନ୍ଦ ପକାଇବା ଅଭ୍ୟାସ । ସେ ଛଳଛଳ ଆଖିରେ କହିଲେ—

ମୁଁ କାହାର କୋଉ କଥାରେ ଆଉ ଚାଟି ପିଟାଉଛି କି ? ସେଇ ନାତି-ନାତୁଣୀ ହୋଇ ଢ଼'ଗ୍ଗିରଟା ମୂଷା ବଲେଇ ଅଛନ୍ତି ଯେ ତାଙ୍କରି ଲେଞ୍ଜାଗ ତ ସେ ବୋହୂମାନେ ପାରୁନାହାନ୍ତି – ମୁଁ ଟିକିଏ·········

ତୀର୍ଥବାସୀବାବୁ ପ୍ରଧାନ ସୂତ୍ରଟି ପାଇଯିବା ଭଳି ଉତ୍ତେଜିତ କଣ୍ଠରେ ପାଟି କରିଉଠିଲେ –

ସେଇ – ସେଇ – ସେଇ କଥାଟି ମୁଁ କହୁଛି । ସେଇ ନାତି ନାତୁଣୀଙ୍କ ସାଙ୍ଗରେ ବାବୁ ତୁମର ଏତେ ଆଉ ପ୍ରେମ କାହିଁକି ? ସେମାନେ ଏ ବୟସରେ ମାୟା କମାଉଛନ୍ତି ନା ବଢ଼ାଉଛନ୍ତି ?

ମଲା ! ସେ ମାଙ୍କଡ଼ା ପିଲା କେଇଟା ପୁଣି କି ମାୟା ବଢ଼ାଉଛନ୍ତି ମ ? ବଞ୍ଚିଥାଇ ବୋଲି ନାଉଖାଉ ହେବାର ଦେଖିଲେ ଦେହ ବଳୁ ନାହିଁ । ସେ ପିଲାଏ ବି ମୋତେ ସେମିତି ଦଣ୍ଡେ ଛାଡ଼ୁ ନାହାନ୍ତି । ଏ

ବୋହୂମାନଙ୍କର କ'ଣ ପିଲା ବୁଦ୍ଧି ଗୁଡ଼ୁଲାଣି ! ମହିଆଁ ବୋହୂ କଥା ଶୁଣିବ ? କାଲି ଫକୁନା ଡବାଏ ଚକୋଲେଟ ଆଣି ଦେଇଥିଲା ପିଲାଙ୍କ ପାଇଁ । ମହିଆଣୀ କ'ଣ କରିଛି ନା ପିଲାଙ୍କୁ ତ ଯାହା ଦେଲା ଦେଲା – ବଡ଼ବୋହୂ ଆଉ ସାନବୋହୂଙ୍କ ସାଙ୍ଗେ ସେତକ ସବୁ ନିଜ ପାଟିରେ ପକେଇଦେଲେ । ସ୍ୱାଙ୍କୁ ପିଲା କହିବ ନାହିଁ ତଆଉ କାହାକୁ କହିବ ? ସ୍ୱାଙ୍କର ତ ପିଲାବୁଦ୍ଧି ଯାଇନାହିଁ, ଏ ଆଉ ପିଲାଙ୍କୁ ପାଳିବେ କ'ଣ ? ସ୍ୱାଙ୍କର ତ ପିଲାଙ୍କ ଦରବ ଉପରୁ ଲୋଭ ଗୁଡ଼ନ – ଲାଗିଛି । ମୁଁ କହିଲି – କଲେ ସବାଖାଣ୍ଡର ଝିଅ ! ପିଲାଙ୍କ ଦରବ ପିଲାଏ ଖାଇବେ ନା ତୁମେ ଖାଇବ ? ମହିଆଣୀ କ'ଣ କହିଲା ଜାଣିଚ ? ସେ ତ ଓଡ଼ିଲି ଝିଅ – ତା' କଥାରେ ବାଟୁଲି ବାଜିବ ନାହିଁ । କହିଲା – ମାଆ ! ଆପଣ ଥାଉଁ ଥାଉଁ କ'ଣ ଆମେ ବୁଢ଼ୀ ହୋଇଯିବୁ ? ଆପଣ ବଞ୍ଚିଥିବା ଯାଏଁ ଆମେ ପିଲା ହୋଇ ରହିଥାଉଁ । ଆପଣଙ୍କ ଦେହ କଣ ସତ୍ତ ନାହିଁ ମାଆ ? ଆପଣ ଆମ ଭଳିଆ ହୋଇଥିବା ବେଳେ ଆପଣଙ୍କ ଶାଶୂ ନ ଥିଲେ ନା ସେଇଥିଲାଗି – ଶୁଣ କଥା !

ମନୁଆବୋଉ ଡବାରୁ ପାନ ଖଣ୍ଡିଏ କାଢ଼ି ପାକୁଆ ପାଟିରେ ପୂରେଇ ଆତ୍ମତୃପ୍ତିରେ ହସି ହସି ଗଡ଼ିଗଲେ ।

ଏତେବେଳ ଯାଏ ଖର୍ଥବାସୀବାବୁ ହ.ଦ୍ଧ ସର୍ପ ଭଳି ଫଣା ଟେକି ସ୍ତ୍ରୀଙ୍କର କଥା ଶୁଣୁଥିଲେ । ତାଙ୍କର ମନ ଏ କଥାରେ ଏକବାର୍ ବିକ୍ଷୁବ୍ଧ ହୋଇଉଠିଲା । ଇସ୍ – ଓ ! ବ ମାୟାମୋହରେ ପଡ଼ି ଏ ଚାପିମା ଘାଣ୍ଟି ହେଉଛି ? ଏଇସବୁ ଭେଲିକି ଦେଖାଇ – ମନମତାଣିଆ କଥା କହି ସଂସାର ଯେ ତାଙ୍କୁ ଜାଲରେ ଛନ୍ଦି ଶୋଷି ଶୋଷି ଶ୍ଳେଷା କରୁଛି – ମୂର୍ଖା ପାପିପୁରୀ ନାଶ ଏ କଥା ବୁଝିପାରୁ ନାହିଁ । ତାଙ୍କୁ ସୁଖ ଲାଗୁଛି ଏସବୁ । ବୁଝି ପାରୁନ – ଏସବୁ କେହି କାହାର ନୁହନ୍ତି । ଗଲାବେଳେ ଏମାନେ କେହି ସାଙ୍ଗରେ ଗୋଡ଼ାଇ ଯିବେ ନାହିଁ ।

'ଘଣ୍ଟ ଛୁଟିଲେ ଡୋଡେ ବୋଲିବେ ଭୂତ ରେ – ।'

ସେମାନେ ପଇସା କମେଇଲେଣି । ଭୂମ ମଲା ବାସୀ ଜାକଜମକରେ ବନ୍ଧୁବାନ୍ଧବଙ୍କୁ ଡାକି, ଡାଲି ଭାତ, ମାଛ, ପାୟସ ଖାଇବେ – ଖୁଆଇବେ ।

ତା'ପରେ ଶୁଝିଗଲା ତାଙ୍କର ମାତୃଋଣ ଓ ପିତୃଋଣ । ନାତି ନାତୁଣୀ ତ କେହି ମନେ ରଖିବେ ନାହିଁ । ମନେ ରଖିଲେ ବା କ'ଣ ହୋଇଯାଉଛି ! ଆସିଥିଲୁ ଏକା ମନ ଯିବୁ ମଧ୍ୟ ଏକା ! ଏକା ହରିନାମ ସାର । ସେଇ ଯିବ ସଙ୍ଗରେ । ମୂଢ଼ା ଜାଣୁ ନାହିଁ କି ଜାଣିବାର ଚେଷ୍ଟା ମଧ୍ୟ କରୁ ନାହିଁ ।

ଘୋର କ୍ରୋଧରେ ଫଅଁକନା ଶ୍ଳେଷମାଶ ତୀର୍ଥବାସୀବାବୁ କହିଲେ—

ଶୁଣୁଥାଅ—ଶୁଣୁଥାଅ—ବସି ବସି ଶୁଣୁଥାଅ—ଦେଖୁଥାଅ ଲେଖୁଥାଅ—ଅଣବ୍ଲଣ ବହିଲ ବେଳକୁ କେହି ବଗିବେ ନାହିଁ—କେହି ଶୁଭିବ ନାହିଁ—କେହି ଗଣିବ ନାହିଁ ତଣ୍ଡିରେ—ଶୁଣୁଥାଅ ।

ତୀର୍ଥବାସୀବାବୁ ବିରକ୍ତିରେ ଉଠି ଠିଆ ହେଲେ । ମନୁଆବୋଉ ତାଙ୍କ ହାତ ଧରିପକାଇ ଅନୁଯୋଗଭରା କଣ୍ଠରେ କହିଲେ—

ମଲା ! ଡାକିଲି ଶାସ୍ତ୍ର ଶୁଣାଇବ ବୋଲି, ଫେର୍ ଏମିତି ରାଗି ଉଠିଲ କାହିଁକି ମ ? ସବୁବେଳେ ଏମିତି ଟିକିଏ କଥାରେ ଚଡ଼ଚଡ଼ ହେଉଛ କାହିଁକି କହିଲ ? କୁହ ମ କୁହ—ମୋ ରାଣଟି—ଭଲ କଥାଟିଏ—ମନ ହେଉଛି ଶୁଣିବାକୁ । ଏ ହାପହରଟାରେ ତ କେହି କାମ ନାହିଁ—ପିଲାଏ ସବୁ ଇସ୍କୁଲରେ—ସାନଟାକୁ ତା ମା' କ'ଣ ଘରେ ବସି ଇଁଗିରେଜୀ ପଢ଼ାଉଛି । କୁହ—ମୋ ରାଣ କୁହ ।

ତୀର୍ଥବାସୀବାବୁଙ୍କର ବିରକ୍ତି କଟିଲା ନାହିଁ । ସେ ଖଚେଇ ହେଲା ଭଳି କହିଲେ—

ଯାଅ ହେ ! ତୁମେ ଶୁଣିବ ଭାଗବତାମୃତ । ଯାଅ, ଯାଅ । ଚେଙ୍ଗ ଶୁଣେଇବେ ତୁମକୁ—ଜଗିଛନ୍ତି ଜାଲ ମେଲେଇ ସମସ୍ତେ । ଯାଅ ଶୁଣେଇବେ, ସ୍ତ୍ରୀପ ନାସ୍ତ ତୁ ନରକସ୍ୟ ଦ୍ୱାର !

ତୀର୍ଥବାସୀବାବୁ ରାଗରେ ତମତମ ହୋଇ ବାରଣ୍ଡାକୁ ବାହାରିଗଲେ । ତାଙ୍କ ପଛେ ପଛେ ମନୁଆବୋଉ ଉଠିଆସି ତାଙ୍କ ଆଗରେ ଠିଆହୋଇ ବାଟ ଅଗୁଳି ତାଙ୍କ ହାତ ଧରି ପକାଇଲେ । 'ଆସନ—ଆସନ, ମୋ ରାଣଟା ପରା । ଏମିତି ରାଗିଯାଉଛ କିଆଁ ? ହେଲା, ଏବେ ମୋରି ସବୁ ଦୋଷ । ମୁଁ ପାପିଣୀ—ମୂର୍ଖ । ତୁମେ ତ ପଣ୍ଡିତ ଲୋକ—ଜ୍ଞାନୀ । ତମେ ଏମିତି ରାଗିଗଲେ ଚଳିବ କି ? ମୁଁ

ଯଦି ତୁମ ମନଙ୍କ ସମାନ ହୋଇଥାନ୍ତ, ତେବେ ତୁମ ହାତ ଧରିଥାନ୍ତି କାହିଁକି ? ତୁମ ସଙ୍ଗ ନ ଚାଲିପାରିଲେ ତୁମେ ହାତ ଧରି ଉଠେଇ ନବ ନା ତଳେ ପକେଇଦେଇ ଚାଲିଯିବ ଅଧା ବାଟରେ ?

ସ୍ତ୍ରୀଙ୍କର କଥା ଶୁଣି ତୀର୍ଥବାସୀବାବୁଙ୍କର ମନ ଟିକିଏ ନରମି ଆସିଲା । ସେ ତାଙ୍କର ମୁହଁକୁ ଥକ୍‌କା ହୋଇ ଚାହିଁରହିଲେ । ଉଦ୍‌ଭ୍ରାନ୍ତ ଦୁଇପ୍ରହରଟା । ଚାରିଆଡେ ନିସ୍ତବ୍ଧ । ଝାଇଁ ଝାଇଁ ଖରାରେ ଚାରିଆଡ ଝାଉଁଳି ପଡ଼ୁଛି । ତୀର୍ଥବାସୀବାବୁ ସ୍ତ୍ରୀଙ୍କର ମୁହଁକୁ ଅର୍ଥପୂର୍ଣ୍ଣ ଭଙ୍ଗୀରେ ଚାହିଁରହିଲେ । ପେଣ୍ଠି ହୋଇ ଗ୍ରୋଟ ଲୋକଟିଏ । ଚମସବୁ ଓହଳି ଆସିଲାଣି । ସୁନା ଭଳି ରଙ୍ଗ — ମଉଳନ ପଡ଼ି ଆସିଲାଣି । ପାଟିରୁ ସବୁତକ ଦାନ୍ତ ପ୍ରାୟ ପଡିଲାଣି । ସରୁ ସରୁ ଓଠ ଦିଓଟି; କିନ୍ତୁ ପାନବୋଳରେ ସବୁବେଳେ ଲାଲ ଗୁଲୁଗୁଲୁ । ମୁଣ୍ଡ ଉପରୁ ସବୁତକ ବାଳ ପ୍ରାୟ ଉପୁଡ଼ି ଗଲାଣି । ତଥାପି ଅତି ଯତ୍ନରେ ସେ ମୁଣ୍ଡ କୁଣ୍ଡାଉଛନ୍ତି । ସୀମନ୍ତରେ ମୋଟା ହୋଇ ସିନ୍ଦୂରଗାର । ଆଉ ମଥାରେ ଏତେ ବଡ଼ ଗୋଟାଏ ଲାଲ ଟୁକୁଟୁକୁ ସିନ୍ଦୂର ଟୋପା । ଗଳାରେ ମୋଟା ସୁନାର ହାର । ସବୁଠାରୁ ଆକର୍ଷଣୀୟ ତାଙ୍କର ଏଇ ଆଖି ଦୁଇଟା । ଏଇ ଆଖି ଦୁଇଟାରେ ଯେତେ ବା ଏକ ଅବୋଧ ସରଳ ଶିଶୁସୁଲଭ ଆଶା ଆଉ ବିଶ୍ୱାସର ନିର୍ଦ୍ୱନ୍ଦ୍ୱନିଶ୍ଚିନ୍ତ ମାୟା କୁହେଳି ଭଳି ବାଷ୍ପାଚ୍ଛନ୍ନ ହୋଇରହିଛି । ତୀର୍ଥବାସୀବାବୁଙ୍କର ବୈରାଗୀ ହୃଦୟ ଏ ନଶ୍ୱର ଅମାୟିକ ଅଥଚ ଅବୋଧ ମାୟାଚ୍ଛନ୍ନ ନାରୀମୂର୍ତ୍ତିଟି ପ୍ରତି ଦୟାର୍ଦ୍ର କାରୁଣ୍ୟରେ ଭିଜିଗଲା । ତାଙ୍କର କ୍ରୋଧ ଉଭେଇଗଲା ଓ ତାଙ୍କ ନିଜ ଆଖିରେ ମଧ୍ୟ ସ୍ତ୍ରୀଙ୍କ ପ୍ରତି ଗଭୀର ସହାନୁଭୂତିର ମେଘ ଘନୀଭୂତ ହୋଇଉଠିଲା । ସେ ନରମ କଣ୍ଠରେ କହିଲେ —

ଆହେ ଯାହା କହିଲ ସତ କଥା ଯେ ହେଲେ ମୋ ହାତ ଧରି ସିନା ତୁମେ ଆଥକୁ ଆଗକୁ ପାଦ ପକାଇଲେ ହେବ । ତୁମେ ଯଦି ହାତ ଧରିବାମାତ୍ରେ ଶୁଣି ପଛକୁ ପଛକୁ ଟାଣିବ, ତା'ହେଲେ ତ……

ମନୁଆବୋଉ ପଚାରିଲେ — କ'ଣ ହେବ ତା'ହେଲେ ?

"କ'ଣ ଆଉ ହେବ ? ମହାଭାରତ ପଢ଼ି ସେଦିନ ଶୁଣାଉଥିଲି—ମନେ ନାହିଁ ? ଯୁଧିଷ୍ଠିର ମହାରାଜା କ'ଣ କଲେ ? ଦ୍ରୌପଦୀ ଠାକୁରାଣୀ ଯେତେବେଳେ ପଡ଼ିଗଲେ—ଯୁଧିଷ୍ଠିର ଦେବ ଆଉ ପଛକୁ ଚାହିଁଲେ କି ?"

ମନୁଆବୋଉଙ୍କ ମନଭିତରେ ପୂର୍ବାନୁଭୂତ ପଞ୍ଚପାଣ୍ଡବ ଓ ଦ୍ରୌପଦୀଙ୍କର ମହାପ୍ରସ୍ଥାନ ଚିତ୍ର ଖେଳିଗଲା । ତାଙ୍କର ନିର୍ବୋଧ ଚିତ୍ତରେ ମଧ୍ୟ ସେହି ଦୃଶ୍ୟଟି ଅଜ୍ଞମାତ୍ରାରେ ଆତଙ୍କ ସୃଷ୍ଟି କରିଥିଲା । ବର୍ତ୍ତମାନ ପୁଣି ସେହି ପ୍ରସଙ୍ଗ ସ୍ୱାମୀ ଚେତାଇଦେବା ମାତ୍ରେ ତାଙ୍କର କୋଟରଗତ ଆଖି ଭିତରେ ସେହି ନିର୍ଜନ ଶ୍ୱାପଦ ତୁଷାରାବୃତ ପର୍ବତ ଉପରେ ଭୂପତିତା ଦ୍ରୌପଦୀଙ୍କର ଆର୍ତ୍ତବିକଳ ଅସହାୟତା ଓ ଧର୍ମାବତାର ଯୁଧିଷ୍ଠିରଙ୍କର ସେହି ସ୍ୱାର୍ଥପର ନିର୍ମମ ଆବେଗହୀନ ତଥାକଥିତ ନିର୍ଲିପ୍ତତାର ଭୟାବହ ଦୃଶ୍ୟର ସ୍ମୃତି ଏକ ଅସହାୟ ଆତଙ୍କ ଫୁଟାଇ ଦେଲା । ସେ ପ୍ରାୟ କାନ୍ଦ କାନ୍ଦ ହୋଇ ସ୍ୱାମୀଙ୍କୁ ଜଡ଼ାଇ ଧରି ପଚାରିଲେ—

ତା'ହେଲେ ତୁମେ କ'ଣ ସେମିତି ମୋତେ ଏକା ଛାଡ଼ି ଆଗକୁ ଚାଲିଯିବ ?

ସ୍ତ୍ରୀଙ୍କର କୋଟରଗତ ଆଖିରେ ଏହି ଶିଶୁସୁଲଭ ଏକାନ୍ତ ନିର୍ଭରପର ନିର୍ବୋଧ ଅସହାୟ କାତରତାର ଛାୟା ଦେଖି ତୀର୍ଥବାସୀ-ବାବୁଙ୍କ ବୈରାଗୀ ହୃଦୟ ଆହୁରି କରୁଣ ହୋଇଉଠିଲା । ସେ ସ୍ତ୍ରୀଙ୍କର ହାତକୁ ଧରିପକାଇ ଛଳ ଛଳ ଆଖିରେ ପ୍ରବୋଧନା ଦେଲେ—ନାହିଁ ହେ ନାହିଁ । ସେ କଥା ନୁହେଁ ।

"ସେ ସବୁ ବଡ଼ ଲୋକଙ୍କର ମତ,
ଆମ ଅଳପ ଲୋକେ ବିପରୀତ ।"

ଚାଲ ଚାଲ, ଆସ ଘର ଭିତରକୁ ଆସ । ଶୁଣ ! କପୋତ ପକ୍ଷୀ କ'ଣ କଲେ ?

ସ୍ତ୍ରୀଙ୍କର ଦାଚସ୍ତ୍ର ସମ୍ପୂର୍ଣ୍ଣବାସୀବଂକୁ ସଭଙ୍କ ଓ୍ଦରକୁ ନେଇ ବସାଇଦେଲେ । ତା'ପରେ ସ୍ତ୍ରୀ ସେଇ ଅଧ୍ୟା କଥାରୁ ଆରମ୍ଭ କଲେ –

ହଁ – କ'ଣ କହୁଥିଲି ! କପୋତ କପୋତୀଙ୍କର ଦୁଇଟି ଶାବକ ହେଲେ । ଦୁହେଁ ଯାକ ବଡ଼ ଆଦରରେ ତାଙ୍କୁ ପାଳୁଥାନ୍ତି । ବନଯାକ ବଣ, ଝରଣା, ନଈ, ପାହାଡ଼ ବୁଲି ବୁଲି, ଫଳ ଫୁଲ ଗଛ ପତଙ୍ଗ ଖୋଜି ଖୋଜି ଆଣନ୍ତି । ନିଜେ ନ ଖାଇ ଛୁଆଙ୍କ ମୁହଁରେ ଦିଅନ୍ତି । କ୍ରମେ କ୍ରମେ ଛୁଆଙ୍କ ଦେହରେ କଅଁଳ ରୁମାବଳୀ ଉଠେ । ତାଙ୍କୁ ଦେଖି ବାପ ମାଆଙ୍କ ମନ ଉଲୁସି ଉଠୁଥାଏ । ପିଲାଏ ଗାଲୁରୁ ମାଲୁରୁ ହୋଇ କଥା କହିବାକୁ ଆରମ୍ଭ କରନ୍ତି । ତାକୁ ଶୁଣି ବାପ ମାଆଙ୍କ ଆଖି ବୁଜି ହୋଇଯାଏ ଆନନ୍ଦରେ । ଏଇମିତି ମୋହମାୟାରେ ଘାରିହୋଇ ସେମାନେ ପିଲାଙ୍କୁ ପାଳୁଥାନ୍ତି । କେତେବେଳେ ବା ଗଛରୁ ଖସିପଡ଼ିବେ – କଏ କେତେବେଳେ ବସା ଉଣ୍ଡି ଆସି ନେଇଯିବ । ଛୁଆଙ୍କ ଉପରେ ସବୁରି ଆଖି, ସବୁରି ଅବହେଳା । ଡରରେ ଭୟରେ କାଳ କାଟୁଥାନ୍ତି ସେମାନେ ପିଲାଙ୍କୁ କୋଳରେ ଧରି—

(ଆରେ) "ବସ୍ତୁ କ-ଅ-ଅ-ଅ ମାୟା ମୋହେ ଯନ୍ତ୍ରୀ
ପାଳନ୍ତି-ଇ-ଇ-ଇ କପୋତ କପୋତୀ ।"

ଦିନେ କ'ଣ ହେଲା ନା—ବାପ ମାଆ ଆହାର ଖୋଜିବା ଲାଗି ଯାଇଥାନ୍ତି ଦୂର ବନସ୍ତକୁ । ଛୁଆଏ ଥା'ନ୍ତି ଏକା ଏକା ଗଛ ଡାଳରେ-— ବସା ଭିତରେ । ଏହି ସମୟରେ ଏକ ବ୍ୟାଧ ଆସି ସେ ଠାକରେ ପହଞ୍ଚିଲା । ଛୁଆଙ୍କୁ ଧରିବା ଲୋଭରେ ମସ୍ତଗୋଟେ ଫାନ୍ଦ ମେଲିଲା ସେ ଗଛତଳେ –

ଏ ପରିସ୍ଥିତିରେ ମନୁଆରେବାଉଙ୍କ କୋଟରଗତ ଆଖି ଭିତରୁ ଡୋଳା ଦୁଇଟି ଚରମ ଉତ୍ସୁକତାରେ ପଦାକୁ ବାହାରି ଆସିଲା । କପୋତ ଛୁଆଙ୍କର ଏଇ ଆକସ୍ମିକ ବିପଦରେ ସେ ବ୍ୟସ୍ତ ହୋଇଉଠିଲେ । ନିଶ୍ୱାସ ବନ୍ଦ କରି ଆଖି ଓରିଟି ସେ ପରବର୍ତ୍ତୀ ଘଟଣା ଲାଗି ଶଙ୍କାକୁଳ ଚିତ୍ତରେ ରହିଁ ରହିଲେ –

ତୀର୍ଥବାସୀବାବୁ କହିଲେ—ଏ ବାଧ କିଏ ଜାଣିଛ ? କିଏ ? ?

ଏ ବାଧ ସାମାନ୍ୟ ଶବର ନୁହେଁ । ଏ ହେଉଛି—ସ୍ୱୟଂ କାଳପୁରୁଷ । ସେ ଯେଉଁ ଜାଲ ମେଲାଇ ବସିଲା, ସେ ହେଉଛି ମାୟାଜାଲ, ଏଇ ମାୟାଜାଲକୁ ବିସ୍ତାର କରି ତା ଭିତରେ ଲୋଭନୀୟ ସାଂସାରିକ ସୁଖର ଆଧାର ପକାଇ କାଳପୁରୁଷ ଅଲକ୍ଷ୍ୟରେ ଚାକି ବସିଥାଏ । 'ସଂସାରୀ ଘୋର ମାୟା ଲୋଭରେ ପଡ଼— × × ×'

ସ୍ୱାମୀଙ୍କର ଏହି ତାତ୍ତ୍ୱିକ ବ୍ୟାଖ୍ୟାନରେ ମନୁଆବୋଉଙ୍କର ମନ ଅଣନିଶ୍ୱାସୀ ହୋଇପଡ଼ିଲା । ସେ କେବଳ ଘଟଣାର ଗତିରୁ ଆବେଗ ଓ ରସାନୁଭୂତି ପାଇବା ଲାଗି ଉତ୍ସୁକା ହୋଇଉଠିଲେ ।

ସେଇଠୁ କ'ଣ ହେଲା କୁହନା ! ମୋ ଧନ ତ ସବୁ ଗଛ ଅଗରେ ଲୋ ! ସେଇଠୁ କ'ଣ ହେଲାଟି ! ଓଃ ପ୍ରଭୁ ହେ—ନୀଳାଚଳ-ନାଥେ ! ସେ ଶବର ନିଆଁ ଲଗା ତ—ଓଃ କ'ଣ ହେଲାଟି ସେଇଠୁ ? ମୋ ଧନଙ୍କର—ହେ ଜଗନ୍ନାଥେ, ସେଇଠୁ କ'ଣ ହେଲାଟି ? ? ଆହା ! !

ତୀର୍ଥବାସୀବାବୁ ବୈରାଗ୍ୟରସ-ପ୍ଲାବିତ ଅର୍ଦ୍ଧମୁଦ୍ରିତ ଲୋଚନରେ କହିଚାଲିଲେ—

ପକ୍ଷୀଶାବକମାନେ ତ ଖଣ୍ଡିଆଡ଼ା ଦେଉଥାନ୍ତି । ଜାଲ ଭିତରେ ତ ସେ ଆଧାର ଖଞ୍ଜିଛି । ବାଳକ ସ୍ୱଭାବେ ଲୋଭାର୍ଥୀ । ଆହାର ଦେଖି ଜାଲ ଭିତରକୁ ଉଡ଼ିଆସିଲା ସାଙ୍ଗେ ସାଙ୍ଗେ ଶବର କ'ଣ କଲା ନା······

"ଉପରେ-ଏ-ଏ-ଏ ବାନ୍ଧିଲା ଦଉଡ଼ି
ପକ୍ଷୀଙ୍କି-ଇ-ଇ-ଇ ଆଣିଲା ଘଉଡ଼ି ।"

ମନୁଆବୋଉଙ୍କର ଆଉ ଧୈର୍ଯ୍ୟବନ୍ଧ ମାନିଲା ନାହିଁ, ସେ ଭେଁ କନା କାନ୍ଦିଉଠିଲେ—

ଆରେ—ମୋ ଧନଙ୍କୁ କି କଲା ଲୋ । ସେ ନିଆଁ ଲଗା—
ତାଙ୍କର ସଙ୍ଗେ ସଙ୍ଗେ ବହୁଦିନ ତଳର ଗୋଟାଏ ହୃଦୟ ବିଦାରକ ଦୃଶ୍ୟ ମନେ ପଡ଼ିଗଲା । ବଡ଼ପୁଅ ମନୁଆକୁ ସେତେବେଳେ

ହୋଇଥାଏ ମୋଟେ ପାଞ୍ଚ ବରଷ । ତାକୁ ବାପ ପାଖେ ଛାଡ଼ି ସେ ଦିନ ଆଠଟା ଲଗେ ତାଙ୍କ ବାମଘରକୁ ଯାଇଥିଲେ ନରଦା ଗାଁ । ମନୁଆଟା ତ ସେତେବେଳେ ଭାରି ହୁରୁମା ହୋଇଥାଏ । ତାକୁ ଛାଡ଼ି ଆସି ନିଜ ବାପଘର ଗାଆଁରେ ବି ମନ ଭାରି ଧକ ଧକ ହେଉଥାଏ । ଦିନେ କ'ଣ ହେଲା ନା- ଓଃ-ପ୍ରଭୁ ହେ-ସେ ବିପଦ ବେଳର ଘଣ୍ଟାଳକୁ ବି ନ ହେଉ । ତାଙ୍କ ବାପଘର ଗାଁର ଅଲେଖ ସାବୁତର ପୁଅଟିଏ, ଝିଅଟିଏ । ପୁଅଟି ହୋଇ-ଥାଏ ଅବିକଳ ତାଙ୍କ ମନୁଆ ଭଳିଆ । ମୋଟାମୋଟି ହୋଇ ଧୂମୁସା ପିଲାଟିଏ । ସବୁବେଳେ ହୁରୁମା ପଣ କରୁଥିବ । ସେଇ ପିଲାଟି — ଆହା କଇଁଫୁଲ ତୋଳିବ ବୋଲି ଗସ୍ତା ନନ୍ଦନପୋଡ଼ୀରେ ଗୁଣ୍ଡିଏ ପାଣିକି ପଶିଗଲା । ତାକୁ ଧରିବ ଧରିବ ବୋଲି ଭଉଣୀ ବି ତା' ପଛେ ପଛେ ପାଣିରେ ପଶିଗଲା । ଆହା ! ! ଆହା ! ! ପ୍ରଭୁ ହେ · ତାଙ୍କୁ ସବୁ ପାଣିରୁ ଆହା ! ! ଉଠାଇ ଆଣି ଯେତେବେଳେ ପଦାରେ ପକାଇଲେ··· ଓଃ ସେଦିନ ସେ ନିଜେ କେତେ ମୁଣ୍ଡ ବାଡ଼େଇ ନ କାନ୍ଦିଛନ୍ତି ! ! ପ୍ରଭୁ ହେ — ଏମିତି ଦଣ୍ଡ ପୁଣି ତୁମେ ମଣିଷକୁ ଦିଅ !

ଖାଲି ମଣିଷପିଲା ନୁହେଁ, କୁକୁର ବିଲେଇ ଛୁଆଙ୍କ ଉପରେ ବି ମନୁଆବୋଉଙ୍କର ଭାରି ମାୟା । ସବୁ ଛୁଆଏ ସମାନ । ସବୁ ଛୁଆଏ ପିଲାବେଳେ ଏକାଭଳି ଦିଶନ୍ତି ତାଙ୍କ ଆଖିକି । ସେମିତି କୁନ୍ତୁ କୁନ୍ତୁ ଅବୋଧ ଆଖିମାନ — ସେମିତି ଦୁଷ୍ଟ ହୁରୁମା ଅମାନିଆପଣ, ନ କଲା କଥା କରିବେ — ନ ଯିବା ଜାଗାକୁ ଯିବେ —

ଜଗନ୍ନାଥେ ବଡ଼ ଲୋକ । କେତେ ବ୍ରତଉପବାସ କରି କରି ଦେଇଛନ୍ତି ତିନି ପୁଅ — ଗୋଟିଏ ଝିଅ । ତାଙ୍କ ଉପରେ କାଳ ଯମର ନିଆଁ ଲଗା ଆଖି ପଡ଼ି ନାହିଁ । କେତେ କଷ୍ଟରେ କେତେ ସନ୍ତର୍ପଣରେ, କେତେ ରୋଗ ବଇରାଗ, ରାଡ଼ି ମଡ଼ର — ସବୁଠାରୁ ଜଗି ଜଗି ସେ ସେମାନଙ୍କୁ ଏତୁଟିରୁ ଏତେଡ଼ଟିଏ କରିଆଣିଛନ୍ତି । ପ୍ରଭୁ ହେ ! ଆଉ ସେ କଷ୍ଟ ଏ ଆଖି ନ ଦେଖୁ । ତା' ଆଗରୁ — ମନୁଆ ଏ ମୁହଁରେ ନିଆଁ ଦେଇ ବଇକୁଣ୍ଠରେ ଚିରଂଜୀବୀ ହୋଇ ବସିଥାଉ ।

କାଠପାଳନ୍ଥୁଆଙ୍କର ଏଇ ଜାଲରେ ପଡ଼ି ମରିବା କଥାରେ — ଯେମିତି ସେଦିନର ଅଲେଖ ସାବୁତଙ୍କର ପିଲାଦୁହିଁଙ୍କର କଇଁଫୁଲ

ନଶାରେ ଅସହାୟ ଭାବରେ ଅକାରଣ ପାଣିରେ ବୁଡ଼ି ମରିବାର କରୁଣ ସ୍ମୃତି ଲୁଚିରହିଛି, ଆଜ ତା' ସଙ୍ଗେ ସଙ୍ଗେ ନିଜର ପିଲାଙ୍କ ଲାଗି ମଧ୍ୟ ଏକ ଅସହାୟ ଆତଙ୍କ ମନକୁ ବିକଳ କରିଦେଉଛି । ଆଜି ମଧ୍ୟ ଏହିଭଳି ଅପମୃତ୍ୟୁ ବରଣ କରିଥିବା ସଂସାରର ଯାବତୀୟ ପିଲାମାନଙ୍କର ମାଆମାନଙ୍କ ଲାଗି ମନ ବେଦନାରେ ବିକଳ ହୋଇ କାନ୍ଦିଉଠୁଛି । ଆହା ! ବାପା ମାଆ ଫେର୍ କେମିତି ଛାତି ଧରିବେଟି !!

କପୋତ ପିଲାଏ ଜାଲରେ ପଡ଼ିପିବା କଥା ଶୁଣି ମନୁଆବୋଉ ବିକଳରେ କାନ୍ଦିଉଠିଲେ । ଆହା ! ସେ ମାଆ ଛାତି କେମିତି ସହିବ !!

ତୀର୍ଥବାସୀବାବୁ କିନ୍ତୁ ବୈରାଗ୍ୟ-ରସରେ ନିମଜ୍ଜିତ ହୋଇ ପରମ ଉତ୍ସାହରେ ଅବଶିଷ୍ଟ କଥା କହି ଚାଲିଥାନ୍ତି ।

ସେଇଠୁଁ କ'ଣ ହେଲା ନା – ମାଆ କପୋତୀ ଫେରିଆସି ସେ ଦୃଶ୍ୟ ଦେଖିଲା । ପିଲାଏ ବନ୍ଧନରେ ପଡ଼ି ଛଟପଟ ହୋଇ କାନ୍ଦୁଛନ୍ତି ମାଆ ମନତ—ସେଥିରେ ପୁଣି ସ୍ୱଭାବେ ପକ୍ଷୀଜନ୍ମ ପାଇଛି । ଘୋର ମାୟାରେ ସତ୍ରୁଛି । ବୈରାଗ୍ୟ ବୁଦ୍ଧି କାହୁଁ ଆସିବ ? ବସ୍ତୁର ମାୟାକୁ ମୃତ୍ୟୁ ବୁଝିପାରି ନାହିଁ । ଭାବିଲା—ପିଲାଏ ଯେବେ ମୋର ଗଲେ, ମୁଁ ଥାଇ କେତେ, ନ ଥାଇ କେତେ ? ବିଚାରୀ ଶୋକ ମୋହରେ ହତଜ୍ଞାନ ହୋଇ ନିଜେ ଜାଲ ଭିତରକୁ ଡେଇଁ ପଡ଼ିଲା ।

ମନୁଆବୋଉ ଏଥରକରେ ଉଲ୍ଲସିତ ହୋଇଉଠିଲେ । ତାଙ୍କର ଛାତିରୁ ଗୋଟାଏ ଭାରି ପଥର ଓହ୍ଲାଇଗଲା । ସେ ଆଶ୍ୱାସନାର ଆନନ୍ଦରେ ଚଞ୍ଚଳ ହୋଇ ଗୋଟାଏ ତାଳି ମାରିଦେଇ ହସିକରି କହି-ଉଠିଲେ –

ଯାଃ ଚାଲିଯା – । ଓହୋ !! ପ୍ରଭୁ ହେ ! ଭଲ ହେଲା – ଭଲ କଲା ।

ତାଙ୍କର ମନ ଭିତରେ କପୋତୀର ଏହି ଆତ୍ମୋତ୍ସର୍ଗ ଯଥେଷ୍ଟ ଶାନ୍ତି ଓ ତୃପ୍ତି ଜଣାଇଦେଲା । ସେ ଭାବିଲେ—ଯାହାହେଉ ଭଲ କଲା । ନିଜେ ତ ପ୍ରାଣ ହରାଇଦେଲା । ଗଲା – ସବୁ କଷ୍ଟ ସଙ୍ଗେ ଗଲା । ଜୀବନ ରହିଲେ ସିନା ଏ ଯାତନା ଭୋଗିବ ! ହେଲେ ପକ୍ଷୀଟିଏ ବୋଲି ସିନା

ଏକଥା କରି ପାରନ୍ତି ! ! ମଣିଷ ଏକଥା କରିପାରିବ କି ? ମହେନ୍ଦ୍ରବାବୁଙ୍କ ସ୍ତ୍ରୀ ଏକଥା କରିପାରନ୍ତି କି ?ସେ ଏବେ ଗୃହଧର୍ମ ରକ୍ଷାକରୁଛନ୍ତି । ଏକା ବର୍ଷକେ ତିନି ତିନୋଟି ପିଲା ଯମମୁହଁରେ ଗଲେ । ଗୋଟେ ରୋଗରେ ଗଲା । ଗୋଟାଏ ଗଲା ଯୁଦ୍ଧଭୂଇଁରେ ସେଇ କୋଉମୂଲକରେ କାଶ୍ମୀରରେ । ଆଉ ଯୋଡ଼ ପୁଅଟା ମନରେ ଓଲଟି ମଲା – ଆହା ! କଅଣ୍ ସୁନ୍ଦର ପୁଅ ! ଆମର ମନୁଆ ସାଙ୍ଗର ତ । ( ପ୍ରଭୁ ହେ ! ଜଗନ୍ନାଥେ ବଳିଆର ଭୁଜ ! ଅକିଞ୍ଚନଙ୍କୁ ତୁଇ ଭରସା) ପାଠ ପଢ଼ିଲା, ପାସ୍ କଲା, ସାତ ସମୁଦ୍ର ତେର ନଈ ପାରିହୋଇ ସାଇବହୋଇ ଦେଶକୁଫେରିଲା । ହଜାରେଟଙ୍କା ଦରମା ଦେଲା ସରକାର । ଆହା ! ଫେର ତା' କପାଳରେ ଥିଲା, ମନରେ ଓଲଟି ତା' ଜୀବ ଯିବ । ପ୍ରଭୁ ହେ ! ନୀଳାଚଳନାଥେ ! ତୁଇ ଭରସା । ମହେନ୍ଦ୍ର ବାବୁଙ୍କ ସ୍ତ୍ରୀ ତ ଫେର୍ ଗୃହ ଧରି ବଞ୍ଚୁଛନ୍ତି । ପୁଅ ସାଙ୍ଗରେ ମଶାଣିକୁ ଗୋଡ଼ାଇ ଗଲା କି ? ବର୍ଷେ ଯାଏ ପାଗଳୀ ହୋଇଗଲା—ମୁଣ୍ଡ ବାଡ଼େଇଲା —ବାଳ ଛିଣ୍ଡାଇଲା—ଖାଇଲା ନାହିଁ, ପିଇଲା ନାହିଁ··· । ହେଲେ ଆଉ ପୁଅର ଚିତାକୁ ଡେଇଁ ପାରିଲା ? ଅଟକିଗଲା । ଧନ୍ୟ କହିବା ସେ କପୋତୀକି ! ପକ୍ଷୀ ଜନ୍ମ ପାଇଲେ କ'ଣ ହେଲା ? ଘର ଗୃହ ତାର । ହେବ ନାହିଁ ? ସେମାନେ କ'ଣ କଳି ଯୁଗର ପକ୍ଷୀ ହୋଇଛନ୍ତି ? ସତ୍ୟ ଯୁଗର ପକ୍ଷୀ । ଶାସ୍ତ୍ରରେ ଲେଖିଛନ୍ତି ଋଷିଜନମାନେ—ସେମାନେ ହେଲେ ବିଷ୍ଣୁ ଅଂଶୀ···

ମନୁଆବୋଉ ଏହିସବୁ ପାର୍ଥିବ ଓ ମାୟିକ ଚିନ୍ତା ଆଉ ତମାନୁଭବରେ ଉବୁଡ଼ୁବୁ ଖାଉଛନ୍ତି; ମାତ୍ର ତୀର୍ଥବାସୀ ବାବୁ ସେହିଭଳି ବୈରାଗ୍ୟରସରେ ନିମଜ୍ଜିତ ହୋଇ ପରମ ଉଲ୍ଲାସରେ କହି ଗ୍ଭଲିଛନ୍ତି— ଗାଇ ଗ୍ଭଲିଛନ୍ତି –

ସେଇଠୁ ବାପ କପୋତ ଆସି ଦେଖେ ତ—ଜାଲ ଭିତରେ ତା' ସଂସାର ପଡ଼ିଗଲାଣି । ସେ ତ ସ୍ତ୍ରୀପ ଆତୁର ମୂଢ଼, ତାକୁ ତ ସ୍ତ୍ରୀପ ସବୁଠାରୁ ବେଶୀ ମାୟା ଘାରିଛି । କପୋତ ନାରୀ ଜନ୍ମ ପାଇଛି—

"ସ୍ଵଭାବେ ନାରୀ ଜନ୍ମ ପାଇ
ଧର୍ମ ଅଧର୍ମ ନ ଜାଣଇ ।"

ସ୍ୱେ କନ୍ତୁ ସ୍ୱାପ ଆକ୍ଷି ଥାଇ ଅନ୍ଧ, ଜୀବ ଥାଇ ଜଡ଼ । ମୃତ୍ଯୁ ବସ୍ତୁରକ୍--ମୋର ପିଲାଏ ତ ଗଲେ - ମୋର ଘରଣୀ ତ ଗଲ--ଏଭଳି ପତିବ୍ରତା ନାରୀ—ଏ ତ ମୋର ପ୍ରାଣର ପ୍ରାଣ--ମୋର ଆତ୍ମା ଠାରୁ ବଳି—ସ୍ୱାକୁ ଛାଡ଼ି ମୁଁ ଅବା ବଞ୍ଚିବ କେମନ୍ତେ ? ଆଉ ଏ ଜୀବନ ଥିଲେ କେତେ, ନ ଥିଲେ ବା କେତେ ? କପାଇଁ ବା ରହବ ଆଉ ଏ ସଂସାରରେ ? କେଉଁ ସୁଖ ବା ଆଉ ମିଳବ ? କଏ ବା ଆଉ ସୁଖ ଦେବ ?

ସ୍ୱାପ ମୃତ୍ଯୁ ପକ୍ଷୀ ବୁଝିପାରିଲା ନାହିଁ ଯେ—ଏ ସଂସାରରେ କେହି କାହାର ନୁହଁଇ—ସବେ ଚଳିବେ କାଳବଳେ—ଯେଝା ସୁଖେ ଯେ ଚାଲିଯିବେ । ଆସିଥିଲୁ ଏକା ମନ—ଯିବୁ ପୁଣି ଏକା । କ ପିଲା କଏ କାହାର ? କ ଘରଣୀ କଏ କାହାର ? ସମସ୍ତେ ଯଦ ଆଗରୁ ତୋ ଆକ୍ଷି ଆଗରେ ଚାଲିଗଲେ ଭଲ ହେଲା—ଏଣିକ ତୁ ଛୁଏଁ ଛୁଏଁ ମୁକ୍ତ ପୁରୁଷ - ଭଗବାନ୍ ଭଲ କଲେ – ଆଗରୁ ଜାଲ ଛିଣ୍ଡାଇଦେଲେ— ଏଣିକ ବୈରାଗ୍ୟ ନେ—ତୀର୍ଥବାସ କର – ଧର ଗୁରୁପାଦ – କର ହରିନାମ – ତରିଯାଅ ଏ ମାୟା-ସଂସାରରୁ; କନ୍ତୁ ସେ ତ ସ୍ୱାପ ମୃତ୍ଯୁ— କ'ଣ କଲା ଜାଣିଲ ??

ମାତ୍ର ମନୁଆବୋଉ ଗଳ୍ପ ଲାଗି ବଶେଷ ଚନ୍ତିତ ନୁହନ୍ତି । ତାଙ୍କର ସେବୁ ଉତ୍କଣ୍ଠାର ପରିସମାପ୍ତି ହୋଇଗଲା । ବରଂ ଏକ ପ୍ରକାର ନିଶ୍ଚିନ୍ତ ସେ । ପିଲାଏ ମଲେ, ଆଉ ପିଲାଙ୍କ ସାଙ୍ଗେ ସାଙ୍ଗେ ମାଆ ବି କୋରେ ଫାଶ ଲଗାଇଦେଲା । ବାସ – ଆଉ କ'ଣ ବା ବାକି ରହିଲା କଥା ? ଏଣିକ ଆଉ ସେ ଯାତନା ଭୋଗିବାକୁ କଏ ବଞ୍ଚି ରହିଲା ଯେ !! କଥା ଶୁଣିବାକୁ ବା ଆଉ କଏ ଅଛି ? ସତେ କ ମନୁଆବୋଉ ନିଜେ ବି ଆଉ ନାହାନ୍ତି । ତାଙ୍କ ପିଲାଙ୍କ ସାଙ୍ଗରେ ସେ ମଧ୍ୟ ଏ ଇହ ସଂସାରରୁ ବିଦାୟ ନେଇ ଯାଇଛନ୍ତି । ଆଉ କଛି ନାହିଁ । ଆଉ ସୁଖ ନାହିଁ କ ଦୁଃଖ ନାହିଁ । ଆଶା ନାହିଁ କ ନିରାଶା ନାହିଁ । ଯାତନା ନାହିଁ କ ହରଷ ନାହିଁ ।

ମାତ୍ର ସ୍ୱାମୀ ଯେତେବେଳେ ପୁଣି କଥା ଆରମ୍ଭ କଲେ, ଆଉ ପଚାରିଲେ - କପୋତ କ'ଣ କଲା ଜାଣିଲ ? ଏବଂ ତାଙ୍କୁ ଅନ୍ୟମନସ୍କ ଥିବାର ଦେଖି ବାରମ୍ବାର ସେଇ କଥା ତାଙ୍କୁ ପଚାରି ଲାଗିଲେ –

ଆରେ ହେ – ଶୁଣ ମ – ହେଉଛି – ଶୁଣୁଚ ନା ନାହିଁ ?
ମୂଢ଼ କପୋତ କ'ଣ କହ ଆଉ ଶୁଣନା !!

ମନୁଆବୋଉଙ୍କର ପରଲୋକଗତ କଣ୍ଟକିତ ଆତ୍ମା ପୁଣି ପୃଥିବୀକୁ ଫେରିଆସିଲା । ତାଙ୍କର ହୃଦୟ ଭିତରେ ପୁଣି ଏକ ନୂତନ ପାର୍ଥିବ ବେଦନାର ସ୍ରୋତ ଝରଝର ହୋଇ କ୍ଷୀଣ ଧାରରେ ବହିଆସିଲା । ସେ ଭାବିଲେ – ଅଛି – ଅଛି – ଏହା ପରେ ମଧ୍ୟ କଥା ଅଛି । ଏହା ପରେ ମଧ୍ୟ ବେଦନା ଅଛି । ପିଲାଙ୍କ ଚିତା ଉପରେ ମାଆ ଛାତିପଡ଼ି ଭସ୍ମ ହୋଇଗଲା ପରେ ମଧ୍ୟ – ଏହି ପୃଥିବୀର ସବୁ ଯାତନା, ସବୁ ବେଦନା ସରିଯାଏ ନାହିଁ । ଭସ୍ମୀଭୂତ ଦେହରୁ ପଳାୟନତତ୍ପର ଆତ୍ମାକୁ ପୃଥିବୀ ଛାଡ଼ିଦିଏ ନାହିଁ ପ୍ରସ୍ପର ଦୂରକୁ । ସ୍ୱର୍ଗ ତ ଟାଣିନିଏ ନାହିଁ ପୂରା-ପୂରି ତା' ଭିତରକୁ । ଏଇ ପ୍ରପଞ୍ଚ ପୃଥିବୀର ଅଳ୍ପ ଉପରେ ଗୋଟାଏ ଅସନ୍ତୁଷ୍ଟ ଚେତନା, ପ୍ରେତର କରୁଣ ବେଦନା ନେଇ ଆଖି ନ ଥାଇ ପୃଥିବୀ ଆଡ଼କୁ ଚାହିଁ ରହିଥାଏ । କାନ ନ ଥାଇ ପୃଥିବୀର ସବୁ କଥାକୁ କାନେଇଥାଏ—ଆଉ ନାକ ନ ଥାଇ ଦୀର୍ଘଶ୍ୱାସ ଛାଡୁଥାଏ—ନିରୁପାୟ ଅସହାୟ କରୁଣ ଦୀର୍ଘଶ୍ୱାସ ।

କଥା ସରି ନାହିଁ । ବ୍ୟଥା ସରି ନାହିଁ । ସବୁ କଥା ଶୁଣିବାକୁ ଓ ସବୁ ବ୍ୟଥା ଭୋଗିବାକୁ ଆଉମାତ୍ର ଜଣେ ଯେ ଏ ପୃଥିବୀରେ ବଞ୍ଚି ରହିଛି । ଶେଷ ପୌଷର ଉଦାହାଣିଆ ଖରାରେ ଜୀର୍ଣ୍ଣକମ୍ପିତ ସେଇ ପଞ୍ଜରଝୁଡ଼ା ନିଃସଙ୍ଗ ଅପରାହ୍ନରେ ସଂଧ୍ୟାପର୍ଯ୍ୟନ୍ତ ଦୁଇ ଆଣ୍ଠୁକୁ ଦୁଇ ହାତରେ ଜାକି ଧରି ବାଡ଼ପଟ ପିଣ୍ଡାରେ ଧୂସର ପଞ୍ଜରଝୁଡ଼ା ଥୁଣ୍ଟା ଗଛମାନଙ୍କ ଆଡ଼କୁ ଚାହିଁ ଚାହିଁ ଜୁଲୁଜୁଲୁ ଥରୁଥରୁ ବୁଢ଼ୀଟିଏ ତା'ର କେରଡ଼ିଆ ଆଖିରେ ଉଦାସ ଚାହାଣିର ଛାଇ ପକାଇ ଆକାଶ ଆଡ଼କୁ ମୁହଁ କରି ବସିଥାଏ – କଥା ଶୁଣୁଥାଏ ମନେ ମନେ—ଗୁଣି ହେଉଥାଏ – ବ୍ୟଥା ସହୁଥାଏ । ପିଲାଏ ମରିଛନ୍ତି—ଘର ଭିତରକୁ ଶୂନ୍ୟକରି ଘରଣୀ ବି ମରିଛି ସେମାନଙ୍କ ସାଙ୍ଗରେ । ସେମାନଙ୍କ କଥା ସରିଯାଇଛି । ମାତ୍ର ସେମାନଙ୍କ କଥା ଯେଉଁଠି ସରିଛି, ବରଂ ଏକୁଟିଆ ଥୁଣ୍ଟା ବୁଢ଼ୀଟିର କଥା ଠିକ୍ ସେଇଠାରୁହିଁ ଆରମ୍ଭ ହୋଇଯାଇଛି । ସେମାନେ ସବୁ ଚାଲିଗଲେ ଦୁଃଖ-ଯନ୍ତ୍ରଣାକୁ ଠକିଦେଇ । ଦୁଃଖ ସେମାନଙ୍କୁ ଧରି

ପାରିଲା ନାହିଁ । ମାଝ ଧରି ନ ପାରିବାର ବ୍ୟର୍ଥତାରେ ବହୁ ଗୁଣରେ ହ୍ରସ୍ୱ ହୋଇ ସେମାନଙ୍କ ପଛରୁ ହଟିଆସି—ଲେଉଟାଣି ଯାହାକୁ ସେ ଧରିନଥିଏ ସହସ୍ର ଗୁଣ ଆକ୍ରୋଶରେ—ସେ କହୁଚି ବଡ଼ବଡ଼ ଏଇ ଏକୁଟିଆ ନିଃସଙ୍ଗ ଅଣ୍ଡା ବୁଢ଼ାଟି । ତା'ର ସଂସାରର ସବୁତକ ବେଦନା ଶେଷରେ କେବଳ ତାକୁଇ ଭୋଗିବାକୁ ପଡ଼େ । ତା'ର ଦୁର୍ଭାଗ୍ୟକୁ ତା'ର କପାଳରେ ଲଞ୍ଛିତ ହୁଏ ସମଗ୍ର କୃଷ୍ଣମୃତିର ଦୁଃସହ ବ୍ୟଥା ଭୋଗ । ତା'ରି ଗୁରୁପଟେ ଧନବନ୍ତ ଖାଁ ଖାଁ କରି ଗୋଡ଼ାଇଥାଏ ଦୁଃଖ—ଗୋଟାଏ ପୃଥିବୀର ଦୁଃଖ ।

କଥା ତେଣୁ ସରେ ନାହିଁ ସେତିକରେ । କେବଳ ଅଧ୍ୟାୟ ବଦଳେ । ଏଣିକି ସେଇ ବୁଢ଼ାଟିଇ କେବଳ କଥା କହେ । ସେହି କେବଳ କଥା ଶୁଣେ । ଆଜି ସେଇ କେବଳ ବ୍ୟଥା ପାଏ ।

କିନ୍ତୁ ଖାଲି କ'ଣ ସେଇ ପ୍ରକୃତରେ ଏକା ଏକା ବ୍ୟଥା ପାଏ ?

ମନୁଆବାଉଙ୍କର ପାର୍ଥିବ ରସସିକ୍ତ ବମୂଢ଼ କାମନା ଲୋକରେ ଏକ ଅବୋଧ ଅନୁଭୂତିର କରୁଣା-ରଙ୍ଗିଣୀ ବାଜଉଠିଲ, ଯାହାର ଅର୍ଥ ହେଉଛି—

ସେଇ ଏକା ଭୋଗେ ନାହିଁ ଗୋ, ଆଉ ଜଣେ ବି ଭୋଗେ – ଆଉ ଜଣେ ବି ପାଏ – ସେହି ନିଃସଙ୍ଗ ବ୍ୟର୍ଥ ଜୀବନର ନିର୍ବାଣପ୍ରାୟ ବେଦନାଗ୍ନିର ଉତ୍ତାପରେ ଆଉଜଣେ ବି ଦଗ୍ଧ ହୁଏ ! ପୃଥିବୀଠାରୁ ଟିକିଏ ଉଚ୍ଚରେ ଭାସି ବୁଲୁଥାଏ ତା'ର ଅପାର୍ଥିବ ବାୟୁବୀୟ ସତ୍ତା । ନିଃସଙ୍ଗ ବୁଢାଟିର ପ୍ରତିଟି ବେଦନାମଥିତ ଦୀର୍ଘଶ୍ୱାସର ଧକ୍କା ସେ ସହ୍ୟ କରୁଥାଏ । ସେଇ ତ ହେଉଛି ଅଗରୁ ପିଲଙ୍କ ସାଙ୍ଗରେ ଚାଲି ଯାଇଥିବା ବଗୁଷା ବୁଢ଼ୀଟିର ପ୍ରେତାତ୍ମା ।

ସବୁ ଦେଖୁଥାଏ । ସବୁ ସେ ଶୁଣୁଥାଏ । ହେଇଟି ସେଠି— ଠକୁଠକୁ ହୋଇ ବାଡ଼ି ଧରି ଅଣ୍ଟାଳି ଅଣ୍ଟାଳି ବୁଢ଼ାଟି ଘର ଭିତରକୁ ପଶୁଛି – ଏରୁଣ୍ଡି ବନ୍ଧକୁ ଝୁଣ୍ଟୁଛି – କଚାଡ଼ି ପଡ଼ୁଛି, ପୁଣି ଉଠୁଛି – ଧାପ ଲଗାଉଛି – ଚୁଲି ଲଗାଉଛି, ଫୁଙ୍କୁଛି—ଚୁଲି ଜଳୁଛି – ଚୁଲି ପାଖେ ସେହିଭଳି ଚୁଲି ନିଆଁକୁ ଚାହିଁ ଚାହିଁ ଆଣୁ ଜାକି ଅସହାୟ ଭାବରେ ବୁଢ଼ା ମାଙ୍କଡ଼ ଭଳି ବସିଛି । ଧୂଆଁରେ ନାକରୁ ପାଣି ଗଡ଼ୁଛି – ଆଖିରୁ

ପାଣି ଝରୁଛୁ । ସେହି ଅସହାୟ ନିସ୍ତବ୍ଧ ନିଃସଙ୍ଗ ଅନ୍ଧକାର ଭିତରେ ବିଚରା ବୁଢ଼ାଟି !!

ସେତେବେଳେ ଏଇ ପୃଥିବୀର ଅଳ୍ପ ଉପରେ ଭାସି ଭାସି ବିଚରଣି ବୁଢ଼ୀଟିର ସେଇ ସ୍ୱର୍ଗଗତା ବାୟୁବୀୟ ପ୍ରେତ ସତ୍ତା ବିଚରା ବୁଢ଼ାଟିର ଏହି ପାର୍ଥିବ ଯାତନାକୁ ଦୂର କରିବା ଲାଗି କି ନିଷ୍ଫଳ ନିଷ୍କ୍ରିୟ ଆଉ ନିରୁପାୟ ବେଦନାରେ ଛଟପଟ ହୋଇଉଠେ — ସେ କଥା ବା କିଏ ଜାଣେ ?

ମନୁଆବୋଉ ଏହିଭଳି ଏକ କଳ୍ପିତ ନୂତନ ବେଦନାର ରସାନୁଭୂତିରେ ବିହ୍ୱଳ ହୋଇପଡ଼ିଲେ । ତାଙ୍କର ମନେ ହେଲା — ସତେ କି ସେ ସ୍ୱାମୀଙ୍କୁ ଏଠି ଏମିତି ଏକୁଟିଆ ଛାଡ଼ିଦେଇ ଆଗରୁ ଚାଲିଯାଇଛନ୍ତି ଅପରାଧିକ । ଆଜି ପୃଥିବୀଠାରୁ ଅଳ୍ପ ଉଚ୍ଚରେ ଅନ୍ତ-ରୀକ୍ଷରେ ପ୍ରେତ ରୂପରେ ଥାଇ ସେ ଦେଖୁଛନ୍ତି ନିରୁପାୟ ଭାବରେ— ନିଃସଙ୍ଗ ଅସହାୟ ବୃଦ୍ଧ ସ୍ୱାମୀଙ୍କର ଅନେକ ପାର୍ଥିବ ଦୁରବସ୍ଥା !!

ଗାଧୋଇ ଆସି ସେ ସେମିତି ଠିଆହୋଇଛନ୍ତି—
ଭାତ ଗଣ୍ଡିଏ ବାଢ଼ିଦେବାକୁ କେହି ନାହିଁ ।
ଦାନ୍ତ ଘଷି ସେ ସେମିତି ବସିଛନ୍ତି—
ଚୂଡ଼ା ଟିକିଏ ଦେବାକୁ କେହି ଆସୁ ନାହାନ୍ତି ।
ଖଟ ଉପରେ ପଡ଼ି ସେ ଛଟିପିଟି ହେଉଛନ୍ତି—
ଗୋଡ଼ରେ ହାତ ଟିକେ ମାରିଦେବାକୁ କେହି ନାହିଁ ।
ମୁହଁ ଶୁଖାଇ ସେ ଏକୁଟିଆଟି ମନମାରି ବସିଛନ୍ତି—
ତାଙ୍କ ପାଖରେ ଆଜି କେହି ନାହିଁ ।

ମନୁଆବୋଉ ହଠାତ୍ ଖୁବ୍ ବିଚଳିତ ହୋଇପଡ଼ି ଉତ୍ସୁକ ହୋଇ ଚମକିଲା ଭଳି ପଚାରିଦେଲେ—

ହଁ ! କ'ଣ କଲାଟି ସେ କପୋତ ?

ତୀର୍ଥବାସୀବାବୁ କିନ୍ତୁ ପୂର୍ବବତ୍ ବୈରାଗ୍ୟରସରେ ନିମଜ୍ଜିତ ହୋଇ କହି ଚାଲିଛନ୍ତି —

କ'ଣ ଆଉ କରିବା ? ଯାଉ ମୂଢ଼ ଜୀବ ! ଭାର୍ଯ୍ୟା କଥା ଭାବ ଭାବ — ଭାର୍ଯ୍ୟା ଗୁଣ ସୁମରି ସୁମରି — ବାହୁନି ବାହୁନି ମାୟାରେ ଟାଣିହୋଇ

ଆସି ଗୁଆଁକୁ ଜାଲରେ ପଡ଼ିଗଲ—ଆଉ କ'ଣ ??? ଦେଖିଲ ତ ?? ଏଠି କ'ଣ ହେଲ ? ବାପେ ଏଠି କଅଣ ମରମ ବୁଝାଇଲେ—

(ଆରେ) "ଏ ରୂପେ-ଏ-ଏ-ଏ ହେତୁ ଅବଲମ୍ବି
ସଂସାରେ-ଏ-ଏ-ଏ ବନ୍ଧନ କୁଟୁମ୍ବୀ ।
ଦୁଃଖ ସ-ଅ-ଅ-ଅହଇ ଏ ଶରୀରେ
ନିତ୍ୟ କୁ-ଉ-ଉ-ଉଟୁମ୍ବ ପୋଷିବାରେ ।
ନରକେ-ଏ-ଏ-ଏ ଆକୁଳ ହୃଦୟ
ଏଣୁ ବୋ ଓ-ଓ-ଓଲାଇ ଦୁଃଖମୟ ।
ଧର୍ମେ ବଂ-ଅଁ-ଅଁ-ଶତ କଳେବର
ମଜ୍ଜଇ-ଇ-ଇ-ଇ ଏ ଘୋର ସଂସାର ।
ତୁ ଏବେ-ଏ-ଏ-ଏ ବୁଝ ମୋ ବଚନ........"

ତୀର୍ଥବାସୀ ବାବୁ ସଂସାରର ମାୟାରୁ କପରି ମୁକ୍ତ ପାଇବାକୁ ହେବ, ତା'ର ଭଗବତ୍ତତ୍ତ୍ୱ ବ୍ୟାଖ୍ୟା ସରଳ ଭାବରେ ବୁଝାଇ ବସିଲେ ।

ମାଷ ମନୁଆବୋଉ ଟଲ୍ଗର ଏକ୍ସ ସମ୍ପୂର୍ଣ୍ଣ ସହଜ ଓ ସମୁଚିତ ପରିବେଶନର ଆନନ୍ଦରେ ଅଧୀର ହୋଇଉଠିଲେ । ପରମ ରସତୃପ୍ତିରେ ତାଙ୍କ ଅକ୍ଷି ଦୁଇଟି ଲୁହରେ ଭରିଉଠିଲ । ସତେ କି ସେ ଏକ ପରମ ମିଳନାତ୍ମକ ନାଟକ ଦେଖିଦେଲେ । ସେ ଭାବିଲେ—

ବାପ୍—ସରଳ କଥା । ଯାହାକୁ ସେ କହିବ ଶାସ୍ତ୍ର । ସମସ୍ତେ ଏକା ସାଙ୍ଗରେ ବୁଲିଗଲେ । ଏ ମଞ୍ଚମଣ୍ଡଳରୁ ସିନା ବୁଲିଗଲେ ଏକାସାଙ୍ଗରେ, ସେଠି ସେପଟେ ସ୍ୱର୍ଗରେ ତ ମିଳିଗଲେ ଏକାଠି । ସତ କଥା । ଋଷିମାନେ ଯାହା ବୁଝାଇଛନ୍ତି, ଠିକ୍ ବୁଝାଇଛନ୍ତି । ସବୁ ମରିବ ତ ଏକା ସଙ୍ଗରେ ମରିବ । ସ୍ୱର୍ଗରେ ସବୁ ବସିବ ଏକାଠି । କିଏ କାହାକୁ ଛାଡ଼ିକରି ଯିବନି କି କିଏ କାହାକୁ ଛାଡ଼ିକରି ଏକା ରହିବ ନାହିଁ । ତେବେ ସେମିତି ପୂର୍ବ ଜନ୍ମର ତପସ୍ୟା ଥିଲେ ସିନା ଏ ଯୋଗ ପାଇବ !

ମନୁଆବୋଉ ଆନନ୍ଦରେ ଉଲ୍ଲସିତ ହୋଇ ପରମ ନିଶ୍ଚିନ୍ତରେ ଆଉ ଖଣ୍ଡିଏ ପାନ ଡବାରୁ କାଢ଼ି ପାକୁଆ ପାଟିରେ ଗୁଞ୍ଜି ଦଳେଇ ଲଗିଲେ ।

କିନ୍ତୁ ଘାଟିବାସୀ ବାବୁ ତ ଭାଗବତବର୍ଣ୍ଣିତ ଏଇ କପୋତ ଉପାଖ୍ୟାନରୁ ଏମିତି ଗୋଟେ ସଂସାରିକ ଭାବରସ ସୃଷ୍ଟି କରିବା ଲାଗି ଗପଟିର ଅବତାରଣା କରି ନ ଥିଲେ ! ସେ ତ ନିଜେ ବର୍ତ୍ତମାନ ବୈରାଗ୍ୟରସରେ ନିମଜ୍ଜିତ ! ସେ କେବଳ କଥାଟିର ଆଧ୍ୟାତ୍ମିକ ଓ ମାର୍ମିକ ଅର୍ଥଟି ମୂର୍ଚ୍ଛା ମୋହମାୟାଗ୍ରସ୍ତା ପ୍ରପଞ୍ଚଜଞ୍ଜାଳାଭିଭୂତ ପତ୍ନୀଙ୍କ ଆଗରେ ଉପସ୍ଥାପନ କରି ତାଙ୍କର ମନକୁ ଏହି ଜଞ୍ଜାଳ-ଜମ୍ବାଳ-ପରିପୂର୍ଣ୍ଣ ନିମ୍ନ ପାର୍ଥିବ ସ୍ତରରୁ ଆଉ ଏକ ସୁଉଚ୍ଚ ପ୍ରମୁକ୍ତ ଚେତନାର ଆଧ୍ୟାତ୍ମିକ ସ୍ତରକୁ ଟାଣିନେବାକୁ ଚେଷ୍ଟା କରୁଥିଲେ । ତେଣୁ ସେ ପତ୍ନୀଙ୍କର ବର୍ତ୍ତମାନ ମନୋଭାବ ବା ମାନସିକ ପ୍ରତିକ୍ରିୟା ପ୍ରତି ଆଦୌ ଅବଧାନ ନ ହୋଇ ତାଙ୍କର ଧାରାରେ କହିଗଲେ—

ବୁଝିଲ ? ବୁଝିଲ ତ ?

"ଏ ରୂପ-ଏ-ଏ-ଏ ସ୍ନେହ ଅବଲମ୍ବି

ସଂସାରେ-ଏ-ଏ-ଏ ବନ୍ଧନ କୁଟୁମ୍ବୀ ।"

ଏଇ ମାୟା ବନ୍ଧନରେ ପଡ଼ି—ନିତ୍ୟ କେବଳ ପୁଅ, ବୋହୂ, ଝିଅ, ନାତି, ନାତୁଣୀ ହୋଇ ଦିନେ ନିଜେ ବି ସେଇ ଜାଲରେ ପଡ଼ି ମରିବ । ସଂସାରର ବିଷୟାବିଷରେ ଜଡ଼ିତ ହେଲେ ଏ ଶରୀର କେବଳ ଦୁଃଖରେ ଭୋଗିବ । ଅବଧୂତ ତେଣୁ ଯଦୁ ରଜାଙ୍କୁ ବୁଝାଉଛନ୍ତି—ହେ ରାଜନ୍ ! ଏଇ ଯେଉଁ କପୋତ ପକ୍ଷୀ ଉପାଖ୍ୟାନ କହିଲି, ଏ କଥା ଶୁଣି ତୋର ମନ ସ୍ଥିର କର । ଏଇ ଦୁର୍ଲଭ ମନୁଷ୍ୟ ଦେହ କାହା ପାଇଁ ? ପୁଅ, ଝିଅ, ନାତି, ନାତୁଣୀଙ୍କ ପାଇଁ ଆଦୌ ନୁହେଁ । ଏଇ ଦେହ ହେଉଛି ମୁକ୍ତିର ଦ୍ୱାର ସ୍ୱରୂପ । ଏହି ମନୁଷ୍ୟ-ଦେହ ହେଉଛି ମୁକ୍ତିର ଦ୍ୱାର ସ୍ୱରୂପ । ଏହି ମନୁଷ୍ୟ-ଦେହ ପାଇଥାଇଁ କୋଉଥିଲାଗି ? ନା ଭବ ସମୁଦ୍ରରୁ ତରିବାଲାଗି; କିନ୍ତୁ ଏ କଥା ନ ବୁଝି—ଏ ମର୍ମ ଭିତରେ ନ ପଶି ଯଦି ଏହି ମଣିଷ-ଦେହ ପାଇଁ ବିଷ୍ଣୁପଦକୁ ନ ଭଜ କେବଳ ଏହି ମାୟା ସଂସାର ଭିତରେ ମଲ୍ଲୀପ ଏ ବୁଡ଼ିରହିବ, ତା' ହେଲେ ମୃତ୍ୟୁପରେ କୁମ୍ଭୀପାକ ନରକରେ ପାଣି ହେବା ସୁନିଶ୍ଚିତ ।

ବୁଝିଲ ମନୁଆବୋଉ ! ଦାସେ ଏଇଠି ବୁଝାଉଛନ୍ତି –

"ଏଣୁ ଏ ସଂସାର ସଙ୍ଗତେ
ପୀରତି ନ କରିବ ଚିତ୍ତେ ।
ଯେବେ କଳିବ ମୋହପାଶ
କପୋତ ପ୍ରାୟେ ଯିବ ନାଶ ।"

ସେଇଥିଲାଗି ମୁଁ ତୁମକୁ ବାରମ୍ବାର କହୁଛି – ମନୁଆବୋଉ ! ଏସବୁ ଘର – ପିଲାଙ୍କୁ ଛାଡ଼ିଦିଅ ତାଙ୍କ ସଂସାର – ଆଖିରୁ ଘୃତ ଖୋଲି ବଡ଼ ବୋହୂକୁ ଧରେଇଦିଅ – ନାତି ନାତୁଣୀଙ୍କ ବନ୍ଧନ ଛିଣ୍ଡାଇଦିଅ – ଚାଲ ଆମେ ପୁରୁଷୋତ୍ତମ – ନୀଳାଚଳକ୍ଷେତ୍ର ପଳେଇବା – ସେଠି ତ ପିତୃ ଅମଳରୁ ଦି ବଖରା କୁଡ଼ିଆ ଆମର ଅଛି । ସେଇଠି ଆମେ ରହିବା । ଶେଷକାଳଟା ସେଇଠି କଟେଇବା – ପ୍ରଭୁ ଚକାଡୋଳାଙ୍କୁ ଭଜି ଭଜି – ନୀଳଚକ୍ରବାନାକୁ ଚାହିଁ ଚାହିଁ ଆଖି ବୁଜିବା । ସେଇଠି ମଲେ ଯାଇବା ସ୍ୱର୍ଗଦ୍ୱାର । ମତେ ଆଉ ଏ ସଂସାର ଭଲ ଲାଗୁନାହିଁ । ହେଲେ ତୁମେ କଣ ମୋ କଥା ଶୁଣୁନ ?

ମନୁଆବୋଉ ସ୍ୱାମୀଙ୍କ ମୁହଁକୁ ଚାହିଁଲେ । କପୋତ ପକ୍ଷୀ ଉପାଖ୍ୟାନର ମିଳନାତ୍ମକ ପରିଣତିଟି ମନ ଉପରେ ଏକ କରୁଣ ମଧୁର ଅନୁଭୂତିର ଗମ୍ଭୀର ପ୍ରଭାବ ପକାଇଦେଇଛି । ହଠାତ୍ ସ୍ୱାମୀଙ୍କ ମୁହଁକୁ ଚାହିଁ ଦେଇ ମନୁଆବୋଉଙ୍କ ମନ ତାଙ୍କ ପ୍ରତି ହଠାତ୍ ସହାନୁଭୂତିଶୀଳ ହୋଇଉଠିଲା । ସେ ପରମ ନିଶ୍ଚିନ୍ତ ନିର୍ଭରଶୀଳତାରେ ଅଳ୍ପ ହସି କହିଲେ – 'ଚାଲନା ! ମୁଁ କ'ଣ ମନା କରୁଛି ?'

ତୀର୍ଥବାସୀ ବାବୁ ନିଜ ଜଙ୍ଘ ଉପରେ ପଟାସ୍‌କିନା ଗୋଟେ ଚଟକଣି ମାରି କହିଲେ –

"ଆରେ ଯଃ ! ! ଖାଲି କହିଦେଲେ ହେବ ? ଏମିତି ତ ବର୍ଷେ ହେଲଣି କହୁଛ; କିନ୍ତୁ ଯାଇପାରୁଛ କି ? ବନ୍ଧନ କାଟି ପାରୁଛ କି ?"

ମନୁଆବୋଉ କହିଲେ –

"ମଲା ! ମୋର ଆଉ କ'ଣ ବନ୍ଧନ ମ ? ମୋ ବନ୍ଧନ ତୁମେ । ମୋ ଡୋର ତୁମ ହାତରେ । ତୁମ ଡୋର ଜଗନ୍ନାଥଙ୍କ ହାତରେ ।

ଜଗନ୍ନାଥେ ତୁମକୁ ଟାଣିବେ । ତୁମେ ପୁଣି ମୋତେ ଟାଣିବ । ସେତେବେଳେ ମୁଁ ନ ଯାଇ ରହିବ କୋଉଠି ?”

ତୀର୍ଥବାସୀ ବାବୁ କହିଲେ ନରମ ହୋଇ—

“ସେ କଥା ମୁଁ ମାନୁଛୁ ମନୁଆବୋଉ ! ମୋ ହାତରେ ତୁମ ବଇତ୍ ଯେ, ମାତ୍ର ମୁଁ କ'ଣ ତୁମକୁ ଟାଣିନେଇ ପାରୁଛୁ ? କେଉଁଣ ଘର-ମାକର ବଇତ ଫାଶ ଲଗିଛି ଯେ ତୁମ ଗୋଡ଼ରେ । ମୁଁ ଟାଣିଲା ବେଳକୁ ସେମାନେ ଯେ ପଛରୁ ଭିଡ଼ ଧରୁଛନ୍ତି । ଶେଷରେ କହୁ ମୁଁ ଦେଖିଲଣି— ଏ ପରିସ୍ଥିତିରେ ତୁମେ ବ ଏଠି ଏମିତ ନରକରେ ସଡ଼ି ମରିବ— ମୋତେ ବ ସେଇ ଏକା ନରକରେ ପଡ଼ ସଡ଼ି ମରିବାକୁ ହେବ ।”

ମନୁଆବୋଉଙ୍କର ଅବଶ୍ୟ ଏପରି ମିଳିତ ଭାବରେ ନରକବାସ ଯୋଗରେ ଆପତ୍ତି ନାହିଁ । ନରକ ହେଲେ କ'ଣ ହେଲା ? ଯଦି ବୁଢ଼ା ତାଙ୍କର ସଙ୍ଗେ ସଙ୍ଗେ ସେଠି ରହିଥିବ ? ମାତ୍ର ସ୍ୱାମୀଙ୍କର ଆଜି ଏଇ କଥା ଭିତରେ କ'ଣ ରହିଥିଲା କେଜାଣି ତାଙ୍କର ମନ ସ୍ୱାମୀଙ୍କ ଲାଗି ଅତି ବିକଳ ହୋଇଉଠିଲା । ସତ କଥା ଏକା । ପୁରୁଷୋତ୍ତମ ଯିବା ଲାଗି ତାଙ୍କର ବର୍ଷେ ହେଲା ମନ ଡାକିଲଣି । ଖାଲି ତାଙ୍କରି ଯୋଗୁଁ—ଆଜି ଯିବା—କାଲି ଯିବା—ଏମିତ ହୋଇ ବର୍ଷେ ଗଡ଼ିଗଲାଣି । ସତ କଥା ଏ ଜଞ୍ଜାଳ କ'ଣ ତାଙ୍କୁ ଗୁଡ଼ିଛି ? ସେ ତ ସହଜେ ସ୍ତ୍ରୀ ଜାତି ।

“ସ୍ୱଭାବେ ନାରୀ ଜନ୍ମ ପାପ
ଧର୍ମ ଅଧର୍ମ ନ ଜାଣଇ ।”

ଗଲା ବର୍ଷ ଚନ୍ଦନକୁ ଯିବେ ବୋଲି ବାହାରିଥିଲେ ଯେ ବଡ଼ ବୋହୂର କ'ଣ ଅପରେସନ୍ ହେଲା—ସେ ପାଳି ଗଲା । ରଥକୁ ସାନ ନାତିଟାର ଲଳରକ୍ତ ଝାଡ଼ା ହେଲା । ତା' ମାଆ ଗୁଡ଼ିଲା ନାହିଁ । ଦୋଳ-ଯାତ୍ରାକୁ ବାହାରିଲେ—ସାନ ପୁଅ ଯୋଉଟା ଏବେ ବିଲାତରୁ ଫେରିଛି— ତା ଝିଅ ଆଉ ଦୁଇ ଭାଇଙ୍କୁ ନେଇ ବାହାରିଗଲା କାଶ୍ମୀର ଦେଶ— ସେ କୁଆଡେ ଯାଇ—କୋଉ ଦୂର ମୁଲକ । ଘରେ ଗୁଡ଼ିଦେଇ ଗଲେ ନାତି ନାତୁଣୀପଲଙ୍କୁ ତାଙ୍କ ଜିମାରେ । ସତ କଥା—ତାଙ୍କୁ ସମ୍ଭାଳି-ଥା ଆନ୍ତା କିଏ ? ବାଧ୍ୟ ହୋଇ ରହିବାକୁ ହେଲା । ଆଉ ଏକ ମାସ ଗଲେ ତ

ବାହାରଥିଲେ – ସବୁ ଟିକ୍ ଠାକ୍ ହୋଇଗଲ ! ଯାହା ଯେମିତି ସାଙ୍ଗରେ ନେବାର କଥା ସବୁ ବନ୍ଦୋବସ୍ତ ହୋଇଯାଇଥିଲା । ସେ ତ କହୁଥିଲେ – କିଛି ନଅ ନାହିଁ – ତାଙ୍କ ଜିନିଷ କିଛି ଛୁଅଁନା – ଆମର ପେନ୍ସନ୍ ଗଣ୍ଡାକ ଅଛି – ମନ୍ଦିରରୁ ଅଭଡ଼ା ଖାଇବା – ଦେଉଳବେଢ଼ାରେ ବସିଯାଇ ପଢ଼ୁଥିବା – ନାମ ଜପୁଥିବା ମାଳଚନ୍ଦନକୁ ଗୁହାରି ଗୁହାରି – ସେଇଠି ବୁଲିବା ଅଛି – ଆଉ କେତେ ଦିନ କି ?

ମନୁଆବୋଉଙ୍କର ଆଖି ଛଳଛଳ ହୋଇ ଯାଇଥିଲା – ସତ କଥା – ଏତେ ବଡ ଭାଗ୍ୟ ତାଙ୍କର ହେବ କି ? ଖୁବ୍ ମନ ଟାଣ କରି ବାହାରିଥିଲେ । ଯିବା ଦିନ ଉପରଓଳି ବୋହୂମାନେ କାନ୍ଦି କାନ୍ଦି ଆସି କୁଣ୍ଢାଇ ଧରିଲେ –

ମାଆ ! ଆମକୁ ଏମିତି ଅନ୍ଧାରିଆ କରି ଛାଡ଼ିଯାଉଛ ? ମାଆ ! ଆଜଯାଏ ହାତରେ ଭାତ ଖାଇ ଶିଖି ନ ଥିଲୁ । ଖୋଇ ଦେଉଥିଲ ।

ମାଆ ! ଆମେ ପିଲା ଛଅଟା ଏତେବଡ଼ ସଂସାର ଚଳେଇ ପାରିବୁ ? ମୁଣ୍ଡେଇ ପାରିବୁ ? ଲଦି ଦେଇ ଯାଉଛ ?

ନିଜ ନିଜର ଛୁଆମାନଙ୍କ ଆଡ଼କୁ ହାତ ବଢ଼ାଇ ଦେଖେଇ ଦେଖେଇ କହିଲେ –

ମାଆ ! ଏ ଦୁଷ୍ଟରିପଲଙ୍କୁ ଏଠି କିଏ ସମ୍ଭାଳିବ ?

ନାତି ନାତୁଣୀଏ ବି ବାଟ ଛାଡ଼ିଲେ ନାହିଁ । ଆଗରେ ଆସି ହାତ ଲମ୍ବି ଠିଆ ହେଲେ । ସାନ ନାତିଟା ଭାରି ଦୁରୁମା – ଗୋଟାଏ ଗାଈବନ୍ଧା ପଘା ଆଣି ଗୋଡରେ ବାନ୍ଧି କହିଲା – ଦେଖିବା ତୁ ବୁଢ଼ୀ କେମିତି ଯିବୁ ?

ସମସ୍ତେ କାନ୍ଦିଲେ । ସେମାନଙ୍କୁ ଗୁହାଁ ତାଙ୍କର ମଧ୍ୟ ଆଖି ଛଳ ଛଳ ହୋଇଉଠିଲା । ସେମାନଙ୍କୁ ଦେଖି ମନ ଜମା ଛାଡୁ ନଥାଏ । ଗୋଡ ଜମା ଆଗକୁ ଘୁଞ୍ଚୁ ନଥାଏ । ହେଲେ ଏଙ୍କର କିନ୍ତୁ ଭାରି ଗ୍ଲାନି । ଏ ଜମା କାହାକୁ ଚିହ୍ନୁ ନ ଥାନ୍ତି କି କାହା କଥା ଶୁଣୁ ନ ଥାନ୍ତି । ବାଡ଼ି ଠକଠକ କରି ଓଲଟ ପାଟି କରି ଉଠୁଥାନ୍ତି — ଆରେ ଯାଅ—ଯାଅ, ଆଜ ମଲେ କାଲି ମୁଣ୍ଡରେ ପାଣି ଢ଼ାଳେ ଢାଳେ ଦେଇ ମାୟା ଧୋଇଦେବ । ମିଛରେ ଏ ସୁଆଙ୍ଗ ଦେଖାଉଛ ? ଆମେ ଜାଣିନୁ ? ? 'ଘଟ ଛୁଟିଲେ

ତୋତେ ବୋଲାଏବ ଭୂତ ।' ତେର ଦେଖିଲୁଣି ଏସବୁ । ଆଜ୍ଞା ଏ ଭେଳିକ ଦେଖାଅ ନାହିଁ । ଆହେ ଆସ ହେ ! ସ୍ୱାଗ—ମହାମ ସ୍ୱାଗ — ଆସ—ଆସ । ଆରେ ଆସ ବାବୁ —ଜଠ—ଜଠ । ସ୍ୱାଗ—ଆହେ ଆସ—ନ ହେଲେ ବାବୁ ଥାଅ ତୁମେ ଏଠି—ଆମେ ଚାଲିଲୁ ।

ଉଗ ଉଗ ହୋଇ ସେ ଦାଣ୍ଡ ଆଡକୁ ମୁହାଇଁଗଲେ । ମନୁଆ-ବୋଉ ଛନଛନ ଆଖିରେ ନାକ ସୁଁ ସୁଁ କରି ଖୁବ୍ ଅନିଚ୍ଛାରେ ଧୀରେ ଘରରେ ଗୋଟାଏ ପାହୁଣ୍ଡ ଆଗକୁ ଉଠାଇଛନ୍ତି କି ନାହିଁ, ଦୈବ ଯୋଗକୁ ଗୋଟେ ଏ କାଣ୍ଡ ଘଟିଗଲା ।

ସାନ ପୁଅ କୁଆଡେ ଥିଲା—ହଠାତ୍ ଆସି ପହଞ୍ଚିଗଲା ଧଇଁସଇଁ ହୋଇ—ବୋଉ ! ମଞ୍ଜୁ ପାଖରୁ ଟେଲିଗ୍ରାମ ଆସିଛି ।

କ'ଣ ? କି ଟେଲିଗ୍ରାମ ରେ ?

ସମସ୍ତେ ଚାଟକା—

ମଞ୍ଜୁର କ'ଣ ଆବରସନ୍ ହୋଇଯାଇଛି । ଲେଖିଛି ତୋତେ ଯିବା ପାଇଁ ଖୁବ୍ ଶୀଘ୍ର ।

ମନୁଆବୋଉଙ୍କର ଉଠୁଥିବା ପାଦ ପୁଣି ସ୍ଥିର ହୋଇ ଯାଇଥିଲା । ଏକମାତ୍ର ଝିଅର ପ୍ରଥମ ଗର୍ଭରେ ଏମିତି ଅବସ୍ଥା—ତାର କରିଛି—ସେ ଯିବ—

ବାସ୍ —ସେଥର ବି ଯାତ୍ରା ବନ୍ଦ ରହିଲା ।

ଏମିତି ଏମିତି କେତେଥର ଅନୁକୂଳ ବିଗିଡିଗଲାଣି । ତାଙ୍କର ମନ ମଧ୍ୟ ଟିକା ଧରିଲାଣି । ସତ କଥା । ଆହା ! କେଡେ ଜ୍ଞାନବନ୍ତ ପୁରୁଷ । ମୂଳରୁ ବି ସେ ସେମିତି ଉଦାସିଆ । ସବୁଦିନେ ସଂସାର କରୁଥିବେ ଯିନା, ସଂସାର ପ୍ରତି ତାଙ୍କର କୋଉଦିନ ସେମିତି ଟାଣ ନଥା ନ ଥାଏ । ସରୋଟ ପଣରେ ଯାହା କମାଇବେ, ଯେତିକି କମେଇବେ — ସବୁ ଆଣି ତାଙ୍କ ପାଖରେ ଅଜାଡ଼ିଦେଇ ସେ ପରମ ନିଶ୍ଚିନ୍ତରେ ଖାଲି ଶାସ୍ତ୍ର ପୁରାଣ — ଏଇ ସବୁଥିରେ ମାତିଥିବେ । ସବୁ କରନ୍ତି—ପୁଣି କିଛି କରନ୍ତି ନାହିଁ । ତାଙ୍କ କଥା ଶୁଣିଲେ ସତକୁ ସତ ମନ କେମିତି ଆଉ ପ୍ରକାରେ ହୋଇଯାଏ । ନିର୍ମାୟା ପୁରୁଷ — କାହାର ମନ୍ଦ ଚାହାନ୍ତି ନାହିଁ । ସାଧୁ ସନ୍ନ୍ୟାସୀ, ଦୁଃଖୀ ରଙ୍କୀ ସମସ୍ତଙ୍କ ମୁହଁକୁ ଚାହିଁ ଥାନ୍ତି । ଏମିତି ପୁରୁଷ ବା କେତେ ଜଣଙ୍କ ଭାଗ୍ୟରେ ମିଳିଛନ୍ତି !

ତାଙ୍କର ତ ସଂସାରରୁ ମନ ଗୁଣ୍ଡଗଲାଣି – ଆଜି ସେ ଏଠି ପାଣି ହେବାକୁ ଗୃହାନ୍ତ ନାହିଁ । କାହିଁ କି ବା ପାଣି ହେବେ ? ସତ କଥା – କଏ କାହାର ଏ ସଂସାରରେ ? ସେ ଯାହା କହୁଛନ୍ତି, କିଛି ମିଛ ନୁହେଁ । ଅକ୍ଷି ବୁଜିଲା ବାସି ଦିନ ଏମାନେ ସବୁ ଭୁଲିଯିବେ । ମଲା ତାରିଖ ବି ମନେ ରଖିବେ ନାହିଁ । କୈଳାସମାଆ ସେମିତି ପୁଅ ବୋହୂ, ନାତିନାତୁଣୀ ଧରି ନାଚୁଥିଲା । କ'ଣ ହେଲା ? ସେ ଯଉ ମଲାବେଳେ ଯୋଡ଼ି ପଲଙ୍କରେ ଶୋଇଥିଲା – ତା' ବୁଢ଼ା କହିଲା, ସେଇ ପଲଙ୍କରେ ତାକୁ ଉଠାଅ ମଶାଣିକି । ତା' ବଡ଼ ବୋହୂ ଯଉ ମନା କଲା – କହିଲା, ସେ ପଲଙ୍କ ବରମାଟିକ୍ କାଠ ତାକୁ ନିଅ ନାହିଁ । ଆଉ ଏ ପୁଅ ବୋହୂ ଥାଇ କେତେ – ନ ଥାଇ କେତେ ? କଏ କ'ଣ କରିବ ବା କଏ କ'ଣ କାହାର ? କେହିନୁହେଁ ଲୋ, କେହି ନୁହେଁ । ଏଇ ତାଙ୍କର ନଜର ବଡ଼ ବୋହୂ ଏବେ ଏତେ ମାଆ ମାଆ ହେଉଛି – ପାଣି ପିଉ ନାହିଁ, ସେ ଦିନ କ'ଣ କଲା ? ବଡ଼ ପୁଅ ଆଣିଥିଲା କାଶ୍ମୀରୀ ଶାଲ । କହିଲା—'ବୋଉ ଲୋ ! ତୋ ପାଇଁ ଏଟା ଆଣିଛି । ତୋତେ ସୁନ୍ଦର ମାନିବ—ଦେଖିଲୁ କେତେ ସୁନ୍ଦର ।' ମୁଁ କହିଲି—'ମୋର କ'ଣ ଏଇଟା ହେବ ବୁଢ଼ୀ କାଳରେ । ସେଇ ବଡ଼ ବୋହୂକୁ ଦେ । ଆରେ, ତୁମେମାନେ ପିନ୍ଧିଲେ ମୋର ହେଲା ରେ !' ଯେମିତି ଏତିକି କହିଛି – କେଉଁଠି ଛପିଥିଲା ବଡ଼ ବୋହୂ, ସିଆଡ଼ୁ ବଜିଲେଇ ଭଳିଆ ଆସି ଝାଁପିଦେଲା ଶାଲଖଣ୍ଡ କ ପୁଅ ହାତରୁ । ସାଙ୍ଗେ ସାଙ୍ଗେ ଗୋଟାଏ ଖଇରିଆ ମିରଜା ଶାଲ ଆଣି ମୋ ହାତକୁ ବଢ଼ାଇଦେଇ କହିଲା—'ମୁଁ ତାଙ୍କୁ କହୁଛି—ଏ ଖଣ୍ଡ ମାଆଙ୍କୁ ମାନିବ ନାହିଁ କି ତାଙ୍କ ମନକୁ ପାଇବ ନାହିଁ – ସେ କ'ଣ ମୋ କଥା ଶୁଣୁଛନ୍ତି ?'

ଅସଲ କଥା—ସେଇ ଭଲ ଶାଲ ଖଣ୍ଡକ ତା' ମାଆ ପାଇଁ ପଠେଇବ – ଆଜି ମିରଜା ଖଣ୍ଡକ ଶାଶୁକୁ ଦେବ । କ'ଣ କମ୍ ଜଣେ କି ସିଏ ?

ସବୁ ବୁଝିଛି ରେ – ସବୁ ବୁଝିଛି । ତୁମମାନଙ୍କ ହାତକୁ ମୁଁ ଅନାଇ ବସି ନାହିଁ । ମୋ ବୁଢ଼ା ମତେ ଢେର୍ ଢେର୍ ଶାଲ, କମ୍ବଳ ଯୋଗଉଛି । ମୁଁ ମଲେ ତାଆର କେବଳ ଅଚଳ ହୋଇଯିବ । କାନ୍ଦି କାନ୍ଦି ତାର କେବଳ ଦିନ ସରିବ ନାହିଁ । ତୁମମାନଙ୍କର କିଛି ହେବ

ନାହିଁ । ତୁମ ମାଇପମାନେ କାନରେ ସୂତ ପେନ୍ଥା ବାନ୍ଧି ବୁଲିବେ । ବଞ୍ଚିଛୁ ବୋଲି ଦେହ ସହୁ ନାହିଁ – ଦୁଇ କାମ କରିଦେଉଛୁ – ତୁମ ପିଲାଙ୍କୁ ସମ୍ଭାଳିଛୁ—ସେଇଥିପାଇଁ ମାଆ ମାଆ ହେଉଛ । ମରିଗଲେ ଦାସୀ ଆଣି ରଖିବ, ସେ ସମ୍ଭାଳିବ ପିଲାଙ୍କୁ ।

ଆରେ ଯା ଯା ରେ ! ରଖ ତୁମ ସୁଆଗ । ଘରଦୁଆର – ପିଲା ପିଚିକା – ନିଅ ଏ ସବୁ – ନିଅ—ଦେଇଚି ଫିଟେଇଲି ଏ ସବୁ ଗଣ୍ଠି ମୋ କାନରୁ ଆଜିଠାରୁ । ମୋର ଜୀବଜୀବନ—ମୋର ସାଆନ୍ତରସା— ମୋର ଆତ୍ମା-ପୁରୁଷ ବୁଡ଼ା ଯେଉଁଠି—ମୁଁ ସେଇଠି । ଆଉ ନୁହେଁ – ଆଉ ନୁହେଁ । ସେ ତେଇର୍ ଥର ବଗେଡ଼ିଲେଣି । ତାଙ୍କର ତ ସଂସାରରୁ ମନ ଛୁଟିଗଲାଣି । ଜ୍ଞାନବନ୍ତ, ଧର୍ମବନ୍ତ ପୁରୁଷ ସେ । ଏଥର ସେ ଚାଲିଯିବେ । ବଇରାଗୀ ହୋଇ ଚାଲିଯିବେ ବନେ ଏକା ଏକା ଆଗମୁହାଁ – ପଛକୁ ଚାହିଁବେ ନାହିଁ । ସେଇ କେବଳ ପଛରେ ପଡ଼ି ହାଉ ହାଉ ହୋଇ କାନ୍ଦୁଥିବେ । ଲୁହ ପୋଛିବାକୁ ତର ନ ଥିବ । ବଣଜଳରେ ବୋବାଳି ଛାଡ଼ୁଥିବେ ! ସେ କାନ୍ଦୁ ଶୁଣିବେ ନାହିଁ । ହୃଜପଙ୍ଗ ଠାକୁରାଣୀ ପଛରେ ଅପନ୍ତରରେ ପଡ଼ି ଛଟପଟ ହେଉଥିବେ – ଯୁବଜେଷ୍ଠି ଠାକୁର ଆଗେଇ ଯିବେ, ଆଉ ପଛକୁ ଫେରି ଚାହିଁବେ ନାହିଁ । ଓହୋ ! ଓ ଓ ଓ ! !

ଏକ ଅଶୁଭ ଅସହାୟ ବିକଳ ଆଶଙ୍କାରେ ମନୁଆବୋଉଙ୍କ ଅନ୍ତର କାନ୍ଦିଉଠିଲା – ଥରିଉଠିଲା ।

ସେ ଆର୍ତ୍ତ ଭାବରେ ସ୍ୱାମୀଙ୍କର ହାତ ଧରିପକାଇ କାନ୍ଦ କାନ୍ଦ ଦୃଢ଼କଣ୍ଠରେ କହିଲେ –

ନାହିଁ ହୋ – ଆଉ ନୁହେଁ । ତୁମେ ମନ ଠିକ୍ କର । ମୁଁ ସବୁ ବୁଝିଲିଣି – ତୁମେ ଯେଉଁଠି ମୁଁ ସେଇଠି । ଚାଲ ପଳେଇବା ଏଠୁ ପୁରସ୍ତମ । ମୁଁ ସବୁ ଜାଣିଲିଣି – ଏ କେହି କାହାର ନୁହନ୍ତି । ସବୁ ମିଛ ।

ତୀର୍ଥବାସୀ ବାବୁ ପତ୍ନୀଙ୍କର ମୁହଁକୁ ଆସ୍ଥାପୂର୍ଣ୍ଣ ଭଙ୍ଗୀରେ ଚାହିଁଲେ ଏବଂ ମନୁଆବୋଉଙ୍କର ଏହି ବର୍ତ୍ତମାନର ମୂର୍ତ୍ତି ତାଙ୍କ ହୃଦୟକୁ ଏକ କରୁଣ ମଧୁର ପ୍ରେମରସରେ ପ୍ଲାବିତ କରିଦେଲା । ଆଃ ! ! କି ସୁନ୍ଦର

ଏକାନ୍ତ ନିର୍ଭରଶୀଳ, ଶିଶୁସୁଲଭ ଅସହାୟ ମୂଢ଼ ମୂର୍ତ୍ତିଟିଏ । ଏଇ ମୂର୍ତ୍ତିଟି ଓ ଏହି ମୂର୍ତ୍ତିର ଏହି ବିଶିଷ୍ଟ ଭଙ୍ଗୀଟି ହିଁ ତାଙ୍କ ହୃଦୟରେ ଚିରନ୍ତନ ଦୟା ଓ ମାୟାର ସଞ୍ଚାର କରି ରଖିଛି ।

ପରମ ଉଲ୍ଲାସ, ବିଶ୍ୱାସ ଆଉ ନିଶ୍ଚିନ୍ତ ସଫଳତାରେ ତୀର୍ଥବାସୀ ବାବୁ ପତ୍ନୀଙ୍କ କାନ୍ଧରେ ହାତରଖି କହିଲେ –

କ'ଣ ଏ କଥା ସତ୍ୟ ମନୁଆବୋଉ ? କୁହ—ତିବାର ସତ୍ୟ ।
ମନୁଆବୋଉଙ୍କର କଣ୍ଠ ଅଭିମାନରେ ଭାଙ୍ଗିପଡ଼ିଲା । ସେ

ଯଥାସମ୍ଭବ ଦୃଢ଼ତା ରକ୍ଷାକରି କହିଲେ –
କହିଲି ପରା ଥରେ ! ତୁମେ ମନ ଠିକ୍ କର ।

—×—

## —ଦୁଇ—

ସୂର୍ଯ୍ୟଅସ୍ତ ହୋଇଗଲା ପରେ—କାଲି ସକାଳୁ ତୀର୍ଥବାସୀ ବାବୁ ସସ୍ତ୍ରୀକ ଘର-ସଂସାର ଛାଡ଼ି ମୃତ୍ୟୁ ପର୍ଯ୍ୟନ୍ତ ପୁରୀକ୍ଷେତ୍ରରେ ରହିବାକୁ ଚାଲିଯିବେ। ଆଉ ସେମାନେ ଘରକୁ ଫେରିବେ ନାହିଁ। ବନ୍ଧୁବାନ୍ଧବ ଏ କଥା ଶୁଣି ସନ୍ଧ୍ୟାରେ ଆସିଲେ। ସମସ୍ତେ ଆସି ତୀର୍ଥବାସୀ ବାବୁଙ୍କୁ ଏଥିରୁ ବାରଣ କରିବାକୁ ନାନାପ୍ରକାର ବୁଝାଇଲେ। ତୀର୍ଥ-ବାସୀ ବାବୁଙ୍କର ସମବୟସ୍କ ଅବସରପ୍ରାପ୍ତ ବୃଦ୍ଧ ବନ୍ଧୁମାନେ ନିଜ ନିଜର ମନୋବୃତ୍ତି ଅନୁଯାୟୀ ତାଙ୍କୁ ନାନାବିଧ ଉପଦେଶ ଦେବାକୁ ଆରମ୍ଭ କଲେ-

ଆଜିଠାରୁ ଏ ବାନପ୍ରସ୍ଥବ୍ରତ କାହିଁକି ତୀର୍ଥବାସୀ? ସଂସାରକୁ ଛାଡ଼ି କଲେଇଁ ଲାଗିପଡ଼ି ଜୀବନଯାକ।ଆଣ୍ଠୁ-ଗଣ୍ଠି ଛିଣ୍ଡିଲା । ଉଠପଡ଼ ଅଣନିଶ୍ୱାସୀ ହୋଇ ସଂସାରକୁ ଠିଆ କଲେଇଁ। ଏତେ ବେଳକୁ ତୁମେ ଏ ଧନଧାନ୍ୟଭରା ସୁଭୋଗ୍ୟ ସଂସାରକୁ ଛାଡ଼ିଯାଉଛ? ଠିକଏ ଆଜି ଶନ୍ତାକର ତୀର୍ଥବାସୀ!

...ସବୁ ବୁଝି ମଧ୍ୟ ତୁମେ ବାଉଳା ଧରିଛ ତୀର୍ଥବାସୀ ବାବୁ! ତୀର୍ଥ ତୀର୍ଥ ହୋଇ ବାତୁଳ ପରି ଘର-ସଂସାର ଛାଡ଼ି ଧାଇଁଛ କଅଁ ହେ? ସବୁ ତୀର୍ଥ ରହିଛି ଏହି ଘରେ। ବୋଇଲା—

"ସକଳ ତୀର୍ଥ ତୋ ଚରଣେ—
ବନ୍ଦ୍ରକା ଯିବୁ କ କାରଣେ?"

ଏଇଠି ସବୁର ମେଳରେ ଥାଇ —ନ ଥିଲା ଭଳି ଭାବ କରି ରହିବ। ସବୁ ଦେଖୁଥିବ—କିଛି ପୁଣି ଦେଖୁ ନ ଥିବ। ସବୁ କରୁଥିବ—କିଛି ପୁଣି କରୁ ନ ଥିବ। ନିର୍ଲିପ୍ତ ଭାବରେ ଏହି ସଂସାରରେ ରହି ମନ ଦୃଢ଼ କରି ହରିପଦକୁ ଧ୍ୟାନ କର—ମୋକ୍ଷ ଏଇଠି ଅଛି। ମନ ହେଲା ଅସଲ। ପରମହଂସ କହିଛନ୍ତି—"ହଂସ ଭଳି ଜଳରେ ପହଁରିବ—ମାତ୍ର ପାଣି ଲାଗିବ ନାହିଁ ପକ୍ଷୀରେ"—ମୋ କଥା ଏବେ କ'ଣ?

...ସେ ବେଳ ଥିଲା ଅଲଗା ତୀର୍ଥବାସୀ ବାବୁ ! ରାଜ୍ୟରେ ଘରଆଡ଼େ ଭର୍ତ୍ତି ହୋଇଥିଲା ବଣ ଜଙ୍ଗଲ । ଲୋକେ ସେକାଳେ ନିର୍ଦ୍ଦ୍ୱନ୍ଦ୍ୱରେ ଶେଷ କାଳକୁ ବାନପ୍ରସ୍ଥ କରୁଥିଲେ । କିନ୍ତୁ ଏ କାଳେ ବାନପ୍ରସ୍ଥର ନୂଆ ଅର୍ଥ ବାହାରିଲାଣି । ତୁମର ବର୍ତ୍ତମାନ କିଛି କାମ ନାହିଁ ବୋଲି ମନ ଭିତରେ ଏମିତି କିମ୍ଭୂତ ଭାବନା ଆଉ ଖିଆଲସବୁ ପଶୁଛି । ସଂସାର ଛାଡ଼ିବ ତ ବର୍ତ୍ତମାନ ଦେଶ କାର୍ଯ୍ୟରେ ମନ ଦିଅ । ଚାଲି ଯିବା ଗାଁକୁ – ସେଠି ଦେଶ ସେବାର ବହୁ ଫନ୍ଦ ମେଲିଲାଣି । ସରପଞ୍ଚ ହୁଅ – ଜିଲ୍ଲାପରିଷଦର ସଭ୍ୟ ହୁଏ – ଚେୟାରମ୍ୟାନ ହୁଅ – ନ ହେଲେ ବିରୋଧୀ ଦଳର ଟିକେଟ ଧରି ଆସନ୍ତା ନିର୍ବାଚନରେ ଲଢ଼ି ଦେଶସେବା କରିବାକୁ ପ୍ରସ୍ତୁତ ହୁଅ । କିଛି ଏସବୁ ନ କରିବ ତ ଗୋଟାଏ ଭିତ୍ରେଇ ଫାର୍ମରେ କିଛି ଅର୍ଥକାଶ ଦାଯ୍ବିତ୍ୱ ବି ବହନ କରିପାର । ତା' ନ କରି ଏମିତି ବାତୁଳଙ୍କ ଭଳି ସବୁ ଛାଡ଼ି ତୀର୍ଥରେ ଯାଇ କ'ଣ କରିବ ?

ତୀର୍ଥବାସୀ ବାବୁ ସବୁରି କଥାଶୁଣିଲେ; ମାତ୍ର କାହାକୁ କିଛି ଉତ୍ତର ଦେଲେନାହିଁ । କେବଳ ସମସ୍ତଙ୍କ ମୁହଁକୁ ଏକ ଉଦାର କ୍ଷମାଶୀଳ ଦୃଷ୍ଟିରେ କରୁଣା କଲା ଭଳି ଉଦାସ ଭାବରେ ଟିକେ ଚାହିଁ ହସି ଦେଲେ । ତା'ପରେ ପୁଣି ମନେ ମନେ ଭାବିଲେ –

"କିଏ ବା ଅଛି କେଉଁ ମତେ
ତାହା ମୁଁ ଜାଣିବି କେମନ୍ତେ ?"

ସମବୟସ୍କ ବନ୍ଧୁମାନେ ବୁଝାଇବାର କିଛି ଫଳ ନାହିଁ ବୋଲି ଭାବି ଶେଷରେ ନିରାଶ ହୋଇଉଠିଲେ । ଗୁଡ଼ ଗୁଡ଼ "ବୃଦ୍ଧସ୍ୟ ମତିଭ୍ରମଃ ।" ମୁଣ୍ଡରେ ଆଉ ଠିକ୍ ନାହିଁ । ମୂଳରୁ ତ ଲୋକଟା ଟିକିଏ ଆଡ଼ବାଇଆ ଥିଲା । ଗୁଡ଼ ହେ ! ଠିକ୍ ଅଛି – "ନଷ୍ଟସ୍ୟ କାନ୍ୟା ଗତିଃ । " ଚାଲ – ଉଠ ।

ସେମାନେ ଚାଲିଲେ । ସେମାନେ ତାଙ୍କଠାରୁ ବିଦାୟ ନେଇ ଗଲାବେଳେ ସମବୟସ୍କ ବୃଦ୍ଧ ତୀର୍ଥଗାମୀ ବାନପ୍ରସ୍ଥାଭିଳାଷୀ ମୁକ୍ତିକାମୀ ପାଗଳ ତୀର୍ଥବାସୀ ବାବୁଙ୍କୁ କେବଳ ଅନୁକମ୍ପା କରିଗଲେ ନାହିଁ – ସେମାନଙ୍କ

ଅବଚେତନ ମନ ଭିତରେ ଶାର୍ଥବାସୀ ବାବୁଙ୍କ ପ୍ରତି ଯୁଗପତ୍ ଏକ ଅନନୁଭୂତ ଈର୍ଷାଭାବ ସଙ୍ଗେ ଗୌଣବୋଧର ମଧ୍ୟ ଏକ ପାତଳା ସ୍ତର ପଡ଼ ଯାଇଥିଲା ।

ସେମାନେ ଗଲା ପରେ—

ଏଣେ ଘରେ କିନ୍ତୁ ଶାର୍ଥବାସୀ ବାବୁଙ୍କର ଏଇ ସିଦ୍ଧାନ୍ତରେ ପୁଅ ବୋହୂ କି ନାତି ନାତୁଣୀ କେହି ବିଚଳିତ ହେଲା ଭଳି ମନେହେଲା ନାହିଁ । କେହି ମଧ୍ୟ ତାଙ୍କ ପାଖକୁ କିଛି ବୁଝାଇବା ଲାଗି ଆସିଲେ ନାହିଁ । ତାଙ୍କ ଲାଗି କାହାର ସତେ ବା ଚିନ୍ତା ନାହିଁ । ସତେ ବା ସେ ରହିଲେ ଖୁସି, ନ ରହିଲେ ବି ବିଶେଷ କିଛି ଯାଏ ଆସେ ନାହିଁ ।

ନାତି ନାତୁଣୀଏ ତ କେହି ବେଶୀ ସମୟ ବୁଢ଼ାଙ୍କ ପାଖକୁ ଆସନ୍ତି ନାହିଁ । ତାଙ୍କର ସବୁ ଅଳି ଅର୍ଦ୍ଦଳି ବୁଢ଼ୀ ପାଖେ । ପୁଅମାନେ ବି କେହି ତାଙ୍କ ସଙ୍ଗେ କୌଣସି ବିଷୟରେ କିଛି ବିଚାର ବା ସିଦ୍ଧାନ୍ତ କରନ୍ତି ନାହିଁ । ଅବଶ୍ୟ ତାଙ୍କର ସମସ୍ତ ପ୍ରକାର ସ୍ୱାଚ୍ଛନ୍ଦ୍ୟ ଓ ଆବଶ୍ୟକତା ପ୍ରତି ସେମାନେ ଖୁବ୍ ସଜାଗ ଓ ତୀକ୍ଷ୍ଣ ଦୃଷ୍ଟି ଦେଇଥାନ୍ତି । ମାତ୍ର ସେମାନଙ୍କ ସଂସାରରେ ବୁଢ଼ାଙ୍କର ଅସ୍ତିତ୍ୱ ସେମିତି କିଛି ଅତ୍ୟାବଶ୍ୟକ ବା ଗୁରୁତ୍ୱପୂର୍ଣ୍ଣ ନୁହେଁ । ଘରେ ଗାଈଟିଏ ଗାଈ ଅଛନ୍ତି । ପିଞ୍ଜରାରେ ଶାରୀଟିଏ । ଜଞ୍ଜିରରେ ବନ୍ଧା ଅଛନ୍ତି ଦୁଇଟା ବାଘୁଆ କୁକୁର । ଦୁଇଟି ବିରାଡ଼ି ମଧ୍ୟ ଏ ଘରେ ପିଲାଛୁଆ ଧରି ବୁଲନ୍ତି । ତାଙ୍କର ବଡ଼ ନାତି ବହୁ ଜୀବଜନ୍ତୁ ଆଣି ଘରେ ପୋଷିଛି । ତାରଘେରା ଘରେ ରହିଛନ୍ତି ପାହାଡ଼ ମୂଷା ପଲେ । କାଠ ପିଞ୍ଜରାରେ ଗୋଟାଏ ପାତିମାଙ୍କଡ଼ । ଏଇସବୁ ଜୀବଜନ୍ତୁଙ୍କ ଲାଗି ନାନାବିଧ ଆହାର ଆଉ ସ୍ୱାଚ୍ଛନ୍ଦ୍ୟର ଉପକରଣ ଖଞ୍ଜିଛନ୍ତି ସେମାନେ—ଦୁଧ, ଭଜାବୁଟ, ପାଚିଲା କଦଳୀ, କଅଁଳ ଘାସ, ହାଡ଼ଲଗା ମାଂସ । ଏମାନଙ୍କର କାହାର ରୋଗବୈରାଗ ହେଲେ ଡାକ୍ତର ଆସନ୍ତି । ଔଷଧ କିଣାଯାଏ । ସବୁ ହୁଏ ।

ସେମିତି ଗୋଟିଏ ସୁସଜ୍ଜିତ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଘରେ ବାପକୁ ରଖିଦେଇ ତାଙ୍କ ଲାଗି ଭଲ ଖାଦ୍ୟପେୟ, ଔଷଧ ଓ ଶଯ୍ୟାହିର ବନ୍ଦୋବସ୍ତ କରିଦେଇ ନିଶ୍ଚିନ୍ତ ସେମାନେ । ତାଙ୍କ ସଙ୍ଗେ ପୁଅ ବୋହୂମାନଙ୍କର ଏହାଛଡ଼ା ଆଉ କିଛି ସମ୍ପର୍କ ନାହିଁ ।

ଭଲ କଥା, ତୀର୍ଥବାସୀ ବାବୁଙ୍କର ମଧ୍ୟ ଏ ଲାଗି ଦୁଃଖ ନାହିଁ । ଏଇଟ ମୁକ୍ତି ଲାଗି ଚରମ ସୁଯୋଗ । ଈଶ୍ୱର ପରମ କାରୁଣିକ । ତାଙ୍କର ଦୁର୍ବଳତା ଦେଖି ଦୟାଳୁ ଭଗବାନ ଆଗରୁ ସେଥିରୁ ଟଣୁଆ ଲୁହା ଶିକୁଳି ବେଢନ ତାଙ୍କ ଗୋଡ଼ରୁ ଛିଣ୍ଡାଇ ଦେଇଛନ୍ତି । ଏଣିକି ସେ କେବଳ ଚାଲିଯିବା ହିଁ ଉଚିତ୍ । ଯାହାର ଆଉ ସେ ଏଣିକି ଦରକାର ନୁହଁନ୍ତି । ହେଇ ସେଠି ଟଙ୍ଗା ହୋଇଛି ଗୋଟିଏ କଳଙ୍କିଧରା ପୁରୁଣା ପିଞ୍ଜରା । ତା' ଭିତରେ କାହିଁ କେଉଁ ଅମଳରୁ ପଡ଼ିରହିଛି ବୁଢ଼ା ଶୁଆଟିଏ । ଦିନଯାକ କଟର କଟର ହେଉଥାଏ । ରାଧା-ଆଁ କୃଷ୍ଣ-ଅ ! କୃଷ୍ଣ-ଅ !! ରାଧା-ଆ କୃଷ୍ଣ !!

କେହି ତା' ଆଡ଼କୁ ନଜର କରନ୍ତି ନାହିଁ, ବରଂ ମନେ ମନେ ବିରକ୍ତ ହୁଅନ୍ତି । ଦିନରାତି କଟର କଟର ହେଉଛି । ତା' ବଦଳରେ ବରଂ ବେଳେ ବେଳେ ଭିଡ଼ ହୁଏ—ଦୁଇ ବର୍ଷ ତଳେ କଣା ହୋଇଥିବା କଳା ଛନ୍ନଛନ୍ନ ନାଲିଆଖିଆ ଶାରଟା ପାଖରେ, ତାକୁ ଶିଖା ହୋଇଛି ଇଂରେଜୀ କଥା ।

ନାଃ—ଛାଡ଼ିଯିବାକୁ ହେବ, ପଳେଇଯିବାକୁ ହେବ । ଆଉ ଏଠି ବୃଥା ବନ୍ଧନରେ ପଡ଼ି ମରିବା ଠିକ୍ ନୁହେଁ । ସଂସାର ଆଉ ତାଙ୍କୁ ଚାହେଁ ନାହିଁ । ଶୀଘ୍ର ଏଠୁ ବାହାରିଯିବା । ତୀର୍ଥବାସୀ ବାବୁଙ୍କ ମନ ଚଞ୍ଚଳ ହୋଇଉଠିଲା । କପରି ଅଜ ରାତିଟା ପାହିବ ଚଞ୍ଚଳ !! କାଲି ସକାଳୁ ବନବାସ !!

ମାଝ ପାହା ଲାଗିଛି କେଣେ ଘର ଭିତରେ ବୁଢ଼ୀ ଡାକେ । ତୀର୍ଥବାସୀ ବାବୁ କବାଟ ଅଳ୍ପ ଖୋଲିରଖି ତା ଭିତରେ ତଳ ଖଞ୍ଜାକୁ ଚାହିଁଲେ ।

ହେଇ ସେଠି ଘର ବଉଁଶପାକ ଲାଗିଛନ୍ତି ବୁଢ଼ୀ ପଚୁଏ । କଏ କେତେ ପ୍ରକାର ଅବଲମ୍ବ ଦେଖାଇ କେତେ ରଙ୍ଗରେ କେତେ ଢଙ୍ଗରେ ବୁଢ଼ୀର ଛିଣ୍ଡା ଦଉଡ଼ିକୁ କୌଶଳରେ ଗଣ୍ଠେଇ ଲାଗିଛନ୍ତି । ପିଣ୍ଡା ଉପରେ ମଶିଣା ପାରି ଗୋଡ଼ ଲମ୍ବେଇ ମୁହଁ ଶୁଖାଇ ଟେମ୍ବୀର

ହୋଇ ବସିରହିଛୁ ମହାରାଣୀ ଢ଼ଙ୍ଗରେ ବୁଢ଼ୀ । ଆଜି ତାକୁ ଘେରି ଘେରିଗଲା ଜମା ହୋଇଛନ୍ତି ତା ଚୁଲପଟେ ଘର ବର୍ଣ୍ଣଶଯାକ । ପୁଅ ବୋହୂ, ଆଜି ନ'ତି ନାତୁଣୀର ଜାଲ । କଏ ଗୋଡ଼ ମୋଡୁଛି—କଏ ପିଠି ଆଉଁସୁଛି—କଏ ବୁଢ଼ୀର ମୁଣ୍ଡରୁ ପାଚିଲା ବାଳ ଉଡୁଛି—କେତେକ ବୁଢ଼ୀ ପିଠିରେ ଲଦି ହୋଇ ପଡ଼ିଛନ୍ତି । ପ୍ରପଞ୍ଚ ମାୟାର କେତେ ଅଙ୍କ, କେତେ ଗୁଚ୍ଛ ! କେତେ ନୃତ୍ୟ, କେତେ ରଙ୍ଗ ! କେତେ ଢଙ୍ଗ, କେତେ ସ୍ୱର ! ପୁଣି କେତେ ଧ୍ୱନି ! !

ଘରର କବାଟ ଅଳ୍ପ ଫାଙ୍କ କରି ଗ୍ରାମବାସୀ ବାବୁ ସବୁ ଦେଖୁଛନ୍ତି—ଆଉ ସବୁ ମଧ୍ୟ ଶୁଣୁଛନ୍ତି—ବୋହୂମାନେ ଶୁଣି ଉଠୁଛନ୍ତି ଜଣ ଜଣ କରି—ମାଆ ! ବାପାଙ୍କ ମୃତ୍ୟୁ ଖବର ହେଲା ବୋଲି ତୁମେ ତାଙ୍କ ସଙ୍ଗେ ଯାଇ ନା କ'ଣ ?

...ଯିବ ଯଦି ଏ ପିଲାଙ୍କୁ ବି ନେଇଯାଅ ତୁମ ସଙ୍ଗରେ, ଆମେ ତୁମର ଏ ପିଲାଙ୍କୁ ସମ୍ଭାଳି ପାରିବୁ ନାହିଁ ।

...ଜୀବନଯାକ ଏତେ ଖଟିଲ ଏ ସଂସାର ପାଇଁ । ଆମକୁ ବଢ଼େଇ କୁଢ଼େଇ ମଣିଷ କଲ । ଆମେ ଯେତେବେଳେ ଟିକଏ ପାଦସେବା କରି ତୁମମାନଙ୍କ ଋଣମୁକ୍ତ ହେବାକୁ ବସିଛୁ, ତୁମେ ଆମକୁ ଛାଡ଼ି-ଯାଉଛ ? ଆଉ ଆମେ ଏ ଋଣ ଶୁଝିପାରିବୁ ?

...ଯିବ ଯଦି ଏ ଘର କେମିତି ଚଳାଇବାକୁ ହେବ—ଆଗ ମୋତେ ଟ୍ରେନିଂ ଦେଇଯାଅ । ମୁଁ ଏ ଘରକୁ ଅଠର ବର୍ଷ ହେଲା ବୋହୂ ହୋଇ ଆସିଲିଣି ଯେ—ଆଜି, କ'ଣ ଭଲ ମତ ତୁମେ ଶିଖାଇଛ ? ମୋ ମୁଣ୍ଡ ଉପରେ ତ ପଚରଟିଏ ପଡ଼ିଲେ ତୁମେ ଆହା ଆହା ହେବ । ଆଜି ଏବେ ମୁଁ ଘର କେମିତି ସମ୍ଭାଳିବି କହିଲ ?

ନାହିଁ ମା'ଆ ! ତୁମେ ଏ ଘରୁ ଚାଲିଗଲେ ମୁଁ ଏଠି ଜମା ନିଶ୍ୱାସ ମାରିପାରିବି ନାହିଁ । ମୁଁ ଯାଉଛି—ପଳେଇବି ମୋ ବୋଉ ପାଖକୁ ।

ଗ୍ରାମବାସୀ ବାବୁ ତାଚ୍ଛଲ୍ୟଭରା ଦୃଷ୍ଟିରେ ସବୁ ଦେଖୁଛନ୍ତି—ସବୁ ଶୁଣୁଛନ୍ତି ।

ହେଉଛି— ପଞ୍ଚାଏ ସେଠି ମାଙ୍କଡ଼ ଭଳି ନାଚ ନାଚ ଗୁଲୁରୁ-ଗାଲୁରୁ ହେଉଛନ୍ତି । ସିନେମା ଢଙ୍ଗରେ ଗୀତ ଗାଇ ବୁଢ଼ୀ ଗାଲରେ ଓଠରେ ହାତ ମାରି ଗୁଣ୍ଡୁ କରୁଛନ୍ତି ।

ଡାଉଡ଼ୀ ଆମ୍ମା ଡାଉଡ଼ୀ ଅମ୍ମା—ମାନ୍ ସଓ
ଡାଉଡ଼ୀ ଆମ୍ମା ଡାଉଡ଼ୀ ଅମ୍ମା—ମଚ୍ଚ ଯାଓ ।

ନିଶା ଲଗେଇ ଦେଉଛନ୍ତି ସେମାନେ । ବୁଢ଼ୀ କିନ୍ତୁ ଧୀର ହୋଇ ବସିଛି ଗୋଡ଼ ମେଲେଇ—ଧୀରସ୍ଥିର ଗମ୍ଭୀର ଭଙ୍ଗୀରେ ମହାରାଣୀଙ୍କ ଭଳି—ହଁ ନାହିଁ କି ଚୁଁ ନାହିଁ—ହସୁ ନାହିଁ, କାନ୍ଦୁ ନାହିଁ । ମୂକ ଭଳି ସ୍ଥାଣୁ ଭଳି ବସିରହିଛି ।

ତୀର୍ଥବାସୀ ବାବୁ ଏପଟ ବାରଣ୍ଡାରୁ ଅଳ୍ପ ଦରଜା ମେଲି କରି ସେଇ ଫାଙ୍କରେ ସବୁ ଦେଖୁଛନ୍ତି । ତାଙ୍କୁ ଲାଗୁଛି - ସତେ କି ଚମତ୍କାର ପ୍ରହସନ ବା ପର୍ଦ୍ଦି ଏ ସେ ଦେଖୁଛନ୍ତି; କିନ୍ତୁ ସଙ୍ଗେ ସଙ୍ଗେ ବୁଢ଼ୀକି ମଧ୍ୟ ଗୁହୁଁଛନ୍ତି ନଠେଇ ନଠେଇ, ବୁଢ଼ୀକୁ ନିଶା ଧରିଲା କି ? ଏ ନିଶା ଯଦି ଏତେବେଳେ ଧରିବ, ତା ହେଲେ ମୂଢ଼ା ବୁଢ଼ୀର ଆଉ ହୋସ ରହିବ ନାହିଁ । ଜ୍ଞାନ ହଜିଯିବ । ମୂଢ଼ା ଫେର୍ ପଡ଼ିଯିବ ଜାଲ ଭିତରେ···

ମାତ୍ର ନାଃ । ହେଇ ତ ସେମାନେ ସେମିତି ବଦଳଉଛନ୍ତି । ମାତ୍ର ବୁଢ଼ୀ ହଲୁ ନାହିଁ କି ଚଳୁ ନାହିଁ । କାହା ମୁହଁକୁ ବି ଗୁହୁଁ ନାହିଁ । କପରି ଗୋଟାଏ ମନ୍ତ୍ରମୁଗ୍ଧ ତମସ୍ପିତା ତାକୁ ଜଡ଼କରି ଦେଇଛି । ତା ମୁହଁରେ ଅସ୍ଥିର ତେଜ ନାହିଁ କି ନାସ୍ତିର ଗ୍ଲାଇ ମଧ୍ୟ ନାହିଁ, କିନ୍ତୁ ଏ କ'ଣ ବୁଢ଼ୀର ନିର୍ବିକାର ଚିତ୍ତର ଲକ୍ଷଣ ?

କି······

'ଶୈଳାଧିରାଜତନୟା ନ ଯଯୌ ନ ତସ୍ଥୌ ?'

ଏପରି ଅବସ୍ଥା କିନ୍ତୁ ବେଶୀ କ୍ଷଣ ରହିବ ନାହିଁ—ରହେ ମଧ୍ୟ ନାହିଁ । ଆଗକୁ ଆଉ ପାଦ ଚଳେ ନାହିଁ । ସେହି ସ୍ଥାନରେ ପାଦ ଥମ୍ଭିଯାଏ ନିଶ୍ଚିନ୍ତରେ ଶେଷ ପର୍ଯ୍ୟନ୍ତ ତୀର୍ଥବାସୀ ବାବୁ ପରମ ଉଦ୍-

ବେଗରେ ବୁଢ଼ୀକୁ ଘୃଷି ରଖିଲେ । ସବୁ ବର୍ତ୍ତମାନ ନିର୍ଭର କରୁଛି ବୁଢ଼ୀ ଉପରେ ।

ବୁଢ଼ୀ କିନ୍ତୁ ସେମିତି ଗୋଡ଼ ଲମ୍ବେଇ ମଝିରେ ବସିରହିଛି ମହାରାଣୀ ଭଳି ଚହଟି ପ୍ରାପ୍ତ । ସେମାନେ ବଦଳିଉଛନ୍ତି, ଅବଲମ୍ବ କରୁଛନ୍ତି, ମଚାଉଛନ୍ତି, ଚଟାଉଛନ୍ତି ।

ସଂସାର ଛବି ଦେଖାଉଛି, ଛଟକ ଦେଖାଉଛି । ସାନ ପୁଅ-—ଯୋଉଟା ଏବେ ବିଲତରୁ ଫେରି ବାହା ହୋଇଛି—ସେ କହୁଛି କୋଡ଼ପୋଛ ପିଲାର ଚେଷ୍ଟା ପଣରେ—

ତୁ ଯା ବୋଉ, ମୋର ମନା ନାହିଁ; କିନ୍ତୁ ବୋଉକୁ ଆଉ ଦୁଇ ମାସ ପରେ ମୁଁ ସେଠି ତୋ ପାଖେ ପୁରୀରେ ଛାଡ଼ିଦେଇ ଆସିବି । ସେଇଠି ହେବ ତାର ଡେଲିଭରି । ଏଠି ତାକୁ ମୋର କିଏ ସମ୍ଭାଳିବ ? ମୁଁ ତ ଜୁନ୍‌ରେ ଗୁଲିଯାଉଛି ସ୍ୱିଜରଲ୍ୟାଣ୍ଡ । ତା ଛଡ଼ା ଜୁନ୍ ମାସରେ ସ୍ୱିଜରଲ୍ୟାଣ୍ଡରେ ଯାହା ଗରମ ନା···

ବୁଢ଼ୀ ତଥାପି ବି କିଛି କହୁ ନାହିଁ । ହଲୁ ନାହିଁ । ସେମାନେ କିନ୍ତୁ ହଲିଉଛନ୍ତି ଲଗିପଡ଼ି ପ୍ରାଣପଣେ ।

ହେଇ ଆସୁଛି ବଡ଼ ପୁଅ— ମଠ ମଠ ହୋଇ ବାଘ ଭଳି ଭୃଲିକ କୁହଳୁ ହ—ରଡ଼ନଆଁ ଭଳି ଜଳନ୍ତା ଆଖି—ସବୁବେଳେ ହାଣ୍ଡି ଭଳି ମୁହଁ— ଏତେ ବଡ଼ ପାଟି—ଟାଉଁ ଟାଉଁ କଥା—ଏମିତି ଗୋଟେ ରହୁଆ ବ୍ୟକ୍ତିତ୍ୱ ଆଉ ଦର୍ପିତ ଭଙ୍ଗୀ ଦେଇ 'ସେ ଯେତେବେଳେ ଆସେ —ମନେହୁଏ—କାହାକୁ ମାରିବ, ନ ହେଲେ କାହାକୁ ତାଡ଼ିବ । ତାକୁ ଦେଖି ଭୟରେ ଅନ୍ୟମାନେ ଆଡ଼ ହୋଇ ଯାଉଛନ୍ତି—ପାଖେଇ ଯାଉଛନ୍ତି । ଆସିଲା ମାତ୍ରେଇ ସେ ମାଆ ଉଦ୍ଦେଶ୍ୟରେ ଆରମ୍ଭ କରୁଛି—

ତୁ ଯେ କାହିଁକି ବୋଉ ହଠାତ୍ ଏମିତି ଧର୍ମପରାୟଣା ହୋଇଉଠିଲୁ—ମୁଁ ବୁଝି ପାରୁନି । ବାପାଙ୍କୁ ଯଦି ଏଠି ଏସବୁ ଜଞ୍ଜାଳ, ଗୋଳମାଳ ସୁଖ ଲାଗୁ ନାହିଁ, ତେବେ ସେ ଯାନ୍ତୁ—ରହନ୍ତୁ ଯାଇ ପୁରୀରେ

ବରଂ ସେଠାର ଜଳବାୟୁ ତାଙ୍କୁ ଭଲ ଲାଗିବ । ଏଠି ସେ ବେଶୀ ଖୁଁତ ଖୁଁତ ହୋଇ ଉଠୁଛନ୍ତି ଦିନକୁ ଦିନ; କିନ୍ତୁ ତୁ ଯେ କାହିଁକି ଔଷଧ ସଙ୍ଗେ ବଣଭୁଆ ବାଇ ହେଉଛୁ—ମୁଁ ବୁଝିପାରୁ ନାହିଁ । ଶୁଣ—ମୋ କଥା ମାନ । ମୁଁ କାଲି ଡ୍ରାଇଭରକୁ କହୁଛି—ବାପାଙ୍କୁ ନେଇ ପୁରୀରେ ଛାଡ଼ିଦେଇ ଆସିବ । ପୁଷ୍ପାଙ୍କୁ ଡ଼ମେ ଯାନ୍ତୁ ତାଙ୍କ ସଙ୍ଗରେ । ସବୁ ପ୍ରକାର ସୁବିଧା ହେବ । ମୁଁ ମଧ୍ୟ ସପ୍ତାହକେ ଥରେ ଅନ୍ତତଃ ଯାଇ ତାଙ୍କ କଥା ବୁଝି ଆସୁଥିବି । ତୁ ଯାଆ ନାଇଁ—ବୁଝିଲୁ ? ଯାନ୍ତୁ ବାପା ଏକା ! !

ସାନ ପୁଅ କହୁଛି—

ବାପା କି ଅଦଭୁତ ଜିଦ୍ ଧରିଛନ୍ତି ଜାଣିଛ ନା ଭାଇ ? କହୁଛନ୍ତି—ନେ ଭକ୍ତ ସାଙ୍ଗରେ ଧରି ପାଦରେ ଚାଲି ଚାଲି ପୁରୀ ଯିବେ । ଏ କୁଆଡ଼େ ତାଙ୍କର ମହାଯାତ୍ରା ।

କଥା ଶୁଣୁ ଶୁଣୁ ବଡ଼ ପୁଅର ମୁହଁ ଲାଲ ପଡ଼ିଯାଇଛି । ଗୋଟାଏ ତୀକ୍ଷଣ କ୍ରୋଧଦୀପ୍ତ ବିରକ୍ତି ଓ ଅବଜ୍ଞାସୂଚକ ଶବ୍ଦ ଉଚ୍ଚାରି କଣ୍ଠରେ ସାମାନ୍ୟ ବକ୍ର ହସି ସେ କହୁଛି—

ହୁଁ । ତା ହେଲେ ବାପାଙ୍କୁ ଆଗ ରାଞ୍ଚି ପଠାଇବା ଦରକାର ପଡ଼ିଲାଣି ଦେଖୁଛି । ଇସ୍—ଯେତେସବୁ ଇଡ଼ିଅଟିକ୍ ଖିଆଲ । ଅଲଗ୍ରାଇଟ୍—ସେ ଯାନ୍ତୁ ତାଙ୍କର ପାଦରେ ଚାଲି ଚାଲି—ଧର୍ମ ଅର୍ଜନ କରିବାକୁ ବାବୁ କିଏ ତାଙ୍କୁ ମନା କରୁଛି ? ତାଙ୍କ ସଙ୍ଗେ କଥା କହିବା ଲାଗି ବାବା ମତେ ଆଜିକାଲି ମହାନ୍ ଭୟ ଲାଗିଲାଣି । ମହା ଚଣ୍ଡା ବୁଢ଼ାଏ ବାଃ ଏଣୁତେଣୁ କରି କ'ଣ ଆବୁରୁଜାବୁର୍ ଗପିବେ । ସବୁବେଳେ ବିରକ୍ତ । ସବୁ କଥାରେ ଚିଡ଼ଚିଡ଼ । ଓଃ ! ଯାନ୍ତୁ ବାବୁ ସେ ! ଯାହା ଇଚ୍ଛା ତାଙ୍କର କରନ୍ତୁ । କିନ୍ତୁ ତ ତାଙ୍କର ବର୍ତ୍ତମାନ ଆଉ କାମ ନାହିଁ । ଏ ଘର ଉପରେ ତାଙ୍କର ଏବେ ଠିକେ ବି ଦାୟିତ୍ୱବୋଧ ନାହିଁ । ଏ ଘରେ ଭଲ ସେ କରନ୍ତି କଅଣ ? ଚାକର ବାକର ଏପରି କି କୁକୁର ଦୁଇଟାଙ୍କର ବି ଘର ଉପରେ ମାୟା ଅଛି; ମାତ୍ର ବାପାଙ୍କର ସେତକ ମଧ୍ୟ ନାହିଁ । ଯାନ୍ତୁ ବାବୁ ସେ—ତୁ କିନ୍ତୁ ବୋଉ ଯାଇପାରିବୁ ନାହିଁ ତାଙ୍କ ସଙ୍ଗରେ । ମୁଁ ସଫା

କହୁଦେଉଛୁ—ବାପାଙ୍କର ଗୋଟାଏ ବାଜେ ଖିଆଲ ବା ପାଗଳାମୀ ପାଇଁ ମୁଁ ତୋତେ ବଳି ଦେଇପାରିବ ନାହିଁ । ମୁଁ କହୁଦେଉଛି, ତୁ ଯାଇ-ପାରିବୁ ନାହିଁ ।

ବୁଢ଼ୀ ଚଥପି ବସିଛୁ ମୌନ ହୋଇ ଶଯାପଟ ଭଳି । ପାଟି ନାହିଁ କି ଚକ୍ଷୁ ନାହିଁ । ଗୁମ୍ ହୋଇ ଅଖି ତରାଟି ବସିରହୁଛି ।

ତୀର୍ଥବାସୀ ବାବୁ ଦେଖୁଥିଲେ ଓ ଶୁଣୁଥିଲେ କବାଟ ପାଙ୍କରୁ ଲୁଚିଲୁଚି । ଗୋଟାଏ ଫାର୍ସ ବା ମେଲୋଡ୍ରାମା ଭଳି ତାଙ୍କୁ ଏସବୁ ମନେ ହେଉଥିଲା ।

ମାଷ ହଠାତ୍ ବଡ଼ ପୁଅର ଅବର୍ଭାବ ଓ ତାଙ୍କ ଉଦ୍ଦେଶ୍ୟରେ ଏହିସବୁ ବକ୍ତୃତା ଶୁଣି ତାଙ୍କ ମନ ଟିକିଏ ବକ୍ର ହୋଇଉଠିଲା । ଏକ ଅନନୁଭୂତ ବେଦନାର କରୁଣ ରାଗିଣୀ ତାଙ୍କର ଅନ୍ତର ଭିତରେ ବାଜି ଉଠିଲା । ଆଜି ରାତି ପାହିଲେ କାଲି ସକାଳେ ସେ ଏ ଘରୁ ସବୁ ମାୟା-ମମତା ଛିଣ୍ଡାଇ ବାହାରିଯିବେ ଚିରଦିନ ଲାଗି । ସଂସାର ପଛରେ ପଡ଼ି ରହିବ । ପିଲାମାନଙ୍କର ଭଲ ସେ କି ଦୋଷ କରିଛନ୍ତି ? ବହୁ କଷ୍ଟ ସହ୍ୟ କରି ସେମାନଙ୍କୁ ସେ ମଣିଷ କରିଛନ୍ତି । ସେମାନେ ଆଜି ଜୀବନରେ ପ୍ରତିଷ୍ଠିତ । ପିଲାଦିନୁ ଅଜାଡ଼ି ସେ ସେମାନଙ୍କୁ ଅବାଧ ସ୍ୱାଧୀନତା ଦେଇଛନ୍ତି । ସେମାନଙ୍କ ଉପରେ ବୋଝ ହୋଇ ସେ କେବେ ରହି ନାହାନ୍ତି । ଆଜ ମଧ୍ୟ ଏଣିକି ସେ ସେମାନଙ୍କ ସୁଖ ଦୁଃଖରେ ସଂସାରରେ ଗୋଟିଏ ଅବାନ୍ତର ବୋଝ ହୋଇ ରହିବେ ନାହିଁ ବୋଲି ତାଙ୍କୁ କାଳ ଆସି ଖୋଜିବା ଆଗରୁ—ସେ କାଳକୁ ଖୋଜିବା ଉଦ୍ଦେଶ୍ୟରେ ତରବର ହୋଇ ଆଗଭୁରା ବାହାରି ଯାଉଛନ୍ତି ସଂସାରରୁ । ଆଜି ରାତି ପାହିଲେ କାଲି ସକାଳୁ ବନବାସ ଯୋଗ । ଅଥଚ ସେମାନେ ଏଇ ଶେଷ ବେଳାରେ ଏମିତି ନିଷ୍ଠୁର କଥା ଶୁଣାଇ ଦେଉଛନ୍ତି ! ! ତାଙ୍କ ଲାଗି ସ୍ଥାନ ଖାଲି କରିଦେବାକୁ ସେ ଏ ଘରୁ ଯାଉଛନ୍ତି—ଅଥଚ ଏ ସମୟରେ ସମସ୍ତଙ୍କ ଆଗରେ ଏମିତି ଟାଣ ଟାଣ ହୃଦୟବିଦାରକ କଥା କହୁଯାଉଛି ବଡ଼ ପୁଅ ? ତାକୁ ଟିକିଏ କଷ୍ଟ ବି ଲାଗୁ ନାହିଁ ?

ଝିକଏ ମାୟା ବ ଲଗୁନ ? ଅଥଚ ଏଇ ବଡ଼ ପୁଅ ମନୁଆ ଲଗି କ'ଣ ବା ସେ···। ଘୃଡ଼ ଘୃଡ଼··· ଓଃ ! ! !

ତୀର୍ଥବାସୀ ବାବୁ ଗଭୀର ଭାବରେ ଦୀର୍ଘଶ୍ୱାସ ଛାଡ଼ିଲେ । ତାଙ୍କର ହୃଦୟ ଆକୁଳ ହୋଇଉଠିଲା ଅଭିମାନରେ ଫୁଲି ଫୁଲି—କମ୍ପି କମ୍ପି—ସେ କବାଟ ଆଉଜାଇ ଖଟ ଉପରେ ଆସି ପଡ଼ିଗଲେ । ତା ପରେ କଡ଼ପଟିଆ ଶୋଇଯାଇ ସେ ସୁଁ ସୁଁ ହୋଇ କାନ୍ଦିଉଠିଲେ—

ସଂସାର ! ତୋତେ ରକ୍ଷା କରିବା ଲଗି ଜୀବନରେ ବହୁତ ଖଟିଛି । ଏବେ ତୋତେ ଭଲ କରି ଗଢ଼ିପାରି ଅଥଚ ତୋତେ ଅନ୍ୟ-ମାନଙ୍କ ଆଗରେ ଚହ୍ଲା ନ ପକାଇ ତୋର ମହତ୍ତ୍ୱ ରକ୍ଷାକରି ମୁଁ ତୋଠାରୁ ଗୌରବରେ ସମ୍ମାନର ସହିତ ବିଦାୟ ନେଇ ଯାଉଛି । ଅଥଚ ତୁ ମୋତେ ଶେଷ ବେଳାରେ ଏମିତି ଗୋଟେ ଧକ୍କା ଦେଲୁ ? ସଂସାରରେ ! ତୋ ପ୍ରତି ମୋର ମାୟା ନାହିଁ । ସେଥିଲଗି ମୋ ଉପରେ ତୋର ଦୟା ନାହିଁ ତ ନ ଥାଉ । ମାତ୍ର ଗଲା ଅଇଲାବେଳେ ମୋର ଏଇ ନଇଁଲା ପିଠି ଉପରେ ଏମିତି ଦାରୁଣ ବାଧା ମାରି ତୁ ଭଲା କ'ଣ ପାଇଲୁ ?

ତୀର୍ଥବାସୀ ବାବୁ କଇଁ କଇଁ ହୋଇ କାନ୍ଦିଉଠିଲେ । ବୁଢ଼ୀକୁ ଘେରି ଭିତରପଟ ବାରଣ୍ଡାରେ ସଂସାର ସେମିତି ବଢ଼ିଲେଇ ହେଉଛି । ନାନାଦି ଅବଲୟ ଦେଖାଇ—ନାନାଦି ଢଙ୍ଗ—ନାନାଦି ରଙ୍ଗ—ନାନାଦି ଧ୍ୱନି ଆଉ ନାନାଦି ନୃତ୍ୟର ଛଇ ଛଟକରେ ମାତି ମଉଛଇ ସଂସାର ସେମିତି ବଢ଼ିଲେଇ ହେଉଛି ।



— ତିନି —

ବହୁତ ସମୟ କାଢ଼ିବା ପରେ ତୀର୍ଥବାସୀ ବାବୁଙ୍କ ମନ ପୁଣି ଧୀରସ୍ଥିର ହୋଇଆସିଲା । ତାଙ୍କ ହୃଦୟ ଟିକଏ ଲଘୁ ବୋଧ ହେଲା । ଏକ ପ୍ରକାର ନିଶ୍ଚିନ୍ତ, ନିରୁଦ୍‌ବେଗ, ପ୍ରଶାନ୍ତ, ଗମ୍ଭୀର ତନ୍ଦ୍ରା ଭିତରେ ସେ କ୍ରମେ ଲୀନ ହୋଇଗଲେ ।

ତାଙ୍କର ଯେତେବେଳକୁ ନିଦ ଭାଙ୍ଗିଲା, ସେତେବେଳକୁ ରାତି ପ୍ରାୟ ଆଠଟା ହେବ । ତୀର୍ଥବାସୀ ବାବୁ ନିଦରୁ ଉଠି କିଛି ସମୟ ସେମିତି ବିଛଣା ଉପରେ ନୀରବ ଗମ୍ଭୀର ଭାବରେ ବସିରହିଲେ । କ୍ରମେ ଉପସ୍ଥିତ ପରିସ୍ଥିତି ପ୍ରତି ସେ ସଜାଗ ହୋଇଆସିଲେ । ପ୍ରଥମେ ସେ ଭାବିଲେ-- ମନୁଆବୋଉ କୁଆଡ଼େ ଗଲେ ? ଏତେବେଳଯାଏ ସେ ଏ ଘରକୁ ଆସି ନାହାନ୍ତି କାହିଁକି ? ସେ କ'ଣ ସେତିକିବେଳୁ ସେପଟେ ଅଛନ୍ତି ? ଅଥଚ ରାତି ଆସି ଆଠଟା ବାଜିଲାଣି । କିଛି ଜଣାପଡ଼ୁ ନାହିଁ ତାଙ୍କ କଥା । ଖଟ ପାଖରେ ଟେବୁଲ ଉପରେ ତାଙ୍କ ଲାଗି ନିର୍ଦ୍ଦିଷ୍ଟ ଜଳଖିଆ ଥୁଆ ଯାଇଛି । ତୀର୍ଥବାସୀ ବାବୁ ଭାବିଲେ—ତାଙ୍କୁ ଶୋଇବାର ଦେଖି ବୋଧେ କେହି ଉଠାଇ ନାହାନ୍ତି । ତେବେ ସେ ଯାହାହେଉ—ମନୁଆବୋଉ ଏତେବେଳଯାଏ ତେଣେ କ'ଣ ବା କରୁଛନ୍ତି ? ରାତି ପାହିଲେ ବନବାସ । କ'ଣ ସେ କରୁଛନ୍ତି ତେଣେ ? କ'ଣ ପୁଣି ନିଶା ଲାଗିଗଲା ନା କ'ଣ ? ଏଥର କିନ୍ତୁ ନିଶା ଲାଗିଲେ—ବାବା ହରିବ୍ରହ୍ମା ବି ଆସି ଆଉ ନିଶା ଛଡ଼ାଇ ପାରିବେ ନାହିଁ ।

ତୀର୍ଥବାସୀ ବାବୁ ବ୍ୟସ୍ତ ହୋଇଉଠିଲେ । କୁଆଡ଼େ ଗଲେ ମନୁଆବୋଉ ? ଘର ଭିତରେ ଆଲୁଅଟି ଜଳୁଛି । କାନ୍ଥରେ ନାନାନ୍ଦ ଦେବଦେବୀଙ୍କର ଫଟୋ ଝୁଲୁଛି । ତୀର୍ଥବାସୀ ବାବୁ ଉତ୍ସୁକ ଚିତ୍ତରେ ଚାରିଆଡ଼କୁ ଚାହିଁଲେ । କିନ୍ତୁ ଏ କ'ଣ ? ଘର ଭିତରେ ଏମିତି ସବୁ ଶୂନ୍‌ଶାନ୍ କାହିଁକି ? କିଛି ଯେ ଆଉ ଗୋଳମାଳ ଶୁଭୁ ନାହିଁ । ସବୁ କିପରି ନିସ୍ତବ୍‌ଧ—ନିଘୁନ୍ । ହଠାତ୍ ଏପରି ନୀରବ ଓ ଗମ୍ଭୀର ପରିସ୍ଥିତି

ଖୁବ୍ ବେଶୀ ଅସ୍ୱାଭାବିକ ବୋଲି ତାଙ୍କୁ ମନେହେଲା । ସେମାନେ କ'ଣ କେହି ଭିତରେ ଆଉ ନାହାନ୍ତି ନା କ'ଣ ? ଛୁଆଗୁଡ଼ାଙ୍କର ପାଟି ବି ଯେ ଆଜି ଶୁଭୁ ନାହିଁ । କ'ଣ ? କଥା କ'ଣ ? ହଠାତ୍ ଗୋଟାଏ ବିରାଡ଼ି ଆସି ଦୁଆର ମୁହଁ ପାଖେ ଠିଆ ହୋଇପଡ଼ି ତାଙ୍କ ଆଡ଼କୁ କଟମଟ କରି ଚାହିଁରହିଲା କିଛି ମୂହୂର୍ତ୍ତ । ତା ପରେ 'ମିଆଁଉ' ବୋଲି ଶବ୍ଦ କରି ପୁଣି ନିର୍ଲିପ୍ତ ଭାବରେ ଆଗୁଆ ମୁହାଁଇଲା । କାନ୍ଥ ଘଣ୍ଟା ଠକ୍‌ଠକ୍ ହୋଇ ସମୟକୁ ମାପିଯାଉଛି । ତୀର୍ଥବାସୀ ବାବୁଙ୍କୁ ପରିସ୍ଥିତିର ଏହି ଅସ୍ୱାଭାବିକତା ଖୁବ୍ ମାଡ଼ିପଡ଼ିଲା । ସେ ଅଧିକ ଭାବରେ ମନୁଆବୋଉଙ୍କର ଅନୁପସ୍ଥିତିକୁ ଅନୁଭବ କଲେ । ମାତ୍ର ଭିତରକୁ ଯାଇ ମନୁଆବୋଉଙ୍କୁ ଡାକିବାକୁ ତାଙ୍କର ଇଚ୍ଛା ଡାକୁ ନାହିଁ । ଭଲ ବି ଲାଗୁ ନାହିଁ । ଭୟ ମଧ୍ୟ ଲାଗୁଛି । ଏକପ୍ରକାର ବିରକ୍ତିକର ଘୃଣା-ସଂପୃକ୍ତ ଅଭିମାନଭରା ଭୟ । ତା ସଙ୍ଗେ ସଙ୍ଗେ ମନୁଆବୋଉ ପ୍ରତି କିଛିତ୍ ଈର୍ଷା ମଧ୍ୟ ଯେ ନ ମିଶିଛି ତା ନୁହେଁ । କିନ୍ତୁ ତଥାପି—

ତଥାପି ମନୁଆବୋଉ କୁଆଡ଼େ ଗଲେ ? ଆଜି ଯେ ବେଶୀ ସମୟ ନାହିଁ । ଆଜି ମୂହୂର୍ତ୍ତେ ମଧ୍ୟ ଏ—ପୁରରେ ରହିବାକୁ ମନ ଡାକୁ ନାହିଁ । କୁଆଡ଼େ ଗଲେ ମନୁଆବୋଉ ?

ଏହି ସମୟରେ ଦୁଆର ମୁହଁରେ ଚଟି ଶବ୍ଦ ଶୁଭିଲା । ତୀର୍ଥବାସୀ ବାବୁ ମୁହଁ ଟେକି ଚାହିଁଲେ ।

ବଡ଼ ପୁଅ ମନୁ ଆସିଛି ।

ତୀର୍ଥବାସୀ ବାବୁ ସଙ୍ଗେ ସଙ୍ଗେ ମୁହଁ ତଳକୁ କଲେ । ଏକପ୍ରକାର ଲାଜ ମଧ୍ୟ ଲାଗିଲା । ତାଙ୍କୁ ତା ମୁହଁକୁ ଚାହିଁବାକୁ ଭୟ ମଧ୍ୟ ଲାଗିଲା । ଅଭିମାନ ତ ସହଜେ । ବିରକ୍ତି ବି ଲାଗୁଛି । ଖୁବ୍ ଲମ୍ବା ଚଉଡ଼ା ବଳିଷ୍ଠ ବପୁ ଏଇ ମନୁର । ଗୋରା ତକତକ ଲାଲଚିଆ ଗୋରାମୁହଁ । ସେହି ମୁହଁରେ ସବୁବେଳେ ବାହାରୁଥାଏ ଗୋଟାଏ ବଳିଷ୍ଠ ଯୁବକୋଚିତ ପୌରୁଷଦୀପ୍ତ ବ୍ୟକ୍ତିତ୍ୱର ଦ୍ୟୁତି । ସେ ମୁହଁକୁ ଚାହିଁଲେ ଡର ଲାଗେ । ଏ ମୁହଁ କେବଳ ଆଦେଶ ଦେଇପାରେ । ଏ ବ୍ୟକ୍ତିତ୍ୱ ଅନ୍ୟକୁ ଚଳେଇ

ଦଏ । ସବୁ କଥାକୁ ଗୋଟାଏ କଠିନ ନେତୃସୁଲଭ ମନର ଜୋର୍‌ ବଳରେ ଏପଟ ସେପଟ କରିଦଏ ।

ତୀର୍ଥବାସୀ ବାବୁ ମଧ୍ୟ ସତକୁ ସତ ବଡ଼ ପୁଅକୁ ଡରନ୍ତି । ତା'ର ବ୍ୟକ୍ତିତ୍ୱ ପାଖେ ସେ ଟିକିଏ ଦବି ମଧ୍ୟ ଯା'ନ୍ତି । ଭରି ଠାଣି ଠାଣି କରି ଫୋପାଡ଼ିଲା ଭଳି କଥା କହେ । ତାକୁ ସମସ୍ତେ ଡରନ୍ତି । ସବୁ ସେ ଓଲଟ ପାଲଟ କରିଦେଇପାରେ ।

ତୀର୍ଥବାସୀ ବାବୁ ତା ଆଡ଼କୁ ନ ଚାହିଁ ତଳକୁ ମୁହଁ ପୋତି ଗମ୍ଭୀର ହୋଇ ବସିରହିଲେ । ମନୁ ବାବୁ ଟିକିଏ ଦୂରରେ ଠିଆ ହୋଇ ବଡ଼ ନିର୍ଲିପ୍ତ କଣ୍ଠରେ ମାମଲତକାରୀ ଢଙ୍ଗରେ ପଚାରିଲେ—

ଆପଣ କ'ଣ ନିହାତି କାଲି ସକାଳେ ପୁରୀ ଯିବେ ? ତୀର୍ଥବାସୀ ବାବୁ ତଳକୁ ମୁହଁ ପୋତି ଅଭିମାନିଆ ଗଳାରେ ଅଥଚ ଦୃଢ଼ଭାବରେ କହିଲେ –

ହଁ ।

ତା' ହେଲେ ଡ୍ରାଇଭରକୁ କହୁଛି – ଗାଡ଼ିରେ ତେଲ ଭରିଆଣୁ ।

ଗାଡ଼ି କ'ଣ ହେବ ?

ଆଜି ଆପଣ ଯିବେ କିପରି ?

ତୀର୍ଥବାସୀ ବାବୁ ବୈରାଗୀର ଉଦାସୀ ଓ କ୍ଷମାଶୀଳ ହସ ହସି କହିଲେ—

ମୂର୍ଦ୍ଦାରକୁ ଗଡ଼େଇ ଗଡ଼େଇ ନେବା ଯାହା, ଗାଡ଼ିରେ ବାନ୍ଧି ନେବା ସେଇଆ । ମୁଁ ଚାଲିକରି ଯିବି । ରଖ ତୁମ ଗାଡ଼ି ।

ନା—ନା, ସେ କଥା ହୋଇପାରିବ ନାହିଁ । ପୁରୀ ଏତିକି ଅଠର ମଇଲ ରାସ୍ତା । ଖବରଦାର—ଆପଣ ଚାଲିକରି ଜମା ଯାଇପାରିବେ ନାହିଁ ।

ତୀର୍ଥବାସୀ ବାବୁ ଟିକଏ ତାଚ୍ଛଲ୍ୟମିଶା ସ୍ୱରରେ ଅଥଚ ଆପଣା ବିଶ୍ୱାସରେ ଦୃଢ଼ପ୍ରତିଷ୍ଠିତ ହୋଇ କହିଲେ—

ଆରେ ବାବୁ ! ତା ତୋର ମୋ ଅଣ୍ଟାରେ ଲାଗିଲାଣି । ସେ ଭିଡ଼ନେବ ଏଥର ପବନ ମାଗେ । ତୁମେ ମୋତେ ଗାଡ଼ କ'ଣ ଦେଖାଉଛ ?

ଏମିତି ନନ୍‌ସେନ୍‌ ସିଲ୍ଲାଲ ବିତଣ୍ଡା କଥା ଶୁଣିଲେଇ ମନୁ ବାବୁଙ୍କର ମୁଣ୍ଡ ବିଗିଡ଼ଯାଏ । ସେ ବିରକ୍ତ ହୋଇ କହିଲେ—ଆପଣ ଏପରି ପିଲାଙ୍କ ଭଳି କ'ଣ ହେଉଛନ୍ତି ବାବା ? ଆପଣ ମୁଣ୍ଡ ଠିକ୍ ହେବା ଲୋକଙ୍କ ଭଳି ସିନା କାମ କଲେ ହେବ ? ମଝିରେ ମଝିରେ ଆପଣ ଏମିତି କାଣ୍ଡ କରି ବସନ୍ତି ଯେ—

ତୀର୍ଥବାସୀ ବାବୁଙ୍କର ଅଭିମାନ ଆହୁରି ବଢ଼ିଗଲା । ମାତ୍ର ସେ ତାହା ପ୍ରକାଶ ନ କରି କହିଲେ—

ଆରେ ବାବୁ ! ଏତେ କଥାବାର୍ତ୍ତାରୁ କ'ଣ ମିଳିବ ? ତୁମେ ସବୁ ଏଥର ବଡ଼ ହେଲଣି । ତୁମ ସଂସାର ତୁମେ ସମ୍ଭାଳ । ଆମେ ଦୁହେଁ କାଲି ସକାଳୁ ପଦଯାତ୍ରା କରିବୁ ପୁରୀ । ସେଠାରେ ମଧ୍ୟ ଶେଷ କାଳ କଟିବ ଆମରି । ଆମ ମୁଣ୍ଡ ଖରାପ ହେଲାଣି ବୋଲି ତୁମେ କଅଣ ସବୁ ତୁମ ମୁଣ୍ଡ ଖରାପ କରୁଛ ? ଆମେ ଢେର୍ ଦେଖିଲୁଣି ବାବୁ, ଆଉ ଆମକୁ ଦେଖାଅ ନାହିଁ । ଏଥର ପକାଅ ଡ୍ରପ୍‌ସିନ୍ ।

ମନୁ ବାବୁ ଦେଖିଲେ···ସ୍ତ୍ରୀଙ୍କ ସଙ୍ଗେ ବିଶେଷ କଥାବାର୍ତ୍ତା କରିବାକୁ ସମୟ ନାହିଁ । ଧୈର୍ଯ୍ୟ ବି ନାହିଁ । ଲାଭ ମଧ୍ୟ ନାହିଁ । ଯାଆନ୍ତୁ ସେ ପୁରୀ । ରହନ୍ତୁ ଯାଇ ସେଠି ସେ କେତେ ଦିନ । ମଝିରେ ମଝିରେ ଯାଇ ତାଙ୍କର ଖବର ନେବାକୁ ହେବ । ମାତ୍ର ମାଆକୁ ଛାଡ଼ିଦେଲେ ଘର ଚଳିବ ନାହିଁ । ବୋଉର ମଧ୍ୟ ଯିବାକୁ ଆଉ ଶକ୍ତି ନାହିଁ । ତେଣୁ ସେ କହିଲେ—

ତା ହେଲେ ଆପଣ ଯଦି ନିହାତି ଆମ୍ଭମାନଙ୍କ କଥା ନ ମାନିବେ ତ ଯାଆନ୍ତୁ, ମାତ୍ର ବୋଉ ତ କାଲି ସକାଳେ ଆପଣଙ୍କ ସଙ୍ଗେ ଯାଇପାରୁନାହିଁ ।

ଶେଷୋକ୍ତ କଥାରେ ତୀର୍ଥବାସୀ ବାବୁ ଚମକିପଡ଼ି ବଡ଼ ପୁଅର ମୁହଁକୁ ଆଖି ତରାଟି ଅନାଇଲେ ।

ବୋଧହୁଏ ଯାଇପାରିବ ନାହିଁ—ମାନେ ?

କେମିତି ଯିବ ? ଆଜି ସନ୍ଧ୍ୟାବେଳେ ହଠାତ୍ ତାର ମୂର୍ଚ୍ଛା କ'ଣ ହୋଇଗଲା । ସେଇଠି ବସିବା ସ୍ଥାନରେ ହିଁ ଅଚେତ ହୋଇ ଢଳିପଡ଼ିଲା । ଡାକ୍ତର ଆସି ଇଞ୍ଜେକ୍ସନ ଦେଲା ପରେ ଏଇ ଅଳ୍ପ ସମୟ ହେଲା ଚେତା ଫେରିଛି । ଆପଣ ଶୋଇ ଯାଇଥିଲେ । ତେଣୁ ଆମେ ଆପଣଙ୍କୁ ଉଠାଇଲୁ ନାହିଁ । ଡାକ୍ତର କହନ୍ତି—ବୋଧହୁଏ ପୂର୍ଣ୍ଣ ବିଶ୍ରାମ ନେବା ଦରକାର । କେବଳ ବିଛଣାରେ ପଡ଼ି ରହିବ ଦିନରାତି । ସେ ତେଣୁ ଆପଣଙ୍କ ସାଙ୍ଗରେ ଚାଲି ଚାଲି ଅଠର ମାଇଲ ବାଟ ଯିବ ବା କିପରି ? ତାକୁ ଏପରି ଅବସ୍ଥାରେ ମୁଁ ଛାଡ଼ିବ ବା କିପରି ?

ତୀର୍ଥବାସୀ ବାବୁଙ୍କ ମନ ସଙ୍ଗେ ସଙ୍ଗେ ଚରମ ଅବିଶ୍ୱାସ, ବିରକ୍ତି, ଅଭିମାନ ଓ ବିତୃଷ୍ଣାରେ ତିକ୍ତ ହୋଇଉଠିଲା । ସେ ପୁଅଙ୍କ ଆଡ଼ୁ ମୁହଁ ଫେରାଇ—ଏକପ୍ରକାର ତାକୁ ପଛ କରି ପ୍ରଚଣ୍ଡ ବିରକ୍ତିର ସହ କହିଲେ—

ହଉ-ହଉ, ଭଲ କଥା । ସେ ନ ଯାଆନ୍ତୁ ବାବୁ, ତାଙ୍କ ଲାଗି ତ ମୁଁ ଏ ନରକରେ ପଡ଼ି ସଢ଼ିବି ନାହିଁ । ଠିକ୍ ଅଛି । ଥାଆନ୍ତୁ ବାବୁ ସେ । ରଖ ତାଙ୍କୁ ତୁମେମାନେ ସମସ୍ତେ ମିଶି । ଠେଲିଠାଲି ସ୍ୱର୍ଗକୁ ପଠାଇଦେବ ପଛରେ । ଆମେ ଚାଲିଲୁ ।

ହଉ ବାବୁ—ଯାଅ ।

ମନୁ ବାବୁ ଆଉ ବେଶୀ ସମୟ ସେଠାରେ ନ ରହି କିଛି ଉତ୍ତର ନ ଦେଇ ଚାଲିଆସିଲେ । ସେ ଗଲା ପରେ —

ତୀର୍ଥବାସୀବାବୁ ବିଛଣାରୁ ଉଠି ଅସ୍ଥିର ଭାବେ ଘର ଭିତରେ ବୁଲି ଚାଲିଲେ । ଛି-ଛି-ଛି ! ସ୍ୱାପ ମହାମାୟାବିନୀ, କୈତବିନୀ, ଛଳନାମୟୀ, ପାପୀୟସୀ ନାରୀ !! ହଃ !! ଲଗେଇଦେଲା ଏ ଶେଷ ମୁହୂର୍ତ୍ତରେ ଗୋଟାଏ ପାଲ ! ଗୋଟାଏ ନାଟ !! ଏମିତି ଗୋଟିଏ ପେଖନା ଦେଖାଇ ଫେର୍

କିଛି ଧନ ଏଠି ଏ ନରକରେ ମଣ୍ଟାଳ ଦେବ । ସ୍ୱାପ ମୂର୍ଖ--ଏବେଣ ଚେଲ ଘଡ଼କ ଅଣା—ତେଣେ ପୁଅ ମୁଣ୍ଡକୁ ବ ଆଶା !!! ହେଲ ବାବୁ—ହେଉ । ଥାଅ ତୁମେ । ପୁଅ ବୋହୂ, ନାତି ନାତୁଣୀଙ୍କୁ ନେଇ ଘାଣ୍ଟି ହେଉଥାଅ । ମନ ମାନ ନାହିଁ ଏ ଯାଏ—ନିଶା ଗୁଡ଼ ନାହିଁ—ଆଶା ମେଣ୍ଟି ନାହିଁ । ଥାଅ ତାହେଲେ ଏଠି ନାକ ଡଳେ ଘୁଷୁରିବାଯାଏ । ଆଉ କିନ୍ତୁ ସୁଜେଷ୍ଟି ମହାରାଜ । ପଛକୁ ଫେରି ଚାହିଁବେ ନାହିଁ ଜାଣିଥାଅ । ଘାଣ୍ଟି ହେଉଥାଅ ଏଠି—ସ୍ୱାପ ନରକର କୀଟାନୁକୀଟ ! ମର—ମର ।

ଅନେକ ରାତି ପର୍ଯ୍ୟନ୍ତ ତୀର୍ଥବାସୀ ବାବୁଙ୍କୁ ଆଉ ନିଦ ଲାଗିଲା ନାହିଁ । ସେ ମନେ ମନେ ସ୍ଥିର କଲେ ଯେ—ଆଜି ରାତି ନ ପାହୁଣୁ, କେହି ନ ଉଠୁଣୁ ସେ ଏକୁଟିଆ ଲୁଚି ଏ ଘର ଛାଡ଼ି ଚାଲିଯିବେ । ମହାପ୍ରସ୍ଥାନର ପଥ ଉପରେ ସେ ଚାଲିଯିବେ ନିର୍ଲିପ୍ତ ଉଦାସୀନ ଭାବରେ ଉଗଡ଼ତ ହୋଇ—ଦୁଇ ପଟେ ଦୁଇ ଶୂନ୍ୟ ହସ୍ତକୁ ଝୁଲାଇ ଝୁଲାଇ । ଆଉ ଫେରିବେ ନାହିଁ । ଚାଲିଯିବେ ସେ ମୁକ୍ତିର ସନ୍ଧାନରେ । ସ୍ୱର୍ଗପଥର ଯାତ୍ରୀ । ଅମୃତର ସନ୍ତାନ—ଅମୃତର ପିପାସା ନେଇ ଭୂମାନନ୍ଦ ଲାଭ କରିବାର ଆକୁଳତାରେ ଚାଲିଯିବେ ସେ । ପଡ଼ିଥାଉ ପଡ଼ିଥାଉ—ଏ ନରକରେ ଘାଣ୍ଟି ହୋଇ ଛଳନାମୟୀ ମାୟାବିନୀ ହତଭାଗିନୀ ମତ୍ତା ବୃତ୍ତି । ସଂସାରରେ କେହି କାହାର ନୋହେ—ସତ କଥା – ଆସିଥିଲୁ ଏକା ମନ – ଯିବୁ ପୁଣି ଏକା । କେହି ତୋର ପଛରେ ଯିବେ ନାହିଁ । ଆରେ ମୂଢ଼ ମନ ! କିଏ ତୋର ପୁଅ ? ଆରେ କିଏ ତୋର ଭାର୍ଯ୍ୟା ?

ତୀର୍ଥବାସୀ ବାବୁ ଏତିକି ସ୍ଥିର କରି ବିଛଣାରେ ପଡ଼ିରହିଲେ । ମାତ୍ର ଆଖିକୁ ନିଦ ଆସିଲା ନାହିଁ । ଏ ରାତି ଶେଷ ରାତି । କେତେବେଳେ ଏ ରାତି ପାହିବ । ତାଙ୍କ ଆଖି ଆଗରେ ନୀଳଚକ୍ର ଆଉ ପତିତପାବନ ବାନା ଉଡ଼ୁଥିଲା ଫରଫର ହୋଇ !

—o—

—ଶୂନ୍ୟ—

ଘର ନ ପାହୁଣୁ ସେଦିନ ଜାଙ୍ଗୁଲ ଜାଙ୍ଗୁଲ ପାଚଳ ଅନ୍ଧାର ଭିତରେ ତୀର୍ଥବାସୀ ବାବୁ ଘରୁ ବାହାରିଲେ । ସେତେବେଳକୁ ଘରେ କେହି ଉଠି ନାହାନ୍ତି । କେବଳ ବାଘୁଆ କୁକୁର ଦଶ୍ଟା ଘର ଭିତର ଅଗଣାରେ ସଁ ସଁ ହୋଇ ଦଉଡ଼ ଯାଉଛନ୍ତି—କ'ଣ ସବୁ ଶୁଙ୍ଘି ପକାଉଛନ୍ତି ଭୂମି ଉପରୁ – ମଝିରେ ମଝିରେ କାହା ଅଡ଼କୁ ଚାହିଁ ଦୁଇ ଥର ଭୁକ ଦେଉଛନ୍ତି—ତା'ପରେ ପୁଣି ଠାଏ ଶୋଇପଡ଼ ଖୁଁ ଖୁଁ ହୋଇ ଦେହ କୁଣ୍ଡେଇ ଦେଉଛନ୍ତି । ଏତିକ ଛଡ଼ା ଚାରିଆଡ଼େ ଶୂନ୍‌ଶାନ୍ । ତେବେ ସାହିର ମଦମା ସାହୁ ବୁଢ଼ା ସବୁ ଦିନ ପରି ଖୁବ୍ ସକାଳୁ ଉଠି ଗାଧୋଇସାରି ଖୁବ୍ ବଡ଼ ପାଟିରେ ବିଷ୍ଣୁ ସହସ୍ର ନାମ ଗାଇ ଗାଇ ଘରକୁ ଫେରୁଛି । କୋଉଠି ଗୋଟେ କଜଳପାତି ଟେଁ ଟେଁ ହୋଇ ବୋବେଇ ଲାଗିଛି । ଚାରିଆଡ଼େ ଗୋଟାଏ ପବିତ୍ର ଶୀତଳତାର ବାୟୁ-ମଣ୍ଡଳ । ଏଇ ବେଳରେ ମନଟା କେଣ୍ ହାଲୁକା ହୋଇଯାଏ । ଯୁଏଁ ଯୁଏଁ ମନଟା ଆଉ ଗୋଟାଏ ପବିତ୍ର ଧାମକୁ ଭାସିଯାଏ । ସବୁ ଦିନେ ଏତିକିବେଳେ ତୀର୍ଥବାସୀ ବାବୁ ଉଠନ୍ତି । ଶୌଚକର୍ମ ସାରି ନାମ ଭଜନ କରନ୍ତି । ଆଜି କିନ୍ତୁ ସେ ପୂର୍ବ ମୁକ୍ତିପଥର ଯାତ୍ରୀ । ଆଜି ତାଙ୍କର ମନରେ ଆଉ କୌଣସି ପ୍ରକାର ବିକାର ନାହିଁ । ସବୁ ମାୟା, ମୋହ, ଆସକ୍ତି, ଅନୁରାଗ ଓ ଅନୁଶୋଚନାରୁ ସେ ଆଜି ମୁକ୍ତ, ସେ ଆଜି ଏକା—ସଂପୂର୍ଣ୍ଣ ଭାବରେ ସିଏଁ ଏକା । ଏ ସଂସାର ଏଇଠି ପଡ଼ିରହିଲା, ପଡ଼ିରହିଲେ ସେମାନେ ପଛରେ—ମନୋରଞ୍ଜନ – ଦେବରଞ୍ଜନ – ଲୋକରଞ୍ଜନ – ମଞ୍ଜୁଳିକା – ଆଉ ବୋହୂମାନେ—ନାତିନାତୁଣୀମାନେ—ଆଉ ଶେଷରେ ସେଇ ଘୋର ମାୟାଚ୍ଛନ୍ନା ସଂସାରକୁଟର ମନୁଆବୋଉ । ରହନ୍ତୁ ସେମାନେ ପଛରେ । ଆଉ ପଛକୁ ସେ ଚାହିଁବେ ନାହିଁ···ଚାହିଁବେ ନାହିଁ···ଚାହିଁବେ ନାହିଁ ।

ଖଣ୍ଡିଏ ଲୋଟା ଆଉ ଖଣ୍ଡିଏ କମ୍ବଳ ସଙ୍ଗେ ଗୋଟିଏ ବାଡ଼ ଧରି ତୀର୍ଥବାସୀ ବାବୁ ଦାଣ୍ଡ ଅଗଣାର କାନ୍ଥରେ ମୁଣ୍ଡିଆଟିଏ ମାରି ଦୀର୍ଘଶ୍ୱାସ ଛାଡ଼ିଲେ –

ସଂସାରରେ ! ତୋ ଲାଗି ବହୁତ ଖଟିଛି — ତୋତେ ମଧ୍ୟ ବହୁତ ଦେଇଛି । ଏଣିକି ତୁ ଥାଆ, ମୁଁ ଗ୍ଲଲି ।

"ଆହେ ବଳୀଆରଭୁଜ ! ନୀଳାଚଳନାଥ !" କହି ଉଗ ଉଗ ହୋଇ ତୀର୍ଥବାସୀ ବାବୁ ରାସ୍ତା ଉପରେ ଆଗେଇଲେ । ଗତି ତଥାପି ପାହୁ ନାହିଁ । ମୁକ୍ତିର ସନ୍ଧାନରେ ପାଗଳ ପରି ସେ ନୀଳାଚଳ କ୍ଷେତ୍ର ଉଦ୍ଦେଶ୍ୟରେ ଧାଇଁଗ୍ଲଲେ । ସଂସାର ତାଙ୍କ ମନରେ ଗୋଡ଼େଇ ଗଲା ନାହିଁ । କିଛି ବାଟ ଗଲା ପରେ ସେ ଲକ୍ଷ୍ୟ କଲେ—କାହୁଁ ଗୋଟିଏ ବୁଲା କୁକୁର ତାଙ୍କ ପଛେ ପଛେ ସୁଁ ସୁଁ ହୋଇ ଧାଇଁ ଗ୍ଲଲିଛି ।

ତୀର୍ଥବାସୀ ବାବୁ ହସିଦେଇ ପୁଣି ଆଗକୁ ମୁହାଁଇଲେ । ରାସ୍ତା କଡ଼ରେ ଗୋଟିଏ ବାଡ଼ ଉପରେ ବସି ଗଞ୍ଜାଟିଏ ଗଳା ଲମ୍ବାଇ ବିକଳରେ ଡାକ ଗ୍ଲଡ଼ୁଛି—

"ଚକ୍ରଧର-ଅ-ଅ-ଅ ! ପାର୍କର-ଅ-ଅ-ଅ ! ! !

ତୀର୍ଥବାସୀ ବାବୁ ପଛରେ ପଡ଼ିଥିବା ସେହି ସଂସାରକୁ ମହା ଆକ୍ରୋଶରେ ଉପେକ୍ଷା କରିକରି ଆଗକୁ ମାଡ଼ିଗ୍ଲଲେ । ଘରର କାହାକଥା ତାଙ୍କର ଆଉ ମନେ ପଡ଼ୁ ନାହିଁ । ଏପରିକି ମନୁଆବୋଉର ମାୟାକୁ ମଧ୍ୟ ସେ ଉପେକ୍ଷା କରି କରି ଗ୍ଲଲିଛନ୍ତି । ଯଥେଷ୍ଟ ହୋଇଛି । କାଲି ରାତିଠାରୁ ସେ ଏଇ ମନୁଆବୋଉର କଥା ହିଁ ଭାବିଛନ୍ତି । ରାତିଠାରୁ ନିଦ ହୋଇ ନାହିଁ । ମନୁଆବୋଉ ପ୍ରତି ବିରକ୍ତି ତିକ୍ତତାରେ ମନ ବ୍ୟାକୁଳ ହୋଇଉଠିଛି । ମନୁଆବୋଉ ଉପରେ ଜୀବନଯାକ ସେ ଯେଉଁ ଭରସା କରି ଆସିଥିଲେ - କାଲି ରାତିକ ଭିତରେ - ସେ ସବୁ ଟିକିଟିକି ହୋଇ ଭାଙ୍ଗିଗଲା । ସଂସାରର ସବୁ ଯେମିତି ମିଥ୍ୟା ଆଉ ଛଳନା— ମନୁଆବୋଉ ବି ସେମିତି ଗୋଟା ସୁଦ୍ଧା ମିଥ୍ୟା ଆଉ ଛଳନା –

ଠିକ୍ ଅଛି — ବାବା ଠିକ୍ ଅଛି ।

ତୀର୍ଥବାସୀ ବାବୁ ପରମ ମୁକ୍ତ ପୁରୁଷର ଉଦାର ଚେତନାରେ ହସି ହସି କ୍ଷମାଶୀଳ ସିଦ୍ଧାନ୍ତରେ ଦୃଢ଼ ହେଉଁ ହେଉଁ ଭାବି ଗ୍ଲଲେ । ଠିକ୍ ଅଛି — ବାବୁ — ଠିକ୍ ଅଛି । ସଂସାରକୁ ଛାଡ଼ିବାକୁ ହେବ ।

ମନୁଆବୋଉକୁ ବ ଗୁଡ଼ିବାକୁ ହେବ । ନ ହେଲେ – "କପୋତ ପ୍ରାପ୍ତ ଯିବୁ ନାଶ ।"

ଆଜ କେଉଁ ଅନ୍ଧକାର ପାରିହେବନାହିଁ । ମନୁଆବୋଉ ସବୁ ମିଥ୍ୟା, ତାହେଲେ ସଂସାର ବ ଘୋର ମିଥ୍ୟା । ମନୁଆବୋଉକୁ ସବୁ ଅଧବାଟରେ ଗୁଡ଼ିଦେଇ ଆସିଛେଳ – ତେବେ ଆଜ ପନ୍ଥୁଆ କ'ଣ ? ଏଣିକ –

"ଥକ୍‌କା ମନ ଗ୍ଳା ଯିବା……
ଚକ୍‌କା ନୟନ ଦେଖିବା…… ।"

ତୀର୍ଥବାସୀ ବାବୁ ଜଗନ୍ନାଥ ସଡ଼କ ଉପରକୁ ଉଠି ମୋକ୍ଷ ପଥରେ ପରମ ଉତ୍ସାହରେ ଗଲେ । ଆଖି ଆଗରେ – ନୀଳଚକ୍ର ଉପରେ ଫରଫର ହୋଇ ଉଡୁଛି ଅଧମଉଦ୍ଧାରଣ ବାନା… । ବନ୍ଦୀଶାଳାରୁ ଛୁଟିଲା ପରି ତାଙ୍କୁଇ ଧ୍ୟାନ କରି କରି ତୀର୍ଥବାସୀ ବାବୁ ଆଗେଇଗଲେ ।

– ୦ –

## —ପାଞ୍ଚ—

ସତଙ୍କୁ ସତ ମାଇଲ ମାଇଲ ବିସ୍ତୃତ ଦୂର ଦିଗନ୍ତରେ ନୀଳଚକ୍ର ଉପରେ ଫରଫର ହୋଇ ଉଡ଼ୁଥିବା ପତିତପାବନ ବାନା ଦେଖି-ପାରିଲେ ତୀର୍ଥବାସୀ ବାବୁ । ସମୁଦ୍ରର ହାଓ୍ୱାରେ ଫରଫର ହୋଇ ଉଡ଼ୁଛି ବାନା ବଳୀସ୍ୱାରଭୁଜର । ହାତ ହଲାଇ ଡ଼ାକୁଛି ସେ – ସଂସାର-ପାରର ଆର୍ତ୍ତୀ, ଜିଜ୍ଞାସୁ, ଅର୍ଥାର୍ଥୀ ଆଜ ଭକ୍ତମାନଙ୍କୁ – ଆସ – ଆସ – ଆସ – ଧାଇଁ ଆସ ପ୍ରକୃତିର ମାୟାଜାଲ ଛିଣ୍ଡାଇ ମୋ କୋଳକୁ – ମୋର ଶରଣ ନିଅ—ସବୁ ଛାଡ଼ – ମୁଇଁ ତୁମକୁ ମୋକ୍ଷ ଦେବି – ମୁଇଁ ତୁମକୁ ମୋକ୍ଷ ଦେବି – ଆଉ କିଛି ମାତ୍ର ଶୋଚନା କର ନାହିଁ ।

ତୀର୍ଥବାସୀ ବାବୁଙ୍କ ଦେହ ରୋମାଞ୍ଚିତ ହୋଇଉଠିଲା । ତାଙ୍କର ଅମ୍ବା ପୁଲକିତ ହୋଇଉଠିଲା । ହେଇ ସେ ଡ଼ାକୁଛି ଏତେ ଦୂରରୁ, ପୁଣି ଏତେ ନିକଟରୁ ହାତ ହଲାଇ—ସମୁଦ୍ରର ଗର୍ଜନରେ ତା'ର ଡ଼ାକ ଭାସିଆସୁଛି । କିଏ ଶୁଣୁଛି – କିଏ ବା ଦେଖୁଛି ? ଯିଏ କିନ୍ତୁ ଦେଖିପାରେ ଏଇ ହାତଠାରି – ଯିଏ କିନ୍ତୁ ଶୁଣିପାରେ ତାର ଏଇ ବ୍ୟାକୁଳ ଡାକ ସେ କ'ଣ ଥୟ ଧରି ରହିପାରେ ? "ଭଲ ଲୀଳା ଲଗାଇଛୁରେ ଚକାଡ଼ୋଳା—ଶ୍ରୀବତ୍ସନୋଦିଆ– ଲୀଳାନିଧି !" ଖାଲକୁ ପେଲି ଦେବାରେ ତୋର କେଡ଼େ ଆନନ୍ଦ—ପୁଣି ଖାଲରୁ ଉଠାଇଦେବା ଲାଗି ତୋର କେଡ଼େ ଆକୁଳତା ! ଜାଲରେ ପକାଇ ଦେବାରେ ତୋର କେଡ଼େ ଆହ୍ଲାଦ – ପୁଣି ଜାଲରୁ ମୁକୁଳାଇବା ଲାଗି ତୋର କେଡ଼େ ଆଗ୍ରହ !

ତୀର୍ଥବାସୀ ବାବୁଙ୍କ ଆଖି ସଜଳ ହୋଇଉଠିଲା । ତାଙ୍କର ପାଦ ଚଞ୍ଚଳ ହୋଇଉଠିଲା । କ୍ଷେତ୍ର ଆଉ ବେଶୀ ବାଟ ନାହିଁ । ଆଗରେ ଅଠରନଳା—ବାଟରେ ବାଟମଙ୍ଗଳା – ସେଇଠୁ ଲମ୍ବି ଯାଇଛି ବଡ଼ଦାଣ୍ଡ—ସିଂହଦ୍ୱାର ପର୍ଯ୍ୟନ୍ତେ ।

ଉଚ୍ଚାମିଚ୍ଚ ବାଲିବନ୍ତ—ଝାଉଁ ଝାଉଁ ଝାଉଁବଣ । ଯୁଆଡ଼େ ବୁଲିବ ଅଖି ବାଧା ପାଇବ ନାହିଁ—ସୁଲୁ ସୁଲୁ ହୋଇ ବହିଆସୁଛି

ସମୁଦ୍ରପଟରୁ ଶୀତଳ ପବନ । ଖାଲି ବାଲି ଆଉ ବାଲି—ତା' ଉପରେ ଚକ୍ ଚକ୍ ଭଙ୍ଗା ଶାମୁକା, ଗେଣ୍ଡା ଆଉ ବହୁରଙ୍ଗୀ ସାମୁଦ୍ରିକ ଜୀବଙ୍କ ଖୋଳା ଏଠି ପାଦ ଦେଲେ ହିଁ ମନ ଆଉ ପ୍ରକାରେ ହୋଇଯାଏ । ଏ ପୃଥିବୀ ଏଇଠୁ ସରିଛି କବା ଏ ପୃଥିବୀ ଏଇଠୁ ଆରମ୍ଭ ହୋଇଛି ।

ତୀର୍ଥବାସୀ ବାବୁ ଷେଟରେ ପହଞ୍ଚିଲେ ଠିକ୍ ଘ୍ଭରଟାବେଳେ । ଗତକାଲି ରାତିଟାଯାକ ଅନିଦ୍ରା । ଆଜି ପୁଣି ଅଠର ମାଇଲ ପଥଶ୍ରମ । ଦେହ ଓ ମନ ମୁକ୍ତିର ଉତ୍ତେଜନାରେ କ୍ଲାନ୍ତ ଓ ଅବସନ୍ନ ହୋଇ ପଡ଼ିଲାଣି । ବହୁ ବେଳୁଁ ତାଙ୍କ ପେଟରେ ମଧ୍ୟ କିଛି ପଡ଼ି ନାହିଁ । ତୀର୍ଥବାସୀ ବାବୁ ବଡ଼ଦାଣ୍ଡକୁ ସ୍ପର୍ଶ କଲାମାତ୍ରେ ଏକ ଅପୂର୍ବ ପୁଲକ ଓ ରୋମାଞ୍ଚରେ ଉଲ୍ଲସିତ ହୋଇ ସେଇ ଦାଣ୍ଡର ଧୂଳି ଉପରେ ଲମ୍ବ ହୋଇ ଶୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସହରର ଯାନବାହନ, ଲୋକଗହଳି ଓ ଠେଲାପେଲା ସବୁ ଭିତରେ ବି ତୀର୍ଥବାସୀ ବାବୁ ଅନୁଭବ କଲେ—ସେ ବର୍ତ୍ତମାନ ସ୍ୱର୍ଗଧାମକୁ ପ୍ରାପ୍ତ ଆସିଗଲେଣି । ତାଙ୍କର ହୃଦୟ ଏକ ଅନନୁଭୂତ ପରିପୂର୍ଣ୍ଣତାରେ ଶାନ୍ତ ହୋଇଉଠିଲା । ସେ ବଡ଼ଦାଣ୍ଡରେ ମୁଣ୍ଡିଆ ମାରିସାରି ନିଜର ପୈତୃକ ଘରକୁ ଗଲେ । ସେଠାରେ ନିତ୍ୟକର୍ମାଦି ଶେଷକରି ଶୌଚ ହୋଇ ସେ ପୁଣି ଶ୍ରୀମନ୍ଦିର ଆଡ଼କୁ ଆସିଲେ । କେବଳ ଉଦରର କ୍ଷୁଧା ବ୍ୟତୀତ ସଂସାରର କୌଣସି ଅନୁଭୂତି ତାଙ୍କର ଆଉ ନ ଥିଲା । ସେସବୁ ଦେଖୁଥିଲେ ମଧ୍ୟ କିଛି ଦେଖୁ ନ ଥିଲେ । ତାଙ୍କ କାନରେ ସବୁ କୋଳାହଳ ବାଜିଲେ ମଧ୍ୟ ସେ କିଛି ଶୁଣୁ ନ ଥିଲେ । ଅରୁଣସ୍ତମ୍ଭ ପାଖରେ ମୁଣ୍ଡିଆ ମାରି ସେ ବାଇଶି ପାହାଚ ଉପରକୁ ମାଡ଼ିଗଲେ । ତା ପରେ ପ୍ରଥମେ ପ୍ରଧାନ ଫାଟକ ନିକଟରେ ପତିତପାବନଙ୍କୁ ଦର୍ଶନ କରି ସେ ମହାପ୍ରସାଦ ସେବା ଉଦ୍ଦେଶ୍ୟରେ ଭୋଗମଣ୍ଡପ କଡ଼କୁ ଗଲେ । ସେଠାରେ ନିର୍ବିକାର ଭାବରେ ସେ ଏକ ପରିଚ୍ୟକ୍ତ କୁଡ଼ୁଆରେ କିଛି ଅଭଡ଼ା ଓ ଡାଲି ତରକାରୀ ସେବାକରି ପାଣି ପିଇଲେ । ତା' ପରେ ସେଠାରୁ ସେ ବେଢ଼ା ଭିତରକୁ ଆସି ଗୋଟିଏ ଅପେକ୍ଷାକୃତ ନିର୍ଜନ ସ୍ଥାନରେ ବସି କିଛି ସମୟ ବିଶ୍ରାମ ନେଲେ ।

ଗତ ରାତିର ଅନିଦ୍ରା—ଅତ୍ୟଧିକ ମାନସିକ ଉତ୍ତେଜନା—ପଥଶ୍ରମଜନିତ କ୍ଲାନ୍ତି ଓ ସଙ୍ଗେ ସଙ୍ଗେ କ୍ଷୁଧିତ ଉଦରରେ କିଛି ଖାଦ୍ୟ

ଓ ଗାମାପୁ—ଶ୍ରୀର୍ଥବାସୀ ବାବୁଙ୍କ ଦେହ ଟିକଏ ଝିମ୍ ଝିମ୍ ଲାଗିଲା । ଆଗରେ ଜଗନ୍ନାଥ ମନ୍ଦିରର ବେଢ଼ା ଭିତରେ ବହୁ ଭକ୍ତଙ୍କର କୋଳାହଳ । କେତେକ ଭକ୍ତ ଗୋଟିଏ ସ୍ଥାନରେ ବସି କୀର୍ତ୍ତନ କରୁଅଛନ୍ତି । ଗୋଟିଏ ସ୍ଥାନରେ ପଣ୍ଡାଏ ବସି ଭାଗବତ ପାରାୟଣ କରୁଛନ୍ତି । ଲକ୍ଷ୍ମୀ ମନ୍ଦିର ନିକଟରୁ ଭାସିଆସୁଛି ଭକ୍ତିତଦ୍‌ଗତ କଣ୍ଠରୁ ତୁଳସୀ ଦାସଙ୍କର ରାମଚରିତ ମାନସାମୃତ ପଦାବଳୀ । ବଟ ଗଣେଶଙ୍କ ନିକଟରେ ଜଣେ ଗମ୍ଭୀର କଣ୍ଠରେ ଶ୍ରୀମଦ୍ ଭଗବଦ୍‌ଗୀତା ପାରାୟଣ କରୁଛନ୍ତି । କେତେକ ସନ୍ନ୍ୟାସୀ ଖଞ୍ଜଣୀ ଓ ଗିନି ବଜାଇ ବେଢ଼ା ଭିତରେ ନାଚି ନାଚି ଭଜନ କରୁଛନ୍ତି । ଏସବୁ ଛଡ଼ା ବହୁ ପ୍ରକାରର ଭକ୍ତ ବ୍ୟକ୍ତିଗତ ଭାବରେ ଜଗନ୍ନାଥଙ୍କ ସ୍ତୁତି ଗାନ କରୁଛନ୍ତି ଅତି ଆକୁଳ ଭାବରେ—

"ଚକ୍‌ା ଡୋଳା କମ୍ପା ଡକା—
କପିଁ ଡକ୍‌କା ନ ଶୁଣ ହେ···
ଚକ୍‌ା ଡୋଳା କଁ ପା ··"

···

"ଜଗବନ୍ଧୁ ତୁମେ ବଡ଼—
ତୁମେ ବଡ଼ ଦାରୁଣ ହେ—"

··· ···

"ଚକ୍‌ା ନୟନକୁ ସ୍ତୁତି ପଣ୍ଡିତ ଜଣେ—
ବଢ଼ାଉ ମୋ ଡାକ କିମ୍ପା ନ ଶୁଣ କର୍ଣ୍ଣେ ?"

··· ··· ···

"ବାଧିଲା ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡେ ଦଣ୍ଡ ଟାଳ—"

··· ···

କେହି ଜଣେ ଆର୍ତ୍ତୀ ବଡ଼ ଆର୍ତ୍ତକଣ୍ଠରେ ଦୁଇ ହାତ ଉପରକୁ ଟେକି କାନ୍ଦି କାନ୍ଦି ଗୁହାରି କରୁଛି—

"ହେ ବଳୀପ୍ରାଣଭୁଜ ! ହେ ମଧୁସୂଦନ ! ହେ ହୃଷୀକେଶ ! ! ହେ ଚକ୍‌ାଡୋଳା ! ! କେତେ ଡାକ ଡାକ ପିଲା ବକଟେ ଦେଇଥିଲୁ··· ତାକୁ ପାଣି ଛଡ଼େଇ ଦେଇଥିଲ···କ ଅସାଧ ବେମାରି ତାକୁ ଘୋଟିଲା

ମହାପ୍ରଭୁ ! ଡାକ୍ତର ବଇଦ କିଛି ମାନୁ ନାହିଁ—ମହାପ୍ରଭୁ ହେ ! ତୁଇ ରଖ—ଶେଷରେ ତୁଇ ରଖ—ମୃଗୁଣୀକୁ ରଖିଲୁ ବ୍ୟାଧ ହାତରୁ—ଗଜକୁ ଉଦ୍ଧାରିଲୁ କୁମ୍ଭୀର ହାତରୁ—ଦ୍ରୌପଦୀର ଲଜ୍ଜା ନିବାରଣ କଲୁ କୁରୁ ସଭାତଳେ – ହେ ବିପଦଭଞ୍ଜନ ! କରୁଣାସାଗର ହରି ! ! ନିଷ୍ଠା ବିକଟିକ ମୋର – ତାକୁ ରଖ ।

ଲୋକଟିର ବିକଳ ଗୁହାରିରେ କାଠ ପଥର ବି ତରଳିଯିବ । ମାତ୍ର ତୀର୍ଥବାସୀ ବାବୁ ବିରକ୍ତ ହୋଇଉଠିଲେ । ହସି ମଧ୍ୟ ଦେଲେ । ମୂର୍ଖ ! ଏ କ୍ଷେତ୍ରକୁ ଆସିଛୁ ଫେର୍ ମାଗିବାକୁ । ଆରେ ଏଠିକି ଆସିଲ ଯଦି ସବୁ ଫେରାଇଦେଇ ସ୍ଥାଣୁବତ୍ ହୋଇ ବସିବା କଥା । ନ ମାରୁଣୁ ତ ସେ ବନ୍ଧୁ ଜଞ୍ଜାଳ ଦେଉଛୁ ରେ ! ତା ଜଞ୍ଜାଳ ତା ପାଦତଳେ ଅଜାଡ଼ି ଦେଲେ ଯାଇ ସିନା ମୁକ୍ତି ! ! ହାଃ ହାଃ ହାଃ ! ତୀର୍ଥବାସୀ ବାବୁଙ୍କ କାନରେ ସବୁରି ଗୁହାରି – ସବୁରି ମାଗୁଣି ଆସି ବାଜୁଛି । ସମସ୍ତେ ଆସିଛନ୍ତି ଖାଲି ଏଠାକୁ ମାଗିବାକୁ । ଟେକାଟେକି କରି—ଅଭିମାନ କରି – ଅଳି ଗୁହାରି କରି – କାନ୍ଦକାଟି କେତେ ଅବଲମ୍ବ ଦେଖେଇ ତା'ଠାରୁ ଖାଲି ଆଦାୟ କରିନେବାର ମତଲବ ଏଇସବୁ ମୂଢ଼ମତି-ମାନଙ୍କର । ସମସ୍ତେ ଖାଲି ବଢ଼େଇବାରେ ମାତିଛନ୍ତି – ସଞ୍ଚିବାରେ ମାତିଛନ୍ତି । ଏଇସବୁ ଭଜନ ଭିତରେ ଖାଲି ଆପଣା ଆପଣାର କାମନା ଆଉ ବାସନା ହିଁ ଫୁଟି ଉଠୁଛି । ଯେତେ ପାଇଲେ ମନବୋଧ ହେଉ ନାହିଁ । ଯେତେ ଖାଇଲେ ପେଟ ପୁରୁ ନାହିଁ ।

ତୀର୍ଥବାସୀ ବାବୁ ଭାବବିଭୋର ଆଖିରେ ବଡ଼ ଦେଉଳ ଆଡ଼କୁ ଚାହିଁଲେ । ଏତେ ବଡ଼ ଦେଉଳ – ଆକାଶର ଅନନ୍ତ ନୀଳିମା ଭିତରେ ଯେମିତି ନିର୍ବିକାର ଭାବରେ ବସିରହିଛି ଅନାଦି କାଳର ଏକ ବିରାଟ ମୁକ୍ତଯୋଗୀ ପୁରୁଷ । ଯାଙ୍କୁ ଚାହିଁଲେ ଯେମିତି ମନ ନିଶ୍ଚଳ ହୋଇଯାଉଛି । ନିଷ୍କାମ ହୋଇଯାଉଛି ! ! ! ଏଇ ବିରାଟ ସନାତନ ମହାଐଶ୍ୱର୍ଯ୍ୟବାନ୍ ଯୋଗୀ ପୁରୁଷର ସମ୍ମୁଖରେ ଅତି କୁତ୍ସିତ ହୀନତମ ଭିକ୍ଷାର୍ଥୀର ମନନେଇ କିପରି ଦୁଇ ହାତ ପତାଇ ନିଜର କ୍ଷୁଦ୍ର କ୍ଷୁଦ୍ର କାମନା ଅଭିଳାଷଗୁଡ଼ିକୁ ଯାଚ୍ଞା କରାଯାଇପାରେ ? ଛି ଛି ଛି ! ମଣିଷ ! ତୁ କ'ଣ ଏତେ କ୍ଷୁଦ୍ର, ଏତେ ନୀଚ ଆଉ ଏତେ କୁତ୍ସିତ ତୋର ଇଚ୍ଛା ଆଉ ଅଭିଳାଷ ?

ତୀର୍ଥବାସୀ ବାବୁ ଲମ୍ବ ହୋଇ ସେଇ ବେଢ଼ାର ପଥର ଉପରେ ପଡ଼ିଗଲେ । ତାଙ୍କର ମନ ହେଲା, ତାଙ୍କର ଆଉ କିଛି ଅଭିଳାଷ ନାହିଁ — ଆଉ କିଛି କାମନା ବି ନାହିଁ — ସେ ତ ସଂସାର ଗ୍ରୁଡ଼ିଛନ୍ତି ବହୁ ପୂର୍ବରୁ, ମାତ୍ର ମୋକ୍ଷ ମଧ୍ୟ ସେ ଆଉ ଚାହାନ୍ତି ନାହିଁ । ତାଙ୍କର ଆଉ କିଛି ଦରକାର ନାହିଁ ।

ହେ ତ୍ରିଲୋକେଶ ! ହେ ବିଶ୍ୱବିହାରୀ ! ହେ ଜଗତର ନାଥ ! ମୋର କିଛି ଆଉ ଦରକାର ନାହିଁ । ମୁଁ ସବୁ ପାଇଛି । ମୋର ଆଉ କିଛି ଅଭିଳାଷ ନାହିଁ ! ହେ କାମନା-କଳ୍ପତରୁ ! ମୋର ଆଉ କିଛି କାମନା ନାହିଁ । ସବୁ ଜଡ଼ ମୋର ଫୁଟିଯାଇଛି । ସବୁ ଫୁଲ ମୋର ଫଳି ଯାଇଛି । ମୋର ଆଉ କିଛି ଫୁଟିବାକୁ ନାହିଁ, ମୋର ଆଉ କିଛି ଫଳିବାକୁ ନାହିଁ । ହେ କରୁଣାସିନ୍ଧୁ ! ମୁଁ ତୋର କରୁଣା ବି ଆଉ ଚାହେଁ ନାହିଁ । ମୁଁ କିଛି ଚାହେଁ ନାହିଁ...... ।

ବେଢ଼ା ଭିତରେ ଭୂଇଁ ଉପରେ ମୁହଁ ମାଡ଼ି ଉପରକୁ ହାତ ମେଲାଇ ସାଷ୍ଟାଙ୍ଗ ଦଣ୍ଡବତ ଭଙ୍ଗୀରେ ତୀର୍ଥବାସୀ ବାବୁ ମନେ ମନେ ଏଇସବୁ କହୁକହୁ ଏକ ପରିପୂର୍ଣ୍ଣତାର ବେଦନା-ବିହ୍ୱଳତାରେ କାନ୍ଦୁ ଥିଲେ । ହଠାତ୍ ତାଙ୍କର ଠିକ୍ ପାଖରେ ଦଳେ ଭଜନପ୍ରିୟ ଖଞ୍ଜଣୀ - ଆଉ ଗିନିଧରି ଉନ୍ମତ୍ତ କଣ୍ଠରେ ଭଜନ ଗାଇ ଗାଇ ନାଚି ଲାଗିଲେ । ସେମାନେ ଗୋଟିଏ ପଦକୁ ବାରମ୍ବାର ଗାଇ ଡେଇଁ ଡେଇଁ ନାଚୁଥିଲେ । ହୁଙ୍କାର ଛାଡ଼ୁଥିଲେ — ଉନ୍ମତ୍ତ ହେଉଥିଲେ — ଉଦ୍ଦଣ୍ଡ ହେଉଥିଲେ —

"ଜଗନ୍ନାଥ ହେ।
କିଛି ମାଗୁ ନାହିଁ ମୁଁ ତୋତେ......
ଧନ ମାଗୁ ନାହିଁ ଜନ ମାଗୁ ନାହିଁ —
ମାଗୁଛି ଶରଧା-ବାଲିରୁ ମୁଠେ......
ଜଗନ୍ନାଥ ହେ !"

ବାରମ୍ବାର ଏହି ପଦକ ମିଳିତ କଣ୍ଠରେ ଗାଇ ଗାଇ ଉନ୍ମତ୍ତ ନୃତ୍ୟ ଓ ବାଜା ବଜାଇବାରେ ତୀର୍ଥବାସୀ ବାବୁଙ୍କର ଧ୍ୟାନ ଭଙ୍ଗ ହେଲା । ତାଙ୍କର ତତ୍କାଳୀନ ଅନୁଭୂତି ସଙ୍ଗେ ଏହି ଗୀତ ପଦଟି ଓ ତା ସଙ୍ଗେ

ସଙ୍ଗେ ଏକ୍ସ ମୁକ୍ତ ନୃତ୍ୟ ଓ ବାଜାର ଭାବ ମିଶିବାରୁ—ସେ ହଠାତ୍ ନିଜ ଭିତରେ ଏକ ଅଦ୍ଭୁତ ଉନ୍ମାଦନା ଓ ତନ୍ମୟତା ଅନୁଭବ କଲେ । ତାଙ୍କର ଦେହ ଓ ମନରେ ହଠାତ୍ ଏକ ପ୍ରଚଣ୍ଡ ଆବେଗର ତରଙ୍ଗ ଖେଳିଗଲା । ସେ ସଙ୍ଗେସଙ୍ଗେ ଉଠି ଠିଆହୋଇ ହାତରେ ତାଳ ମାରି ଗାଇଉଠିଲେ –

"ଜଗନ୍ନାଥ ହୋ···
କିଛୁ ମାଗୁ ନାହିଁ ମୁଁ ତୋତେ !
ଜଗନ୍ନାଥ ହୋ !"

ତା ପରେ ଏତିକି ଗାଇ ଗାଇ ସେ ଦୁଇହାତ ଉପରକୁ ଟେକି ତାଳି ମାରି ନାଚିବାକୁ ଆରମ୍ଭ କଲେ । ନାଚୁ ନାଚୁ ସେ ସେହି ଭଜନୀୟାଙ୍କ ମଣ୍ଡଳୀ ଭିତରକୁ ପଶିଗଲେ । ମଣ୍ଡଳୀ ଭିତରେ ପଶିଯିବା ପରେ ଭଜନୀୟାମାନେ ତାଙ୍କ ଚାରିପଟେ ମଣ୍ଡଳୀ କରି ଘେରାଉ କରିଦେଲେ । ତୀର୍ଥବାସୀ ବାବୁ ସେଇ ପଦକ ଗୀତ ଖୁବ୍ ବଡ଼ପାଟିରେ ଗାଇ ଖୁବ୍ ଜୋରରେ ଖାଲି ଡେଇଁଲେ । ଭଜନୀୟାମାନେ ନିଜ ଭିତରେ ଜଣେ ବାହାରର ବୃଦ୍ଧ ଭଦ୍ରବ୍ୟକ୍ତିଙ୍କୁ ଏତେ ଅନୁପ୍ରାଣିତ ଓ ଭାବବିଭୋର ହୋଇ ନାଚିବାର ଦେଖି ନିଜର କୃତିତ୍ୱ ଉପରେ ଖୁବ୍ ଆହ୍ଲାଦିତ ହୋଇ ଦୁଇ ଗୁଣ ଉତ୍ସାହରେ ଉନ୍ମତ୍ତ ପ୍ରାୟ ଖଞ୍ଜଣୀ ଆଉ ଗିନି ବଜାଇ ଖୁବ ବେଶୀ ଜୋରରେ ଡେଇଁ ଡେଇଁ ନାଚି ଉଠିଲେ – ଆଉ ଖୁବ୍ ବଡ଼ ପାଟିରେ ଗାଇଲାଗିଲେ ଦ୍ରୁତ ତାଳରେ –

"ଜଗନ୍ନାଥ ହୋ··· ···
କିଛୁ ମାଗୁ ନାହିଁ ମୁଁ ତୋତେ !!!
(ଆରେ) ଧନ ମାଗୁନାହିଁ ଜନ ମାଗୁ ନାହିଁ···"

ତୀର୍ଥବାସୀ ବାବୁ ଆହୁରି ବେଶୀ ପ୍ରେମାପ୍ଳୁତ ଓ ଉନ୍ମାଦିତ ହେଲେ । ତାଙ୍କୁ ବୋଧ ହେଲା, ଏଇ ଯେଉଁମାନେ ତାଙ୍କ ଚାରିପଟେ ହାତଟେକି ନୃତ୍ୟ କରୁଛନ୍ତି, ସେମାନେ ପ୍ରତ୍ୟେକ ଜଣେ ଜଣେ ଜଗନ୍ନାଥ । ବାସ୍ତବରେ ତୀର୍ଥବାସୀ ବାବୁଙ୍କ ଆଖିକୁ ସବୁ ଭଜନୀୟାଙ୍କର ହାତଗୋଡ଼ ନ ଥିବା ମାଦଳ ଜଗନ୍ନାଥ ଭଳି ଦିଶିଲେ । ଭାବବିହ୍ୱଳିତ ଚିତ୍ତରେ ସେ ସମସ୍ତଙ୍କ ଉପରେ ହାତ ମାରି କାନ୍ଦି କାନ୍ଦି ଗାଇଲେ –

"ଜଗନ୍ନାଥ ହୋ !
ଆରେ ମୋର ଜଗନ୍ନାଥ ହୋ !
ଆରେ ମୋର ଜଗନ୍ନାଥିଆ ରେ !
କଛୁ ମାଗୁ ନାହିଁ ମୁଁ ତୋତେ !
(ଆରେ) କଛୁ ମାଗୁ ନାହିଁ ମୁଁ ତୋତେ !!"

ଏମିତି ସମସ୍ତଙ୍କ ଓଠରେ ହାତ ମାରି ଗାଇ ନାଚି, ନାଚି, ତାଙ୍କର ଆଖିରୁ କେବଳ ଲୋତକର ବନ୍ୟା ବହିବାକୁ ଲାଗିଲା – ତାଙ୍କର ଦେହ ଥରିବାକୁ ଲାଗିଲା – ତାଙ୍କର କଣ୍ଠ ମଧ୍ୟ ଗଦ୍‌ଗଦ୍ ଶୁଭିଲା – ତାଙ୍କୁ ଆଉ କଛୁ ଦେଖାଗଲା ନାହିଁ, ଆଉ କଛୁ ଶୁଭିଲା ବି ନାହିଁ । ଏଇ ସୁର ଧ୍ୱନି ଓ ତାଳ ଯମକର ଆବେଗ ମାଧ୍ୟମରେ ସେ କ୍ରମେ ଏକ ଭୂଷିତ ଚେତନାରେ ଉଦ୍‌ବୁଦ୍ଧ ହୋଇ ଉପର ସ୍ତରକୁ ଉଠିବାକୁ ଲାଗିଲେ ! ମନ ଭିତରେ-ହୃଦୟ ଭିତରେ – ଏପରି କି ତାଙ୍କୁ ଲାଗିଲା – ଆତ୍ମା ଭିତରେ ବି ସେ ଅପରିସୀମ ମୁକ୍ତ ଆନନ୍ଦରେ ଉନ୍ମତ୍ତ ଉଲ୍ଲାସ ବେଦନା ଅନୁଭବ କଲେ । ଆଉ ତାଙ୍କ ଭିତରେ ସଂସାରର କୌଣସି ରୂପ, ରସ, ଗନ୍ଧ, ଶବ୍ଦ ବା ସ୍ପର୍ଶର ଚିହ୍ନ ମଧ୍ୟ ରହିଲା ନାହିଁ । ସେ କ୍ରମେ କ୍ରମେ ଉପର ସ୍ତରକୁ ହିଁ ଉଠିବାକୁ ଲାଗିଲେ ।

ଏଣେ ଭଜମାସ୍ନାମାନେ ପରମ ଉଲ୍ଲାସରେ ଉନ୍ମତ୍ତ ହୋଇ ଖଞ୍ଜଣୀ ଓ ଗିନି ବଜାଇ ଗାଉଥାନ୍ତି – ନାଚୁଥାନ୍ତି । "ଜଗନ୍ନାଥ ହୋ ! କଛୁ ମାଗୁ ନାହିଁ ମୁଁ ତୋତେ । ଧନ ମାଗୁ ନାହିଁ ଜନ ମାଗୁ ନାହିଁ ···"

ତୀର୍ଥବାସୀ ବାବୁ ଉପରକୁ ହାତ ଟେକି ତାଳ ମାରି ନାଚି ନାଚି ସେମାନଙ୍କ ସଙ୍ଗେ କଣ୍ଠ ମିଳାଇ ଗାଉଥାନ୍ତି –

"ଜଗନ୍ନାଥ ହୋ !
କଛୁ ମାଗୁ ନାହିଁ ମୁଁ ତୋତେ !!"

ଆଖି ବୁଜିହୋଇ ଯାଇଥାଏ । ଧାର ଧାର ହୋଇ ଆଖିରୁ ଲୁହ ବହି ଯାଉଥାଏ । ତାଳୁରୁ ତଳିପା ଯାଏ ଗମଗମ ହୋଇ ଝାଳ ବହୁଥାଏ । ସେ ଥରୁଥାନ୍ତି—ପୁଲକୁଥାନ୍ତି —ଶିହରି ଯାଉଥାନ୍ତି । କ୍ରମେ ସେ ବାହ୍ୟଜ୍ଞାନ ହରାଇ ହୋଇଉଠିଲେ । ତାଙ୍କୁ ଆଉ କଛୁ ଶୁଭିଗଲା ନାହିଁ । ଆଉ

କିଛି ଦେଖାଗଲା ନାହିଁ । କେବଳ ସେ ଏହି ପ୍ରପଞ୍ଚର ମାୟିକ ନିମ୍ନସ୍ତରରୁ ବହୁତ ଉପର ସ୍ତରକୁ ଉଠିବାକୁ ଲାଗିଲେ । କ୍ରମେ ସେ ବହୁ ଉର୍ଦ୍ଧ୍ୱ ଚେତନାର ସ୍ତର ଭିତରକୁ ଉଠିଗଲେ । ତାଙ୍କ ପାଟିରୁ କେବଳ "ଜଗନ୍ନାଥ ହୋ—ଜଗନ୍ନାଥ ହୋ" ଏତିକି ଶବ୍ଦ ବାହାରୁଥାଏ । ଅନ୍ୟ ପଦଗୁଡ଼ିକ ସେ ଆଉ ଗାଉ ନ ଥାନ୍ତି ।

ପ୍ରକୃତରେ ତାଙ୍କର ଆଉ ଅଣୁମାତ୍ର ବି ପାର୍ଥିବ ଚେତନା ନ ଥିଲା । ତାଙ୍କର ଆତ୍ମା ସେତେବେଳେ ଚିଦାନନ୍ଦମୟ ଅପାର୍ଥିବ ସ୍ତରରେ ଅବସ୍ଥାନ କରି ଏକ ଅପୂର୍ବ ଆନନ୍ଦ ପୁଲକାନୁଭୂତିରେ ସେ ନିମଗ୍ନ ହୋଇ ଯାଇଥିଲେ । ଆଉ ଏଣେ ତାଙ୍କର ଚେତନାଶୂନ୍ୟ ପାର୍ଥିବ ଦେହଟି କବନ୍ଧ ଭଳି ପୃଥିବୀ ଉପରେ ନୃତ୍ୟ କରୁଥାଏ···

କେତୋଟି ମୁହୂର୍ତ୍ତ ଯେ ତାଙ୍କର ସେହି ଅତ୍ୟୁଚ୍ଚ ଆଧ୍ୟାତ୍ମିକ ଶିଖର ଉପରେ କଟିଥିଲା—ସେ କଥା ବା କିଏ କହିବ ? ସେଠାରେ ସମୟର ଅବସ୍ଥିତି ଅଛି କି ନାହିଁ କେଜାଣି !! ମାତ୍ର ସେହି ସ୍ୱଚ୍ଛ ଜ୍ୟୋତିର୍ମୟ ଚେତନା ସ୍ତରରେ ଅପୂର୍ବ ପୂର୍ଣ୍ଣାନନ୍ଦର ଉଲ୍ଲାସରେ ଉଲ୍ଲସିତ ହେଉଁ ହେଉଁ ହେବାକୁ ବାରେକ ମାତ୍ର ସେ ତଳ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ତଳ ଦେଶରେ ସେ କ'ଣ ଦେଖିଲେ ?

କୋଟି କୋଟି ସଂଖ୍ୟାରେ କୀଟ···ଏକ ପ୍ରକାଣ୍ଡ ମଳମୂତ୍ର-ବିଷ୍ଠାଦି ପରିପୂର୍ଣ୍ଣ କୁତ୍ସିତ ପଙ୍କାଶୟରେ କୋଟି କୋଟି କୀଟ କିଲିବିଲି ହେଉଛନ୍ତି । ସେମାନେ ଗବୁଛନ୍ତି ଧାଉଁଛନ୍ତି ବୋଲି—ମାତ୍ର ସେମାନେ ଧାଇଁପାରୁ ନାହାନ୍ତି । କେବଳ ଛଟପଟ ହୋଇ, କିଲିବିଲି ହୋଇ ସେମାନେ ପଙ୍କ ଭିତରେ ଲଟପଟ ହୋଇ ନାଚୁଛନ୍ତି । ସେମାନେ ଉଠିପାରୁ ନାହାନ୍ତି । ଉଠୁ ଉଠୁ ପୁଣି ସେମାନେ ପଙ୍କ ଭିତରେ ଲଟେଇ ପଡ଼ୁଛନ୍ତି ।

ଇସ୍ !

ଅସଂଖ୍ୟ ସେମାନେ—ଅଗଣିତ ସେମାନଙ୍କର ସଂଖ୍ୟା । ସେମାନଙ୍କ ମଧ୍ୟରୁ କାହାକୁ ଚିହ୍ନି ହେଉ ନାହିଁ ସ୍ୱତନ୍ତ୍ରଭାବେ । ସମସ୍ତେ ସେମାନେ ଏକାଭଳି ଦିଶୁଛନ୍ତି । ଏକାଭଳି ଲଟପଟ ହେଉଛନ୍ତି ହେଇ ସେଠି—

ପ୍ରାଣବକଳରେ ଧାଇଁଲା ଭଳି ମନେ ହେଉଛି । ସେ ଜଣକ କଏ ସେ ? ମାଧବ ବାବୁ ? ସେଠି କଏ ନିରଞ୍ଜନ ବାବୁ ? ସେ ଜଣକ କଏ ବିମଳ ବାବୁ ହୋଇବ ପରା ! ହେଇ ସେ ପଟକୁ ଆଉ ପଞ୍ଚାଏ ଗାଟ ସାଲୁବାଲୁ ହେଉଛନ୍ତି—କଏ ସେମାନେ ? ବଡ଼ପୁଅ ମନୁଆ ହେବ ପରା ! ତାର ପାଖେ ପାଖେ ହେଇ ବୋଧେ ସେମାନେ – ଲୋକରଞ୍ଜନ, ଦେବ-ରଞ୍ଜନ ଆଉ ବୋହୂମାନେ—ନାତି ନାତୁଣୀଏ ।

ତୀର୍ଥବାସୀ ବାବୁ ନିଠେଇ ନିଠେଇ ସେମାନଙ୍କୁ ଚିହ୍ନିବାକୁ ଲାଗିଲେ । ସେମାନେ କୁହନ୍ତି ପରା ! ! ! ହଁ ବୋଧେ – ସେଇମାନେ—ସେମାନେ ଖାଲି ଧାଇଁଛନ୍ତି – ସ୍ପଷ୍ଟ ବାର ହେଉ ନାହିଁ । କୁହୁଡ଼ିଆ କୁହୁଡ଼ିଆ ଦିଶୁଛି ସବୁ—କିନ୍ତୁ ସେଇମାନେ ନିଶ୍ଚୟ ।

ସେଇମାନଙ୍କ ପାଖେ ପାଖେ ଆଉ ଗୋଟିଏ ଗାଟ ବାରମ୍ବାର ଉପରକୁ ମୁଣ୍ଡ ଟେକ ଉପରକୁ ପେଲି ହୋଇଉଠୁଛି ଜୀବନ ବକଳରେ । କଏସେ ସେ ? କଏ ସେ ?

ତୀର୍ଥବାସୀ ବାବୁ ଟେକ ଟଳକ୍ କରି ନିଠେଇ ନିଠେଇ ଖୁଣ୍ଟିଲେ । ଅନ୍ୟମାନେ ମନ୍ଦା ମନ୍ଦା ହୋଇ ଲଟପଟ ହେଉଛନ୍ତି; ମାତ୍ର ଏ ସେ ସମ୍ପୂର୍ଣ୍ଣ ଏକୁଟିଆ ପ୍ରାଣପଣେ ପଙ୍କ ଭିତରୁ ଉପରକୁ ଉଠିବା ଲାଗି ଚେଷ୍ଟା କରୁଛି ।

କଏସେ ସେ ?

ମନୁଆବୋଉ ? ?

ତୀର୍ଥବାସୀ ବାବୁ ହଠାତ୍ ଚମକି ପଡ଼ିଲେ । ମନୁଆବୋଉ ସେ ? ହଁ -ହଁ—ସେଇ—ସେଇ । ବିଚରା ଲଟପଟ ହେଉଛି ପ୍ରାଣ ବକଳରେ ।

ତୀର୍ଥବାସୀ ବାବୁଙ୍କର ପ୍ରମୁକ୍ତ ପ୍ରବୁଦ୍ଧ ସ୍ୱୟଂସମ୍ପୂର୍ଣ୍ଣ ଆତ୍ମା ଭିତରେ ହଠାତ୍ ଏକ ପାର୍ଥିବ ଅଥଚ ସାତ୍ତ୍ୱିକ କରୁଣା ଜାଗିଉଠିଲା । ସେ ନିଜେ ଏବେ ଚିନ୍ମୟ ଆନନ୍ଦମୟ ସୁଉଚ୍ଚ ସ୍ତରରେ ଅବସ୍ଥାନ କରି କି ବିମଳ ପ୍ରଶାନ୍ତି ଓ ଆନନ୍ଦ ଉଲ୍ଲାସ ଅନୁଭବ କରୁଛନ୍ତି – ଅଥଚ—ବିଚରା ଅଜ୍ଞାନ

ହତଭାଗିନୀ ମୂର୍ତ୍ତି ମନୁଆବୋଉ ! ! କଥା ମାନନ୍ତି ନାହିଁ···ମାୟାରେ ଭଳିଗଲା ମାୟାବନୀ—ଛୋଟା ଗାଳିଲା···ବଇଶି ଧାଣ୍ଡି ହେଉଛି ଏକା ଏକା ମଧ୍ୟପଙ୍କର ଗାତ ଭିତରେ । ତୀର୍ଥବାସୀ ବାବୁ ଏଥର ସ୍ପଷ୍ଟ ମନୁଆବୋଉର ଏହି ବିକଳ ଅବସ୍ଥାକୁ ଦେଖିପାରିଲେ । ତାଙ୍କର ଆତ୍ମା ପରମ କାରୁଣିକତାରେ କାନ୍ଦିଉଠିଲା । ସେ ଆତୁର କରୁଣାକାତର ଆଖିରେ ଚଳେ ମନୁଆବୋଉ ଆଡ଼କୁ ଚାହିଁରହିଲେ । କ୍ରମେ ସେ ପୁଣି ଶୁଣିପାରିଲେ—ଦୁଇ ହାତକୁ ଉପରକୁ ଟେକି ମନୁଆବୋଉ ସେହି ପଙ୍କ ଭିତରୁ ବାହୁନି ବାହୁନି ସଜଳ ଆଖିରେ ବିକଳ ହୋଇ ଚିତ୍କାର ଛାଡ଼ୁଛି— ମତେ ନିଅ ଗୋ···! କୁଆଡ଼େ ଗଲ ? ମୋର ଜୀବ-ଜୀବନ—ମୋର ସାଆ ଭରସା—ମୋର ଅନ୍ଧର ଲଉଡ଼ି – ମତେ ଏଠି ଏମିତି ଛାଡ଼ିଦେଇ ଗଲ—ମୋତେ ଏଠୁ ନିଅ ଗୋ—ଉଠେଇ ନିଅ –କୁଆଡ଼େ ଗଲ ତୁମେ ? ତୁମ ହାତ ଧରିଥିଲି – ତୁମ ହାତ ଧରି ପାରି ହେବି ବୋଲି –ମତେ ତୁମେ ଏଠି ଏମିତି ଅଧବାଟରେ ନିଆଶ୍ରା କରି ଛାଡ଼ିଦେଇ ଗଲ ? ହଇଓ-ଓ-ଓ-ଓ-ଓ-ଓ-ଓ··· ।

ଆଉ ତୀର୍ଥବାସୀ ବାବୁ ସମ୍ଭାଳି ପାରିଲେ ନାହିଁ । ସେହି ଚିଦାନନ୍ଦ-ମୟ ସୁଉଚ୍ଚ ସ୍ତର ଭିତରେ ବି ତାଙ୍କର ପାର୍ଥିବ କାରୁଣିକ ଆତ୍ମା କାନ୍ଦି କାନ୍ଦି ଚିତ୍କାର କରିଉଠିଲା ।

ଯାଉଛି – ଯାଉଛି ମନୁଆବୋଉ, ତମକୁ ସେ ନରକରେ ଛାଡ଼ିଦେଇ ଆସି—ମୁଁ ଏଠି ଏତେ ନିଶ୍ଚିନ୍ତ ପୂର୍ଣ୍ଣ ଆନନ୍ଦ ଭୋଗ କରି-ପାରିବି ନାହିଁ । ଥୟ ଧର—ଥୟ ଧର—ଯାଉଛି—ଯାଉଛି ମନୁଆ-ବୋଉ···!

ସେହି ଅତ୍ୟୁଚ୍ଚ ଆଧ୍ୟାତ୍ମିକ ଆନନ୍ଦମୟ ଶୀଖର ଉପରୁ ତୀର୍ଥବାସୀ ବାବୁ ତଳକୁ ଡେଇଁପଡ଼ିଲେ ।

× × ×

କୀର୍ତ୍ତନ କରୁ କରୁ ତୀର୍ଥବାସୀ ବାବୁ ଭୂସ୍‌କିନା ବେଢ଼ାର ପଥର ଚଟାଣ ଉପରେ ପଡ଼ିଗଲେ ।

× × × × ଆଖି ବୁଜି, ଲୁହ ଗଡ଼ାଇ, ଝାଳନାଳ ହୋଇ ଉନ୍ମାଦ ଭଳି ସେ ନାଚୁଥିଲେ । ତାଙ୍କ ପାଟିରୁ କେବଳ "ଜଗନ୍ନାଥ ହୋ" "ଜଗନ୍ନାଥ ହୋ" ଏତିକି ବାହାରୁଥାଏ । ଭଜମାସ୍ଥାମାନେ ବହୁ ସମୟ ଧରି ପରମ ଉତ୍ସାହରେ ଖଞ୍ଜଣୀ ଓ ଗିନି ବଜାଇ ତାଙ୍କ ସ୍ୱରପଟେ ନାଚିଲାଗିଲେ । ବହୁ ସମୟ ନାଚିବା ପରେ ସେମାନେ ମଧ୍ୟ କ୍ଲାନ୍ତ ହୋଇପଡ଼ିଲେ । ସେମାନଙ୍କର ଉତ୍ସାହ କ୍ରମେ ଭାଙ୍ଗି ପଡ଼ିଲା । ତେଣୁ ମଝିରେ ମଝିରେ ସେମାନେ ଏ ସମକ ଓ ତଡ଼ାରୁ ତଳକୁ ଓହ୍ଲାଇଆସି ଥମ୍ଭିଯିବା ପାଇଁ ବହୁବାର ତାଳ ଓ ମାନ ଶେଷ କଲେ; ମାତ୍ର ତୀର୍ଥବାସୀ ବାବୁ ତଥାପି ନାଚ ଲାଗିଥାନ୍ତି । ଏମିତି ନାଚ୍ ନାଚ୍ ତାଙ୍କର ପାଟିରୁ କଥା ବାହାରିଲା ନାହିଁ । "ଜଗନ୍ନାଥ ହୋ" ମଧ୍ୟ କ୍ରମେ ବନ୍ଦ ହୋଇଗଲା । ତାଙ୍କ ମୁହଁ ବଙ୍କାଇଗଲା । ପାଟିରୁ ବାଜୁ ବାଜୁ ହୋଇ ଫେଣ ପରି କ'ଣ ଗୁଡ଼ାଏ ବାହାରି ଆସିଲା । ଦୁମ୍‌କିନା ସେ ତଳେ କଚଡ଼ି ହୋଇପଡ଼ିଲେ ଓ ଗଲଗଲ କରି ଗୁଡ଼ାଏ ବାନ୍ତି କରି ପକାଇଲେ । ତା' ପରେ ତାଙ୍କର ଚେତା ମଧ୍ୟ ବୁଡ଼ିଗଲା—

...ହାସ୍‌ପାତାଳରେ ପହଞ୍ଚିଲାବେଳକୁ ତାଙ୍କର ପ୍ରାଣପକ୍ଷୀ ଦେହର ପଞ୍ଜୁରି ଭାଙ୍ଗି ଉଡ଼ିଯାଇଥିଲା ମହାଶୂନ୍ୟ ଭିତରକୁ ।

+ + + +

ଏହା ପରର ଘଟଣା ହେଉଛି—ମନୁଆବୋଉଙ୍କର । ସ୍ୱାମୀଙ୍କ ମୃତ୍ୟୁ ଖବର ପହଞ୍ଚିଲା ମାତ୍ରେଇ ସେ ଖୁବ୍ ଗମ୍ଭୀର ଓ ନିଶ୍ଚଳ ହୋଇ ଯାଇଥିଲେ । ଘରଯାକ ସମସ୍ତେ କାନ୍ଦିଲେ—ମୁଣ୍ଡ ବାଡ଼େଇଲେ । ଏପରି କି ମନୁଆ ବି ତଳେ ମୁଣ୍ଡ ବାଡ଼େଇ ପିଲାଙ୍କ ଭଳି କାନ୍ଦିଲା ।

ମାତ୍ର ମନୁଆବୋଉଙ୍କ ଆଖିରୁ ବୁନ୍ଦାଏ ବି ଲୁହ ଝରିଲା ନାହିଁ । ସେ କେବଳ ନୀରବ ଓ ନିଶ୍ଚଳ ହୋଇ ବସି ରହିଲେ ମହାରାଣୀଙ୍କ ଭଳି । କାହା ଆଡ଼କୁ ଚାହିଁଲେ ନାହିଁ । କାହାକୁ କିଛି ପଚାରିଲେ ନାହିଁ । କୌଣସି ଉତ୍କଣ୍ଠା ବା ଆବେଗ ଦେଖାଇଲେ ନାହିଁ । ପୁଅ ବୋହୂ ନାତି ନାତୁଣୀ କାନ୍ଦି କାନ୍ଦି ଗଡ଼ୁଥାନ୍ତି । ସେମାନଙ୍କୁ ମଧ୍ୟ ବୋଧ ଦେବାର ଉପକ୍ରମ କଲେ ନାହିଁ ।

ସେଦିନ ସନ୍ଧ୍ୟାବେଳକୁ ଘରେ କାନ୍ଦ ବୋବାଳୀର ଝଡ଼ ବହୁ ପରିମାଣରେ କମି ଆସିଲା । ସମସ୍ତେ ମୃତଦେହ ସତ୍କାରର ଆୟୋଜନରେ ଲାଗି-ପଡ଼ିଲେ । ବନ୍ଧୁବାନ୍ଧବ ଓ ଗାଡ଼ିମାନ ଧରି ଦୁଇ ପୁଅ ପୁରୀ ଚାଲି ଯାଇଥିଲେ ସ୍ୱର୍ଗ ଦ୍ୱାରରେ ବାପାଙ୍କର ସଂସ୍କାର କରିବା ଲାଗି । ସେମାନେ ମାଆଙ୍କୁ ସଙ୍ଗରେ ଧରି ଯିବାକୁ ଉଦ୍ୟମ କରିଥିଲେ । ମାତ୍ର ମନୁଆ ବୋଉ ହଁ ଚୁଁ କିଛି କହିଲେ ନାହିଁ । ପଥରଭଳି ସେଇ ଗୋଟାଏ ଜାଗାରେ ତଳକୁ ମୁହଁ ପୋତି ବସି ରହିଲେ । ଟଳିଲେ ନାହିଁ । ସେ କଣ ଏକ ଦାରୁଣ ମାନସିକ ଦୁଃଖରେ ପଥର ପାଲଟି ଯାଇଥିଲେ ? ଏହି ପାର୍ଥିବ ପ୍ରେମାନୁରାଗ ଜନିତ ଶୋକ ମଧ୍ୟ କଣ ମଣିଷକୁ ଏପରିଭାବେ ଏକ ଯୋଗ-ସମାଧୀ ଦେଇପାରେ ? ମନୁଆବୋଉ ତବତବ ଆଖିରେ ଚାହିଁ ରହିଥିଲେ —ତାଙ୍କର ଆଖିରେ ପଲକ ପଡ଼ୁ ନ ଥିଲା—ସେ ଦୃଷ୍ଟି ମଧ୍ୟ କାହା ଉପରେ ନିବଦ୍ଧ ହେଉ ନ ଥିଲା—ତାଙ୍କ ଦେହରେ ସାମାନ୍ୟ ମାତ୍ର କମ୍ପନ ବି ଉଠୁ ନ ଥିଲା । ବଡ଼ପୁଅ ମନୁବାବୁ ତାଙ୍କ ସ୍ତ୍ରୀଙ୍କୁ କହିଗଲେ –

ଦେଖ ! ସାବଧାନ ! ବୋଉକୁ ଯେପରି ହେଲେ ଆଜି ରାତିକ ଭିତରେ କନ୍ଦାଇବାକୁ ଚେଷ୍ଟା କର । ସେ ଯଦି ଆଜି ରାତି ଭିତରେ ନ କାନ୍ଦେ ତେବେ ତା'ର ହାର୍ଟଫେଲ୍ କରିପାରେ······ ।

ତା' ପରଦିନ ସକାଳେ । ପୁରୀ ସ୍ୱର୍ଗଦ୍ୱାରରେ ବାପାଙ୍କ ମର ଦେହକୁ ସଂସ୍କାର କରିସାରି ପୁଅମାନେ ଘରକୁ ଫେରିଲେ । ସେମାନେ ପ୍ରଥମେ ଘରେ ପାଦ ଦେଉଦେଉ ମାଆ ପାଖକୁ ଗଲେ । ମାତ୍ର ମାଆ କାହିଁ ? ମାଆ କୁଆଡ଼େ ଗଲା ? ସେମାନେ ସବୁଘର ଖୋଜିଲେ । ବୋହୂମାନେ ଅଧ-ରାତିରେ ଶୋଇଯାଇଥିଲେ । ତେଣୁ ସେମାନେ ଖୁବ୍ ଗ୍ଲାନିଆ ହୋଇଗଲେ । ବଡ଼ପୁଅ ମନୁ ବାବୁ ବାପାଙ୍କ ଶୋଇବା ଖଞ୍ଜାକୁ ଯାଇ ଦେଖିଲେ ଯେ ବାପାଙ୍କ ଘରଟି ଭିତରପଟୁ କିଳା ହୋଇଛି । କବାଟରେ ଯୋର ଧକ୍କା ମାରିଲେ ବି କବାଟ ଫିଟିଲା ନାହିଁ । ଝରକାମାନ ସବୁ ବନ୍ଦ ହୋଇଛି । କିନ୍ତୁ ଗୋଟାଏ ବିଚକଟିଆ ଗନ୍ଧରେ ସମସ୍ତେ ଚମକି ପଡ଼ିଲେ । ଖୁବ୍ ଉଦ୍‌ବିଗ୍ନ ହୋଇ ସେମାନେ କବାଟ ଭାଙ୍ଗି ଭିତରକୁ ପଶି କଣ ଦେଖିଲେ ? ଶାଢ଼ୀ ଓ କିରାସିନି ଜଡ଼ୁବୁଡ଼ୁ ହୋଇ ଅଧାପୋଡ଼ା

ଦେହଟିଏ ପଡ଼ିଛି । ଗୁଡ଼ରେ ଜାକି ଧରିଛି ବାପାଙ୍କର ତୈଳ ଚିତ୍ରଟିକୁ । ସେଇଟି ମଧ୍ୟ ଅର୍ଦ୍ଧାଂଶରୁ ଅଧିକ ପୋଡ଼ି ଯାଇଥିଲା । ବାପାଙ୍କର ରୁଦ୍ରାକ୍ଷମାଳାଟି ମଧ୍ୟ ଦରପୋଡ଼ା ଅବସ୍ଥାରେ ମାଆ ବେକରେ ଲାଗିରହିଥିଲା । ମନୁବାବୁ ପାଟିକରି ଉଠିଲେ—ଦେବ ! ବାପା କଣ ତାଙ୍କର ଜପାମାଳାଟିକୁ ଏଠି ଛାଡ଼ିଦେଇ ଯାଇଥିଲେ ?

ଏ ପର୍ଯ୍ୟନ୍ତ ଘର ବର୍ଦ୍ଧିଷ୍ଣୁ ଯାକ ସମସ୍ତେ କାଠପୁତୁଳିବତ୍ ନିର୍ବାକ ଓ ନିସ୍ତବ୍ଧ ହୋଇଯାଇଥିଲେ । ମାତ୍ର ବଡ଼ପୁଅର ଚିତ୍କାର ଶୁଣି ଓ ରୁଦ୍ରାକ୍ଷ ମାଳାଟିକୁ ଦେଖି ସମସ୍ତେ ହେ ହେ ହୋଇ କାନ୍ଦି ଉଠିଲେ । ମନୁବାବୁଙ୍କର ଗାମ୍ଭୀର୍ଯ୍ୟ ତରଳିଗଲା । ସେ ପାଗଳଙ୍କ ପରି ଚିତ୍କାର କରି ଉଠିଲେ—ବୋଉ ! ତୁ ଚରଣ ଧରିଛୁ ବାପାଙ୍କର— ଆମର ନୋହୁଁ—ଆମର ନୋହୁଁ ।......

... ...

ଅତଃପର ପୁଅମାନେ ମନୁଆ ବୋଉଙ୍କର ସେହି ଅର୍ଦ୍ଧଦଗ୍ଧ ଶବଟିକୁ ପୁଣି ମଞ୍ଚରେ ବୋହିନେଲେ ପୁରସ୍ତମ କ୍ଷେତ୍ରକୁ···ସ୍ୱର୍ଗଦ୍ୱାରର ସେହି ମହା ଶ୍ମଶାନକୁ । ବାପାଙ୍କ ଚିତା ଉପରରେଇ ମାଆର ଚିତା ଧାଉଧାଉ ହୋଇ ପୁଣି ଜଳି ଉଠିଲା । ଏ ଯେପରି ବୈରାଗ୍ୟ ସଙ୍ଗେ ଅନୁରାଗର—ଜ୍ଞାନ ସଙ୍ଗେ ପ୍ରେମର – ମୁକ୍ତି ସଂଗେ ଲୀଳାର ମହାମିଳନର ତପାଗ୍ନି ! !

ଅଦୂରରେ ମହାସମୁଦ୍ରର ଲହରୀମାନେ ବାରମ୍ବାର ପାର୍ଥିବ ଏହି ମହାମିଳନର ଜୟଗାନ କରି ଆପଣା ଭିତରେ ଉଚ୍ଛ୍ୱସିତ ହୋଇ ଉଠୁଥିଲେ ଓ ବେଳାଭୂମି ଉପରେ ଲୋଟି ପଡ଼ୁଥିଲେ ବାରମ୍ବାର— ବାରମ୍ବାର ।

ଆକାଶ ମହାନ୍ ପ୍ରାଙ୍ଗଣ ଆଉ ମହାନ୍ କାରୁଣିକ ଭଳି ଆସମୁଦ୍ର ଏଇ ପୃଥିବୀ ଉପରେ ଆନତ ହୋଇ ରହିଥିଲା ।

—୦—

# ଦୁଇ ଶୂନେ ଶୂନ୍

ପୌଷମାସ ଜାଣ ଆଜଠାରୁ ସରିଲା । ଆଜି ଗତ ପାହିଲେ ମାଘମାସ ଆରମ୍ଭ ହେବ । କିନ୍ତୁ ମାଘମାସର ହାଓ୍ବା କେଇଦିନୁଁ ବହିଲାଣି । ସେଦିନ ସହର ଉପକଣ୍ଠରେ କେନାଲ କୂଳରେ ବୁଲୁ ବୁଲୁ ସେ ଗୋଟାଏ ଆମ୍ବଗଛରେ ବଉଳ ଦେଖିଥିଲା । ଆଖ ପାଖର ଆଉସବୁ ଆମ୍ବଗଛ ବଉଳିବାକୁ ସଜବାଜ ହେଉଥିଲେ । ହଠାତ୍ ସେ କେଇଟାଦିନ ଶୀତ କମି ଆସିଥିଲା ଓ ଗୋଟାଏ ଉଷୁମଆଁ ପରିବେଶ ସୃଷ୍ଟି ହୋଇଯାଇଥିଲା । ଲୁଚିଛପି ସବୁ ଧୂଳଧୂଆଁକୁ ଆଡ଼େଇ ବେଗମଳୟ ଟିକେ ଫୁରୁଫୁରୁ ହୋଇ ହାଲୁକା ଚଢ଼େଇଟିଏ ଭଳି କୁଆଡ଼ୁ ଆସି କୁଆଡ଼େ ଉଡ଼ି ଚାଲିଗଲା । ସହର ଓ ପାଖଆଖର ସବୁ ଘୋଘା ଧୋଧା ଓ ଠୋଠାକୁ ଆଡ଼େଇ କୁହୁଧୂନଟିଏ କାହୁଁ ଆସି କାହିଁ ମିଳେଇଗଲା । ତାର ଦୁଇଘଣ୍ଟର ଦିନ ପରେ କୋଉଠି ଲୁଚିଥିଲା ଶୀତ – ମାଘମାସର ଶୀତ – ବାଘପରି ପୁଣି ମାଡ଼ିବସିଲା ଗଛବୃଛ ପଶୁପକ୍ଷୀ ଆଉ ମଣିଷ ସମେତ ଏ ସହରଟାକୁ । ଆଜି କେମିତି ସକାଳ ପହରୁ ଗୋଟାଏ କୁହୁଡ଼ିଆ ଶୀତ ଧୂଆଁ ସାଙ୍ଗେ ମିଶି ଏ ସହରଟାର ନିଃଶ୍ୱାସ ରୁନ୍ଧ ଦେଇଥିଲା । ଆଜି ଅଫିସରେ ମଧ୍ୟ ମନ ଲଗିଲାନି ସୀତାକାନ୍ତର । ଆଜିକାଲି କୋଉଥିରେ ତାର ଆଉ ମନ ଲାଗୁନାହିଁ । ମନର ସବୁଗ ମରି ଆସୁଛି ଧୀରେ ଧୀରେ ।

ଅଫିସରୁ ଫେରି କୁଆଡ଼େ ନ ଯାଇ ମେସ୍‌ରେ ଆପଣା ବିଛଣା ଉପରେ ଘୁରିକାତ ଲମ୍ବାଇ ପଡ଼ି ରହିଥିଲା ସୀତାକାନ୍ତ । ମେସ୍ ପୁଝାରୀ ସର୍ବେଶ୍ୱର କିଛି ପକୋଡ଼ି ଆଉ ଚାହା ଆଣି ଟେବୁଲ ଉପରେ ଥୋଇଥିଲା । ଚାହାତକ ସେ ପିଇଦେଇଛି – ମାତ୍ର ପକୋଡ଼ି ସେମିତି ଥାଳିଆରେ ଥଣ୍ଡା ହେଉଛି । ତାକୁ ଭୋକ ହେଉଥିଲା, ମାତ୍ର କୌଣସି ଜିନିଷ ଖାଇବାକୁ ସ୍ପୃହା ଆସୁ ନ ଥିଲା । ଗୋଟାଏ ଦୁଃଖଦ ବିରକ୍ତି ଆଉ ବିତୃଷ୍ଣା ତାକୁ ଏଠି ଘେରି ବସିଛି ! ଇତିମଧ୍ୟରେ ସର୍ବେଶ୍ୱର ଦୁଇଥର ଆସି ଜଳଖିଆତକ ଖାଇ ଦେବାକୁ ତାର ନିତିଦିନିଆ ଆନୁନାସିକ ସ୍ୱରରେ ଗେହ୍ଲେଇ ହୋଇ

କହିଗଲାଣି । ସର୍ବେଶ୍ବରଙ୍କର ମାଇଚଅ । ଏ ସହରରେ ସାତ ଭଉଣୀ ମାଇଚଅ ଅଛନ୍ତି । ସର୍ବେଶ୍ବର କହେ—ସେ ହେଉଛି ସେମାନଙ୍କର ମାଉସୀ ଝିଅ ଭଉଣୀ । ସର୍ବେଶ୍ବରଙ୍କୁ ଦେଖିଲେ ଚିଡ଼ଲାଗେ ତାକୁ । ତାର ସମସ୍ତ ମାଇଚଅ ଅବଲମ୍ବନରେ ସୀତାକାନ୍ତର ଦେହ ଉକୁଟି ଉଠେ । ଏକପ୍ରକାର ବମନ ପ୍ରତିକ୍ରିୟା ମଧ୍ୟ ଆସେ । ମାତ୍ର ସର୍ବେଶ୍ବରଙ୍କୁ କଡ଼ା କଥା କହି କହି ପାରେନା ସେ । ତାର ଉପସ୍ଥିତିରେ କେମିତି ଗୋଟେ କରୁଣତା, ବିଷଣ୍ଣତା ତାର ମନକୁ ଅଧିକାର କରିପାଏ । ତା' ଭିତରୁ ସମସ୍ତ ତେଜ ଲିଭିଯାଏ ।

ଏକେତ ଜୀବନ ଦୁଃସହ । ବଡ଼ ନିଛାଟିଆ । ପୁଣି ଏ ମେସ୍‌ର ଏଇ ମାଇଚଅ ପୁଷ୍ପାଞ୍ଜଳି କେମିତି ଗୋଟାଏ ଏକୁଟିଆ ଭାବକୁ ବେଶୀ ବଢ଼ାଇ ଦିଏ । ତାର ଉପସ୍ଥିତି ମନେ ପକାଇ ଦିଏ – ଏ ଜୀବନ ବ୍ୟର୍ଥ, ଏ ଜୀବନକୁ ନେଇ ଆଉ କିଛି କରି ହୁଏନା । ଏ ଜୀବନ ନପୁଂସକ । ଏ ଜୀବନର ଆକୃତି ଅଛି – ମାତ୍ର ବିକାରଗ୍ରସ୍ତ ତାର ଭିତରର ପ୍ରକୃତିଟି ।

ସବୁଦିନ ପରି ଆଜି ମଧ୍ୟ ସୀତାକାନ୍ତ ବଡ଼ଭୋରରୁ ଉଠି କେନାଲ ବନ୍ଧକୁ ବୁଲି ଯାଇଥିଲା । ସୂର୍ଯ୍ୟୋଦୟ ଦେଖିଥିଲା ବିଗ୍‌ବଜାରର ବନାନ୍ତ ଭିତରେ । ପ୍ରତିଦିନ ସେ ସୂର୍ଯ୍ୟୋଦୟ ଦେଖିବାକୁ ଭଲପାଏ । ଉଦୟ-କାଳୀନ ସୂର୍ଯ୍ୟକୁ ନ ଦେଖିଲେ ତା'ର ମନେହୁଏ ସତେ କି ତା' ଜୀବନର କେତୋଟି ପ୍ରହର ଅଚେତନ ଓ ଅନ୍ଧାର ଭିତରେ ବିତିଗଲା । ଜୀବନକୁ ବଞ୍ଚିବାମାନେ ଏହି ସୂର୍ଯ୍ୟକୁ ଗ୍ରହଣ କରିବା ତାର ଅଭ୍ୟାସ ଯାଏ । ମାତ୍ର ସୂର୍ଯ୍ୟାସ୍ତ ତାକୁ ଭଲ ଲାଗେନା । କରୁଣ ଲାଗେ । ବିଷାଦ ଆସେ । ତାର ଧାରଣା— ସମସ୍ତଙ୍କୁ ଜଣାଇ କରି ସୂର୍ଯ୍ୟ ଉଦୟ ହୁଅନ୍ତୁ; ମାତ୍ର ସମସ୍ତଙ୍କର ସଂପୂର୍ଣ୍ଣ ଅଲକ୍ଷିତରେ ସୂର୍ଯ୍ୟ ଅସ୍ତ ହୋଇଯିବା ଭଲ । କାରଣ, ସମାପ୍ତି ମାନେଇ ମିଥ୍ୟା, ଛଳନା, ଏକ କାଳ୍ପନିକ ଚରମ ମୁହୂର୍ତ୍ତର ଶେଷଦୃଶ୍ୟ ମାତ୍ର । "ଏ ଦୃଶ୍ୟ ପରେ ଆଉ ଦୃଶ୍ୟ ନାହିଁ"– ଏକଥା ଯଦି ଧ୍ରୁବ ନୁହଁ – ତେବେ କି ଲାଭ ଏହି ମିଥ୍ୟା ସମାପ୍ତିର ବିଷାଦରେ କିଛିକ୍ଷଣ ଘାରି ହେବା ? କିନ୍ତୁ ସତରେ କଣ କିଛି ଆରମ୍ଭ ମଧ୍ୟ ହୋଇଥାଏ ? "ଆରମ୍ଭ" ମଧ୍ୟ ଏକ ମିଥ୍ୟା ଲୁଚକି କି ? ଆଜିର ସୂର୍ଯ୍ୟୋଦୟ ବୋଲି କଣ ସତରେ ଏକ ଆରମ୍ଭିତ ଘଟଣାର ନିର୍ଦ୍ଦିଷ୍ଟ କେଉଁ ମୁହୂର୍ତ୍ତ ଅଛି ? କିଛି କଣ ପ୍ରକୃତରେ ଘଟୁଅଛି ? କାହିଁ ତା ଜୀବନର କୌଣସି ଅଭିଜ୍ଞତା ତ ଏକ

ଏକ ଘଟଣା ବୋଲି ତାର ମନେ ହୁଏନା ? କେଉଁ ଘଟଣାର ଭଲ ସେ କରିଚି ? ସେ କରିଚି ନ ହେଲେ ବ ଆଜି କଏ ଭଲ କରିଚି ?

ସୀତାକାନ୍ତ ଖଣ୍ଡେ ସିଗ୍ରେଟ୍ ଲଗାଇଲା । ଦୁଇଥର ଧୂଆଁ ଛାଡ଼ି ସେ ପୁଣି ଚକଆ ଉପରେ ଆଉଜି ଗଲା ଏବଂ ସିଗାରେଟଟା ଉପରେ ବିରକ୍ତ ହୋଇ ସେ ସେଟାକୁ ଆସ୍‌ଟ୍ରେରେ ଧ୍ୱଂସ ହାତରେ ମଡ଼ି ଲିଭାଇଦେଲା ।

ଦୁର୍ଭାଗ୍ୟ ! ନିଆଁ ନ ଗିଳି ସେ କେବଳ ଜୀବନଟସାକ ଧୂଆଁ ଗିଳି ଚାଲିଛି । ଅଥଚ ପାଟିର ଅନତିଦୂରରେ ଜକଜକ ଜଳୁଛି ନିଆଁ ର ଝୁଲିଟିଏ ।

ଅଚ୍ଛା ! ବଞ୍ଚିବାମାନେ କଣ ? ପ୍ରଶ୍ନଟା ତା' ଭିତରୁ ଉଦୟ ହେଲା ସତ – ମାତ୍ର ଆପଣା ପ୍ରଶ୍ନରେ ଆପେ ବଜିଉଡ଼ିଗଲା ତାର ମନ । ଆରେ ଯାଃ ! ବଞ୍ଚିବାମାନେ କଣ ? ସବୁକଥାର ମାନେ ବୁଝିବାକୁ ସିଏ କି ସେଇ ଖାଲି ଦାୟିତ୍ୱ ନେଇଛି ! ଦାୟିତ୍ୱ ନେଲେ ବି ସେ ପ୍ରଶ୍ନର ଉତ୍ତର ଦେବ କଏ ? ସେ ନିଜେ ? ଅସମ୍ଭବ । ନିଜର ମନକୁ ଗୋଟାଏ ପ୍ରଶ୍ନୋତ୍ତର ବିଭାଗରେ ପରିଣତ କରିବାକୁ ସେ ଚାହେଁନା ! ଜୀବନ ଯଦି ନିଜେ ତାର ଅର୍ଥଦାବୀ କରନ୍ତା ? ଦାବୀ କରନ୍ତା କାହାପାଖେ ? ନାଃ ସେ କାହାର କାବୀକୁ ଗ୍ରହଣ କରିବ ନାହିଁ । ତାର ଏ ପୃଥିବୀରେ ମଧ୍ୟ କାହା ଉପରେ ଦାବୀ ନାହିଁ । ଜୀବନ ଉପରେ ତାର ହାତ ନାହିଁ – ତେଣୁ ଜୀବନ ପ୍ରତି ତାର ଦାୟିତ୍ୱ ନାହିଁ । ସେ ଯେତେବେଳେ ଦଶବର୍ଷର ଅସହାୟ ପିଲାଟିଏ ସେତେବେଳେ ଜୀବନ ତା' ବାପାକୁ ମୂର୍ଚ୍ଛାର କରି ପକାଇ ଦେଇ କାହାକୁ ନ ପଚାରି ଚାଲିଗଲା । ବାପାଙ୍କର ସେହି ମୂର୍ଚ୍ଛାରଟା ଉପରେ ତା' ମାଆ ମୁଣ୍ଡ କୋଡ଼ି କାନ୍ଦୁଥିବାର ଦୃଶ୍ୟ ଆଜି ପର୍ଯ୍ୟନ୍ତ ବି ତା' ଭିତରେ ଉତ୍ତପ୍ତ ନିଆଁ ଭଳି କୁହୁଳୁଛି !! ଏଇ ଜୀବନ ପୁଣି ତା ସାନଭାଇଟିକୁ ପିଲାଦିନୁ ଛୋଟା କରି ପକାଇଛି । ଏ ଜୀବନ ଏମିତି ଅବଶ୍ୟାସୀ – ଏମିତି ନିଷ୍ଠୁର । ସେ କାହାର ଅନୁମତି ନେଇ ଆସେ ନାହିଁ । ଯିବାଲାଗି ମଧ୍ୟ ସେମିତି କାହାର ଅନୁମତି ଉପରେ ସେ ଅପେକ୍ଷା କରେ ନାହିଁ । ତେବେ କି ଲାଭ ତା' ଉପରେ ଏତେ ଗୁରୁତ୍ୱ ଦେବାରେ ? କି ଲାଭ ମଧ୍ୟ ତା'ର ଅର୍ଥ ବୁଝିବାକୁ ଚେଷ୍ଟା କରିବାରେ ?

ଖାଲି ସେ ଏକା ନୁହେଁ । ଏ ସହରଟାରେ ସମସ୍ତେ ସତେକି ଏଇ ଜୀବନଟାକୁ ନେଇ ବ୍ୟସ୍ତ ବିବ୍ରତ ଆଉ ତଟସ୍ଥ । ଏଠି ଜୀବନ ଖୁବ୍ ଗତିଶୀଳ । ମାତ୍ର ଅଚେତନ ତାର ଏଇ ଗତି । ପ୍ରତିଟି ମଣିଷର ଜୀବନ ଏଠି ଆଉ ଜଣକ ପାଖେ ଅପରିଚିତ—ପର । ଏଠି ମଣିଷମାନେ ଠେଲୁଣୀଗୋଳ ମଧ୍ୟ ଭଳି ଦେହକୁ ଦେହ ଲଗାଇ ସାଲୁବାଲୁ ହେଉଛନ୍ତି —ମାତ୍ର କେତେ ବିଚ୍ଛିନ୍ନ ଏଠି ପରସ୍ପର ପରସ୍ପରଠାରୁ ? ଘିଅ ହାଣ୍ଡିରେ ବୁଦ୍‌ବୁଦ୍‌ମାନେ ଏକାଠି ମିଶି ଆପଣା ଆପଣା ଦେହରେ ବାରମ୍ବାର ଗୁଡ଼େଇ ଭୁଡ଼େଇ ହୋଇ ଫୁଟିଲା ପରି ଏମାନେ ସମସ୍ତେ ଯେଉଁ ଦୁଃଖ ଓ ଯନ୍ତ୍ରଣାରେ ସିଝୁଛନ୍ତି । ମାତ୍ର ଯେଉଁ ଦୁଃଖ ତାର । ଏଠି ଅଗ୍ନି ଅଛି, ମାତ୍ର ତାର ଉତ୍ତାପ ନାହିଁ—ଆଲୋକ ବି ନାହିଁ । ବାୟୁମଣ୍ଡଳ ଅଛି, ମାତ୍ର ତା' ଭିତରେ ଗତି ନାହିଁ । ଅଥଚ କେତେ ଉତ୍ତପ୍ତ, ଆଲୋକିତ ଆଉ ଗତିଶୀଳ ଏଇ ସହରଟା । ଏହାର ସମସ୍ତ ଉତ୍ତାପ ଯେପରି ଚରମ ଶୀତଳତାର ଏକ ଛଳନା—ସମସ୍ତ ଗତି ଯେପରି ଅଗତିର ହିଁ ଏକ ଚିତ୍ରପଟ !! ସବୁ ଆଲୁଅ ଯେମିତି ଚରୁଗୁଣୀର ଆଲୁଅ ।

କିନ୍ତୁ କାହିଁକି ? ଅସ୍ଥିର ହେଲା ସୀତାକାନ୍ତ ।

ସୀତାକାନ୍ତ ଗ୍ରାମରେଇ ଜନ୍ମ ହୋଇଥିଲା । ପାଠ ପଢ଼ିଥିଲା ସହରରେ । ଆଜି ଚାକିରି ମଧ୍ୟ କରୁଛି ଏଇ ସହରରେ । ଗୋଟିଏ କ୍ଷୁଦ୍ର କେମିକାଲ୍‌କଂପାନିର ସହକାରୀ ଏଜେଣ୍ଟ । ଏଠି ଏଇ ମେସ୍‌ରେ ତା' ଭଳି ଆଉ କେତେଜଣ ଅଛନ୍ତି । ସମସ୍ତେ ଚାକିରି କରି ପେଟ ପୋଷନ୍ତି । ଯେଉଁ ଧନ୍ଦାରେ ଯେ ବ୍ୟସ୍ତ । ଏ ମେସ୍‌ରେ କେହି କାହାର ନାମ ଜାଣନ୍ତି ନାହିଁ । ନାମ ମନେ ରହେନା । ସାଙ୍ଗିଆ ମନେରହେ ।

ମହାପାତ୍ରବାବୁ ଓ ଖାଁ ବାବୁ ପ୍ରାୟ ପ୍ରତିଦିନ ସନ୍ଧ୍ୟାବେଳେ ଛକ ପାନ ଦୋକାନରୁ ଦୁଇଟି ନିଶା ମୋଦକ ଖାଇ ଫାଷ୍ଟ ସୋ ସିନେମା ଦେଖି ଫେରନ୍ତି ରାତି ଦଶଟାରେ । ତା' ପରେ ଖାଇଦେଇ ବିଛଣା ଧରୁ ଧରୁ ନାକ ଘୁଡ଼ୁଡ଼ି ଡାକେ । ପଣ୍ଡାବାବୁ ଓ ଜେନାବାବୁ ସନ୍ଧ୍ୟାରେ ଟିଉସନ୍ କରନ୍ତି ଓ ପ୍ରତି ଶନିବାର ଗ୍ରାମକୁ ଯାଆନ୍ତି—ଫେରନ୍ତି ସୋମବାର ଦିନ ବାରଟାରେ । ସାବତବାବୁ ଓ ଘଡ଼େଇବାବୁ ପ୍ରତି ରବିବାର ଦିନ

ମାର୍ଜାକୁ ପାନ୍ତି । ପ୍ରଫେସରବାବୁ ଟିକଏ ଭିନ୍ନ ପ୍ରକାରର ଲୋକ । ଆନମନା । ସକାଳେ ଓ ସନ୍ଧ୍ୟାରେ ବାରଣ୍ଡାରେ ବସିରହି ଗୋଏନ୍ଦା କାହାଣୀର ଉପନ୍ୟାସ ପଢ଼ୁଥାନ୍ତି । ହରେକ ରକମର ଉପନ୍ୟାସ । ହରେକ ଭାଷାର । ସେ କାହା ସଙ୍ଗେ ମିଶନ୍ତି ନାହିଁ—ଉପନ୍ୟାସରଘଟଣା ଓ ଚରିତ୍ର-ମାନଙ୍କ ସଙ୍ଗେ ତାଙ୍କର ଗୋପନ ମାନସିକ କାରବାର । ଆଉଜଣେ ଅଛନ୍ତି ତାଙ୍କର ଭଲ ଶତପଥୀବାବୁ । ତାଙ୍କ ଆଖି ଦୁଇଟା ସବୁବେଳେ ଅଧାବୁଜା ଅଧାଖୋଲା । ଛୁଟିଦିନେ ଛାତ ଉପରେ ଓ ଅନ୍ୟ ଦିନ-ମାନଙ୍କରେ କୋଠରୀ ଭିତରେ ବଇଁଶୀ ବଜାନ୍ତି । କାହା ସଙ୍ଗେ କଥା କୁହନ୍ତି ନାହିଁ । ସତକଥା—ଆଜି ଯାଏ ତାଙ୍କ କଣ୍ଠସ୍ୱର କେମିତି ସୀତାକାନ୍ତ ଜାଣିନି । ବଂଶୀର ସ୍ୱର ମୂର୍ଚ୍ଛନାରେ ଆଚ୍ଛନ୍ନ ଓ ବହ୍ୱଳ ଶତପଥୀବାବୁଙ୍କ ସାଙ୍ଗେ କେହି ଯଦି ମିଶିବାକୁ ଆଗେଇ ଆସେ—ତେବେ ସେ ତାକୁ କାଳ ଧରି ନ ଦେଇ ବଂଶୀର ସୁରଟିକୁ ଧରାଇ ଦିଅନ୍ତି । ମହାନ୍ତିବାବୁ, ବେହେରା ବାବୁ ଓ ମିଶ୍ରବାବୁ ସାହିର ଜଣେ ଦୋକାନୀ ସଙ୍ଗେ ପ୍ରତି ରାତିରେ ତାସ ଖେଳନ୍ତି ଅଧରାତିଯାଏ । ପଇସା ବାଜିରହେ । ପରସ୍ପରକୁ ଡାକନ୍ତି ପାର୍ଟନର ବୋଲି । ଅଥଚ ପ୍ରତ୍ୟେକେ ଯେପରି ଆପଣା ଚାରିପଟେ ଗୋଟେ ଲେଖାଁ ବୃତ୍ତାକାର ପାଚେରୀ ଖଣ୍ଡାକରି ତା' ଭିତରେ ଆତ୍ମ-ଗୋପନ କରି ରହିଛନ୍ତି । ସୀତାକାନ୍ତ ବହୁବାର ସେ ପ୍ରାଚୀରମାନ ଅତିକ୍ରମ କରି ଅନ୍ଦର ମହଲରେ ପଶି ଭାବ ଜମାଇବାକୁ ଚେଷ୍ଟା କରିଛି । ମାତ୍ର ବୃଥା ତାର ସେ ପ୍ରୟାସ । ପ୍ରାଚୀର ଅତିକ୍ରମ କଲେବି କାହାର ଅନ୍ଦର ମହଲରେ ପଶି ହୁଏନା । ପ୍ରତ୍ୟେକର ଅନ୍ଦର ମହଲ ଦଶଦିଗରୁ ଆବଦ୍ଧ । ତାର ଦ୍ୱାରରେ ଆଘାତ କଲେ କବାଟଟାଇ ଶବ୍ଦ କରେ, ଅନ୍ଦର ମହଲରୁ ଉତ୍ତର ମିଳେନା – ଅନ୍ଦର ମହଲ ଖୋଲେ ନାହିଁ ।

ଛି – ଛି—କି ଦୁର୍ବିସହ ଏହି ଜୀବନର ନିଃସଙ୍ଗତା ! ପୁଣି କି ଦୁଃସହ ଏହି ଏକାନ୍ତ ରହିବାର ଛଳନା ? ତୁମେ ଯାର ଅଧରାତି ଯାଏ ଯାହା ସଙ୍ଗେ ତାସ୍ ଖେଳୁଛ—ତା'ର ସମସ୍ୟା ସମ୍ପର୍କରେ ତୁମର କିଛି ଧାରଣା ନାହିଁ । ତୁମେ ହୁଏତ ଜାଣନା ଯେ ତାର କୁମାରୀ ଭଉଣୀଟି ଯାହାକୁ ସେ ପିଲାଦିନୁଁ ବହୁ କଷ୍ଟରେ ପାଳି, ପାଠ ପଢ଼ାଇ, ଅଫୁରନ୍ତ ସ୍ନେହ ଦେଇ ବଢ଼ାଇ ଆସିଥିଲା—ସେ ବିଶ୍ୱାସଘାତକତା କରି ଏକ ଅଜ୍ଞାତ କୁଳଶୀଳ

ଉପାର୍ଜନହୀନ ଉଦ୍‌ଭ୍ରାନ୍ତ ଯୁବକର ପ୍ରେମରେ ପଡ଼ି ପାଞ୍ଚମାସର ପାପଗର୍ଭ ହୋଇଛି ଓ ସେ ଯୁବକଟିର ପତ୍ତା ନାହିଁ । ଆଜି ଆପଣା ହୃଦପୁର ଅନ୍ଦର ମହଲରେ ସେଇ କଥାକୁ ଧରି ସେ ବ୍ରିଜ ଖେଳୁଛି ବା ଖେଳୁଛି ଷ୍ଟେକ । ତାକୁ କୁଣ୍ଢାଇ ଧରି କୁହାଯାଇ ପାରନ୍ତା ଯେ "ଦେଖ ଭାଇ ! ସେ ଟୋକୀକୁ କୁହ—ସେ ଟୋକାକୁ କୋଉଠୁ ଖୋଜିକରି ଆଣୁ । ନଚେତ୍ ଆଜି କାହା ଘରେ ବାସନ ମାଜି ତା'ର ପ୍ରେମଫଳଟିକୁ ପୋଷୁ । ସେ ଟୋକା ତୁମ ଘରୁ ବାହାରିଗଲେ ତୁମେ ତୁମ ସ୍ତ୍ରୀକୁ ତା' ଖର୍ଚ୍ଚରେ ପ୍ରତିଦିନ ୨ଟି ଅଣ୍ଡା ୨ଟି କମଳା "ଓ ୨ଟି ରସଗୋଲା ଖାଇବାକୁ ଦିଅ ।" ତୁମେ ହୁଏତ ଜାଣନା ଯେ ତୁମେ ଯାହା ସଙ୍ଗେ ଏକାଠି ମିଶି ଗୀର୍ଜା ବା କୋଉ ମଠରେ ବସି ସମବେତ ପ୍ରାର୍ଥନା ବା ସଂକୀର୍ତ୍ତନ କରୁଛ ସେ ଲୋକଟି ଆପଣା ଜୀବନର ଗୋଟିଏ କ୍ଷୁଦ୍ର ପାପ ଲାଗି ଅହରହ ବିବ୍ରତ ଓ ଅନୁତାପର ନିଆଁରେ ପୋଡ଼ି ମରୁଛି—ତାକୁ କେହି କହୁନାହାନ୍ତି ଯେ ବାବୁ ! ଏଠି ପାପ ବୋଲି କିଛି ନାହିଁ । କୌଣସି ବିଧାତା ତୁମ ଭଳି ନଗଣ୍ୟ ଲୋକର ପାପ ବା ପୁଣ୍ୟକୁ କେୟାର କରିବାକୁ ସମୟ ପାଏନା । ତୁମେ ନିଶ୍ଚିନ୍ତ ରୁହ ଓ ଯଦି ପାରୁଛ ଆଉ କିଛି ଶ୍ରେଷ୍ଠ ଶ୍ରେଷ୍ଠ ପାପ କର୍ମରେ ହାତ ଦିଅ ଓ ତା' ସଙ୍ଗେ ସାନ ସାନ ପୁଣ୍ୟବୋଲି ମନେ ହେଉଥିବା କେତେକ କାର୍ଯ୍ୟ ମଧ୍ୟ କରି ଚାଲିଥାଅ । ଆମର ସାନ ସାନ ପାପ ବା ସାନ ସାନ ପୁଣ୍ୟଗୁଡ଼ିକୁ ଈଶ୍ୱର କଳାଭଳ ଏତେ ଶ୍ରେଷ୍ଠ ତଉଳନ୍ତି ନାହିଁ । ଆମକୁ ଭଲ ଲାଗିବା ତାର ଏକମାତ୍ର ମାନଦଣ୍ଡ । ଏଠି ବେଙ୍ଗ ମାରିବା ଯାହା ହାତୀ ମାରିବା ସେଇଆ । ମଧୁଫେଣୀ ଭାଙ୍ଗି ମଧୁ ଖାଇବା ଯାହା—ଅନ୍ୟ ସ୍ତ୍ରୀର ଅଧର ଚୁମ୍ବନ କରି ଖୁସୀ ହେବା ସେଇଆ ।

କିମ୍ବା ତୁମେ ହୁଏତ ଜାଣନା ଯେ ଦିନରାତି ଖେଣ୍ଡ ଖଣ୍ଡ ଉପନ୍ୟାସ ପଢ଼ି ଚାଲିଥିବା ଲୋକଟି ବିବଶ ତା'ର ରୁଗ୍‌ଣା ଓ ଅଧା ପାଗଳୀ ସ୍ତ୍ରୀଟି ପ୍ରତି ବଡ଼ ବିରକ୍ତ—କାତର ଓ ବିପର୍ଯ୍ୟୟଗ୍ରସ୍ତ । ତାକୁ ମଧ୍ୟ କୁହାଯାଇ ପାରନ୍ତା ସିଧା ସଳଖ ଯେ—ଦେଖ ବାବୁ ! ସେ ସ୍ତ୍ରୀଟିକୁ ତା' ବାପଘରେ ଛାଡ଼ିଦିଅ । ନହୁବା ଖୋରାକ ପୋଷାକ ଦେଇ ପାଖରେ ରଖ ଓ ତୁମକୁ ଭଲ ଲାଗୁଥିବା ଆଜି ଗୋଟିଏ ସୁସ୍ଥ ସୁନ୍ଦର ସ୍ତ୍ରୀ ଲୋକ ଯୋଗାଡ଼ କରି ବାହା ହୋଇ ଆରାମ୍‌ସେ ରହ । ତୁମର ପୋଷା କୁତ୍ତାଟା ବାନ୍ଧିଥା

ହୋଇଗଲେ – ତୁମେ ତାକୁ ବନ୍ଧଣାରେ ଧରି ଶୋଇବାକୁ ବାଧ୍ୟ ନୁହଁ— ତାକୁ କୌଶଳରେ ବିଷ ପ୍ରୟୋଗ କରି ମାରିଦିଅ । ଅଥବା ପିଞ୍ଜରାରେ ଆବଦ୍ଧ କରି ରଖ ଓ ଝରକାବାଟେ ଖାଦ୍ୟ ପୋପାଡ଼ିଥାଅ ଓ ଆଉ ଗୋଟାଏ ଚମତ୍କାର କୁଣ୍ଡ ଆଣି ଘରେ ବାନ୍ଧ ଓ ତାକୁ କୁହ ଯେ ଆଜଠାରୁ ତୁମେ ମୋର କୁଣ୍ଡ ଓ ମୁଁ ତୁମର କୁଣ୍ଡ ।

ଆଃ ! କେହି କାହାକୁ ବୁଝାପାଇ ପାରନ୍ତି ନାହିଁ ! ଅଥଚ ଅସଂଖ୍ୟ ଯନ୍ତ୍ରଣା, ଅସଂଖ୍ୟ ଦୁଃଖ । ସମସ୍ତେ ଆଜି ହୋଉଛନ୍ତି; ସନ୍ତୁଳ ହେଉଛନ୍ତି । ସବୁ ଯନ୍ତ୍ରଣାରୁ ମୁକୁଳିବାକୁ ବାଟ ଅଛି । କାହାର ଦାୟିତ୍ୱ ନିଅ ନାହିଁ—ଆରେ ବାବୁ, କାହାର ଦାୟିତ୍ୱ ନିଅ ନାହିଁ । କେହି କାହାକୁ ଲଗା ନୁହଁ କି କେହି କାହାର ପଘା ନୁହଁ ।

ସୀତାକାନ୍ତ ଉତ୍ତେଜିତ ହୋଇ ପଡ଼ିଲା । ବିଛଣାରୁ ଉଠିପଡ଼ି ସେ କାହା ଉଦ୍ଦେଶ୍ୟରେ ପାଟିକରି ଭର୍ତ୍ସନା କଲା—

ତୁମେ ଜାଣନା,—କେହି କାହାକୁ ଜାଣେନା—ଅଥବା···କେହି କାହାକୁ ଜଣାଉ ନାହିଁ । ସମସ୍ତେ ଭୟ କରୁଛ ହୁଏତ କେହି କାହା କଥା ଏଠି ଶୁଣିବେ ନାହିଁ—ସାରା ହେବ ଅରଣ୍ୟରୋଦନ । ସିନେମାରେ ଛବି ଦେଖି ତୁମେ ଜୀବନର ଯେତିକି ଅର୍ଥ ଓ ଉତ୍ତେଜନା ଗ୍ରହଣ କରିଥାଅ – ଏହି ପୃଥିବୀ ବା ଏହି ସମାଜ ତୁମକୁ ସେତିକି ମାତ୍ର ନିର୍ଜୀବ ଅର୍ଥ ଓ ଉତ୍ତେଜନା ଦେଉଅଛି । ତୁମର ଆଶଙ୍କା—ସବୁ ଏଠି ପ୍ରାଣହୀନ, କେବଳ ଭିତରର ଉତ୍ତେଜନା ଯାହା ବାସ୍ତବ । ଏହାର ପରିଣାମ କେବଳ ଏକ ବିରକ୍ତିର କ୍ଲାନ୍ତି । ତୁମେ ସବୁ କ୍ଳାନ୍ତ । ଏହି କ୍ଲାନ୍ତି ହୁଏତ ତୁମର ନିଦ୍ରାକୁ ସ୍ୱପ୍ନହୀନ କରୁଛି । କିମ୍ବା—ଜାଗରଣକୁ କରୁଛି ତନ୍ଦ୍ରାମୟ । ସେଇଥିଲାଗି ତ କାହାର କାହାକୁ ବିଶ୍ୱାସ ନାହିଁ । କାରଣ ତୁମେ ଭାବୁଛ - ଏସବୁ କେବଳ ସିନେମା; ଅସତ୍ୟ ଜଗତର ଅସତ୍ୟ ଛବି— ସର୍ବୈବ ମିଥ୍ୟା ।

କାହିଁକି ଏପରି ହେଉଛି ? ସୀତାକାନ୍ତ ମନ ଭିତରୁ ଏହି ପ୍ରଶ୍ନଟି ଉଠିବା ମାତ୍ରେ ତା ଭିତରେ ଗୋଟାଏ ସାହସ ଓ ସ୍ଥିରତା ମଧ୍ୟ ସେ

ଅକସ୍ମାତ୍ ଅନୁଭବ କଲି । "ଜୀବନର ଅର୍ଥ କଣ ?" ପ୍ରଶ୍ନଠାରୁ ଏ ପ୍ରଶ୍ନଟି ବରଂ ବେଶୀ ସହଜସାଧ୍ୟ ଓ ଏ ପ୍ରଶ୍ନକୁ ମଧ୍ୟ ମୁକାବିଲା କରାଯାଇପାରେ । ଦୁଃଖ ରୋଗ ବ୍ୟକ୍ତିଗତ ହୋଇପାରେ—ମାତ୍ର ଦୁଃଖର କାରଣଟି ସାର୍ବଜନୀନ । କଣ ସେ କାରଣ ? ଗୋଟିଏ ପଦରେ "ଅଜ୍ଞାନ" । "ଅଜ୍ଞାନ" କୋଉଠୁ ଆସିଲା ? ଗୋଟିଏ ମାତ୍ର ଉତ୍ତର "ଅପ୍ରେମ"ରୁ । ପ୍ରେମ କାହିଁ ? ଆରେ ବାବୁ, ପ୍ରେମ ଏଠି କାହିଁ ? ସେ ପଦାର୍ଥଟି ଆସିବ କୋଉଠୁ ?

ସୀତାକାନ୍ତ "ପ୍ରେମ" କଥା ଭାବୁ ଭାବୁ ନିଜେ ନିଜ ପାଖରେ ଲଜ୍ଜିତ ହୋଇଉଠିଲା । ସେ ଭଲ କାହାକୁ ପ୍ରେମ କରେ ? ତା'ର ବିଧବା ମା'ଟିକୁ ? ପିଲାଦିନୁ ଯୋଉଁଓ ଲାଗି ଆଜପର୍ଯ୍ୟନ୍ତ ୧୮ବର୍ଷକାଳ ଗ୍ରେଟେଇ ଗ୍ରେଟେଇ ଚାଲୁଥିବା ତାର ସାନ ଭାଇଟିକୁ ? ସରିତା ଦାସକୁ ? ନାଃ— କାହାକୁ ସେ ଭଲ ପାଇନି । ଭଲ ପାଇବା ସହଜ କଥା ନୁହଁ ବାବୁ । ସରିତା ଦାସକୁ ସେ ନିରୋଳାରେ ବହୁବାର ଆଲିଙ୍ଗନ କରିଥିଲା—ଚୁମ୍ବନ କରିଥିଲା । ସରିତାକୁ ବାହା ହେବ ବୋଲି କଥା ଦେଇଥିଲା । ସରିତା ମଧ୍ୟ ଅପେକ୍ଷା କଲା ବହୁ ଦିନ ଯାଏ । ମାତ୍ର ସେ ନିଜେ ତାକୁ ବାହା ହେବା ଲାଗି ପ୍ରସ୍ତୁତ ହୋଇପାରିଲା ନାହିଁ । ତାକୁ ଡର ଲାଗିଲା । ତାର ସାହସ କୁଲେଇଲା ନାହିଁ । ସରିତା ଥିଲା ଭାରି ଭାବପ୍ରବଣ । ସବୁ କଥାରେ ତାର ଉଚ୍ଛ୍ୱାସ । ବାରମ୍ବାର ସେ କହୁଥିଲା—ତୁମେ ଭୟ କରୁଛ କାହିଁକି ? ମୋର ବାପା ମାଆ ଉଦାରମନା ଲୋକ ଅଛନ୍ତି । ଦାରିଦ୍ର୍ୟ ତୁମର ପ୍ରତିବନ୍ଧକ ନୁହଁ । ମାତ୍ର ସୀତାକାନ୍ତ ବାରମ୍ବାର ସେଇ ଗୋଟିଏ ଉତ୍ତର ଦେଇଥିଲା— ମୁଁ ତୁମକୁ ସୁଖୀ କରି ପାରିବିନି ସରିତା !

ଅସଲ କଥା—ସରିତାର ଉଚ୍ଛ୍ୱାସିତ ପ୍ରେମର ଓଜନ ତାକୁ ମାତ୍ର ପଡ଼ୁଥିଲା । ପ୍ରେମର ଏତେ ବଡ଼ ଦାବୀ, ହୃଦୟର ଆଦାନପ୍ରଦାନରେ ଏତେ ପ୍ରଣୟ-ଦାୟିତ୍ୱ ତା' ପକ୍ଷରେ ମନେ ହୋଇଥିଲା ଗୋଟାଏ ନିଦାରୁଣ ଅଥଚ ଅବାନ୍ତର ବୋଝ ବୋଲି । ସରିତା ଆଜ ପର୍ଯ୍ୟନ୍ତ ବାହା ହୋଇ ନାହିଁ । ସେ ତାର ପ୍ରେମର ଅନୁଭୂତି ଦେଇ ବହୁ ପ୍ରଣୟ କବିତା ଲେଖୁଛି । ଅଥଚ ସରିତା ପ୍ରତି ତା' ମନରେ ବର୍ତ୍ତମାନ ଏତେ ଟିକେ ବି ଉତ୍ତାପ ନାହିଁ । ତା' ଭିତରେ ଏତେଟିକେ ବି ପ୍ରଣୟ-ତାଡ଼ନା ଅନୁଭବ

କରୁନାହିଁ । କାହାପ୍ରତି ନାହିଁ—ତାର କାହା ପ୍ରତି ମଧ୍ୟ ଆଉ କିଛି ଉଚ୍ଛ୍ୱାସ ନାହିଁ । ସମସ୍ତ ପ୍ରବୃତ୍ତି ସେ ହରାଇ ବସିଛି । ତାର ବିଧବା ମାଆ କିମ୍ବା ତା'ର ଶ୍ରେଷ୍ଠା ଭଉଣୀ ଲାଗି ତାର ଅନୁକମ୍ପା ଅଛି । ଅବଶ୍ୟ ସେମାନଙ୍କୁ ସେ ସବୁପ୍ରକାର ସାହାଯ୍ୟ କରୁଛି । ସେମିତି ମଧ୍ୟ ସରିତା ପ୍ରତି ତାର କିଛି ଅନୁକମ୍ପାମୟ ସମ୍ମାନବୋଧ ଅଛି । ମାତ୍ର ଅନୁକମ୍ପା ତ ଆଉ ପ୍ରେମ ନୁହେଁ ! ଅନୁକମ୍ପା ତ ଆଉ ବଞ୍ଚିବାଲାଗି ପ୍ରେରଣା ହୁଏ ନାହିଁ !! ଜୀବନକୁ ଉତ୍ସପରେ ଭରିଦିଏ ନାହିଁ !! ବରଂ ଜୀବନକୁ ବିମର୍ଷ କରିଦିଏ ଅନୁକମ୍ପାର ଗାଢ଼ତା । ଏବେ ତ ସେ ପୃଥିବୀ ପ୍ରତି କେବଳ ଅନୁକମ୍ପାଶୀଳହିଁ ହୋଇ ଉଠୁଛି । ଅନୁକମ୍ପା—କେବଳ ଅନୁକମ୍ପା । ବିଷର୍ଣ୍ଣତା, ନୈରାଶ୍ୟ ଓ ବୈରାଗ୍ୟରେ ତାହା ହୃଦୟକୁ ରିକ୍ତ କରି ଦେଉଛି—!! ସେଇଥିପାଇଁ ତ ତାକୁ ଏବେ ଲାଗୁଛି—ସେ ନିଜେଇ ଅନୁକମ୍ପାର ପାତ୍ର !! ହଁ—ହଁ ସେ ନିଜେଇ ନିଜର ଅନୁକମ୍ପାର ପାତ୍ର ।

ଅନ୍ୟର ଦୁଃଖରେ ତାର ଆଖିରୁ ଲୁହ ବହୁଛି – ଅନ୍ୟ ଲାଗି ସେ ଯନ୍ତ୍ରଣା ଭୋଗିଛି । ମାତ୍ର ଦାୟିତ୍ୱ ନେଇ ନାହିଁ ସେ କାହାର । ସମସ୍ତ ଦାୟିତ୍ୱ-ହ୍ଲାଦନର ଅନୁଭବରେ ଯାହା ନିତ୍ୟ ମଧୁର ଓ ଅନୁଶୀଳନର କର୍ମରେ ଯାହା ନିତ୍ୟ ଉତ୍ତପ୍ତ । ଏହି ନିତ୍ୟ ଉତ୍ତପ୍ତ ମାଧୁର୍ଯ୍ୟର ଅନୁଭୂତି ବୋଧେ ପ୍ରେମ !!

ହଠାତ୍ ସୀତାକାନ୍ତ ନିଜକୁ ଖୁବ୍ ଦରିଦ୍ର ହତାଶ ମନେକଲା । ଅବଶ୍ୟ ଏ ଦାରିଦ୍ର୍ୟ ଓ ହତାଶବୋଧ ଆଉ ପ୍ରକାରେ । ଏ ପ୍ରକାର ଦାରିଦ୍ର୍ୟ ଓ ହତାଶାବୋଧରେ କେହି ଘରେ ବସି ପାରେନା ଏକୁଟିଆ !! ଏ ପ୍ରକାର ଅନୁଭୂତିରେ କିଛି ଗୋଟାଏ କରିଦେବାକୁ ମନରେ ଆଗ୍ରହ ବଢ଼ିଯାଏ ।

ଅଗତ୍ୟା ସେହି ତାଡ଼ନାରେ ବିଛଣାରୁ ଉଠିପଡ଼ି ଠିଆହେଲା ସୀତାକାନ୍ତ । କୋଟ୍‌ଟି ଗଳାଇ ସେ ବାହାରି ପଡ଼ିଲା ସହର ଭିତରକୁ । ଭାବିଲା— ସେ ଆଜି ସରିତାକୁ ଭେଟିବ । ସରିତା ସଙ୍ଗେ ମୁକାବିଲାରେ ସେ ଯଦି ଉପଯୁକ୍ତ ହେବ ତେବେ ଯାଇ ସେ ଜଗତର ସମ୍ମୁଖୀନ ହେବ । ଆଜି ସେ ସରିତାକୁ ଆଲିଙ୍ଗନକରି କହିବ—ସରିତା ! ଆଜିଯାଏ ମୋ ଉପରୁ

ପ୍ରେମକବିତା ଲେଖିଛ—ମୁଁ ସେ ସବୁ ପଢ଼ିଛି । ସେଗୁଡ଼ିକ ବର୍ତ୍ତମାନ ନିରର୍ଥକ । ଆସ ! ମୁଁ ତୁମକୁ ଏହି ମୁହୂର୍ତ୍ତରେ ବିବାହ କରିବି । ଆମର ବିବାହ ପରେ ଯାଇ ତୁମେ ପ୍ରେମ ଉପରେ ତୁମର ଅନୁଭୂତିମାନ ଲେଖିବ ।

......ରାତି ଦଶଟା ବାଜିଲାଣି । ବେଶ୍ କୁହୁଡ଼ିଆ ଶୀତରେ ବଡ଼ ରାସ୍ତାଟି କୁକୁର କାନ୍ଧର ହୋଇ ଯାଇଛି ବୁଢ଼ୀଟିଏ ଭଳି । ରାସ୍ତା ଶୁନ୍‌ଶାନ୍ । କେବଳ ପାର୍କପାଖ ଗ୍ଲେଟିଆ ହୋଟେଲଟିଏ । ଟିମାନନାଙ୍କ ବିଖ୍ୟାତ ହିନ୍ଦୁ ହୋଟେଲ—ସେଠି କେତେକ ରିକ୍‌ସାବାଲା ଓ ବସ୍ତିଲୋକ ମାଲପାଣି ପିଇ କଡ଼ା ମସଲାରେ ଭଜା ହୋଇଥିବା କଲିଜାଭଜା ଖାଉଥିଲେ ଓ ସେହି ମଇଳା ଆଲୁଅରେ ହୈହୁଲ୍ଲା କରୁଥିଲେ । ପାର୍କର ବାହାରପଟେ ଜଣେ ବାବାଜୀ ଧୂନି ଜାଳି ଗଞ୍ଜେଇ ଖାଉଥିଲେ । ତାଙ୍କ ପାଖରେ ବସି ଖଞ୍ଜଣୀ ପିଟୁଥିଲେ ତାଙ୍କର କେଇଟି ବହିଁରର ଶିଷ୍ୟ, ଯେଉଁମାନଙ୍କୁ ରାତି ଭରି ଉଚ୍ଛାଟ କରେ ।

ସବିତା ଘର ପାର୍କଠାରୁ ଅଳ୍ପ ଦୂରରେ । ସୀତାକାନ୍ତ ସେହି ରାସ୍ତାରେ ଚାଲିଲା । କିଛିବାଟ ଯାଇଛି—ମାତ୍ର ମୋଡ଼ ଉପରେ ହଠାତ୍ ସେ ଅନୁଭବ କଲା କିଏ ଯେପରି ତା' ପିଚ୍ଛ ଧରିଛି । ସେ ପଛକୁ ବୁଲିଲା । ଅତି ସାନ କଳିଆ କୁକୁର ଛୁଆଟିଏ କୁଁ କୁଁ ହୋଇ ତାକୁ ଅଣ୍ଟା ମାଗୁଛି । ତା' ଦୁଇଗୋଡ଼ ସନ୍ଧିରେ ପଶି ଅଳି କରୁଛି । ଶୀତରେ ଥରି ଯାଉଛି ତାର ଗ୍ଲେଟିଆ ଦେହଟି । ସେ ଉଷୁମ ଖୋଜୁଛି ନା ଖାଦ୍ୟ ଖୋଜୁଛି ? ସୀତାକାନ୍ତ ତାକୁ ଟିକିଏ ଠେଲିଦେଇ ଆଗକୁ ଚାଲିଲା । ମାତ୍ର ଛୁଆଟି ତା' ପିଚ୍ଛଧରି ନାଥିଲୁ ପାଥିଲୁ ହୋଇ ପୁଣି ଦୌଡ଼ିଲା । ଦୌଡ଼ିଲା ବେଳେ ସେ ସେମିତି କୁଁ କୁଁ ହୋଇ କାନ୍ଦ ଲଗିଥାଏ । ସୀତାକାନ୍ତ ଟିକିଏ ବିବ୍ରତ ବୋଧକଲା । ଦୁତ୍ ତେରି ! ଗୋଟିଏ ବିଷମ ଜଞ୍ଜାଳ କୁଆଡ଼ୁ ଆସି ଜୁଟିଲା ତା' ପାଖରେ ଏତେବେଳେ ? ଅଚ୍ଛା ବିପଦ ! କିନ୍ତୁ ବର୍ତ୍ତମାନ ସେ କଣ କରିବ ? ହୁଏତ ଏହାକୁ କୋଳରେ ଉଠାଇ ସାଙ୍ଗରେ ନେଇଯିବାକୁ ହେବ ନଚେତ୍ ଏହାର ମା'କୁ ଖୋଜି ତା'କୁ ତା ଜିମା ଦେଇ ସେ ନିଶ୍ଚିନ୍ତ ହେବ; କିନ୍ତୁ କାହିଁ ତା' ମାଆ ?

ସୀତାକାନ୍ତ କୁକୁରଛୁଆଟିକୁ କୋଳରେ ଉଠାଇ ପଛକୁ ଫେରିଲା ଟିମାନନା ହୋଟେଲ ପାଏ । ସେଠି ପହଞ୍ଚି ସେ ପଚାରିଲା —ହଇଓ ଟିମାନନା ! ଏ କୁକୁର ଛୁଆଟାର ମା କାହିଁ ?

ଟିମାଜନା ଦୋକାନ ଭିତରୁ ବାହାରି ଆସି ନବକାର ସ୍ୱରରେ କହିଲା—ସେ ଖନକା କଣ ଆଉ ଅଛି ? କାଲଟାଳ ମେଠି ମଚର ସ୍ଥାଗରେ ମରି ପଡ଼ିଛି । କାହିଁକି ସେଇଟାକୁ ଧରିଛ ବାବୁ ! ସେ ଶଳାଙ୍କ ଦେହରେ ବୁଦ୍ଧିଥିଲା । ଶଳା କ'ଣ ଘରେ ରହିବେ ? ଯେତେ ଦୁଧ ମାଉଁସ ଦିଅ—ଶଳା ସ୍ୱଭାବ ଅଭ୍ୟାସରୁଲ ଗୁହଡରିବେ; ନଇଲେ ଆସି ଏଠି ଦୋକାନେଲ ପାଖେ ଅଇଁଠା ପତ୍ର ଗୁଣ୍ଡିବେ ! ଗୁଡ଼ ବାବୁ, ଗୁଡ଼ ତାକୁ । ସେ ଶଳା ବି ସେମିତି ମରିବ । ଆଉ ଦୁଇଟା ଛୁଆ ଏଠି ବୁଲୁଥିଲେ । ଶଳେ ଖାନକାଛୁଆ କୁଆଡ଼େ ଗଲେ କେଜାଣି ?

ଟିମାଜନାର କଥାରେ ସୀତାକାନ୍ତର ମନ ଭାରି କରୁଣ ହୋଇ ଉଠିଲା । ତାକୁ ଲାଗିଲା—ଏହି ମାତୃହୀନ କୁକୁରଛୁଆଟି ବର୍ତ୍ତମାନ ତା' ଉପରେ ଗୋଟାଏ ବୋଝ, ଗୋଟାଏ ଦାୟିତ୍ୱ ରୂପେ ଲଦି ହୋଇଗଲାଣି । ସେ ତାକୁ ଆଉ କୋଳରୁ ତଳକୁ ଖସାଇ ଦେଇ ପାରିବ ନାହିଁ । ତା'ର ହାର୍ ଜିତ୍ ବର୍ତ୍ତମାନ ଏହି କୁକୁରଛୁଆଟିଇ ନିର୍ଣ୍ଣୟ କରିବ । କେଉଁ ଅଦୃଶ୍ୟ ବିଧାତା ଏଇ ମାଘ ମାସ ଶୀତୁଆ ରାତିରେ ତାର ସହରୀ ସଙ୍ଗତେ ମୁକାବିଲା କରିବା ସ୍ୱାସ୍ଥ୍ୟରେ ତାକୁ ଆଣି ତା' ଉପରେ ଲଦି ଦେଲଣି । ବର୍ତ୍ତମାନ ସହରୀ ନୁହଁ—ଏହି କୁକୁରଛୁଆଟିଇ ପ୍ରଥମେ ତାଠୁଁ ପ୍ରେମର ପରୀକ୍ଷା ନେବ । ଠିକ୍ ଅଛି !

ଠିକ୍ ଅଛି । କୋଟ୍ ଭିତରେ କୁକୁର ଛୁଆଟିକୁ ଜାକିଜୁକି ସୀତାକାନ୍ତ ମେସ୍‌କୁ ଫେରିଲା । ପାନଦୋକାନରୁ ପାଉଁ ରୁଟିଟିଏ କିଣି ସେ ତାକୁ ଖୁଆଇଲା । ମନେ ମନେ ସ୍ଥିର କରିଦେଲା ଯେ କାଲିଠାରୁ ପାଏ ଦୁଧ ସେ ଏହା ଲାଗି ନାଗୁଆ କରିବ ।

ମେସ୍‌ରେ ପଶି ସେ ତା' ଖଟତଳେ ଗୋଟିଏ ଅଖା ପାରିଦେଲା ଓ ତାକୁ ଆଉ ଗୋଟିଏ ଅଖା ଘୋଡ଼ାଇ ଦେଇ ଶୁଆଇ ପକାଇଲା । କୁକୁରଛୁଆଟି ଖୁଜୁବୁଜୁ ହେଉଥାଏ ଓ କୁଁ କୁଁ ହେଉଥାଏ । ମାତ୍ର ଅଳ୍ପ କେତେକ୍ଷଣ ପରେ ସେ ବେଶ୍ ଚୁପ୍‌ଚାପ୍ ହୋଇଗଲା ।

ସୀତାକାନ୍ତ ତା ବିଛଣା ଉପରେ ଲମ୍ବା ହୋଇ ଶୋଇପଡ଼ିଲା । 'ମେସ୍‌ର ଅନ୍ୟମାନେ ଶୋଇ ଯାଇଛନ୍ତି-ମାଇଚଅା ସର୍ବେଶ୍ୱର ତା'ର

ମାଙ୍କସୀନ୍ଦିଅ ସାତଭଉଣୀ ମାଈଚିଆଙ୍କ ସାଙ୍ଗରେ କୁଆଡ଼େ ବୁଲି ଯାଇଛୁ । ସେ ଫେରିବ ଆଉ ଘର ଭିତରେ । ସୀତାକାନ୍ତ ଆତ୍ମ-ସନ୍ତୋଷରେ କୁହୁଳି ଉଠିଲା । ଠିକ୍ ଅଛି; ଏଥର ସବୁ ଠିକ୍ ହୋଇଯିବ । ଏଇ କୁକୁରଛୁଆଟି ହିଁ ସବୁ ଠିକ୍ କରିଦେବ । ଏଇ କୁକୁରଛୁଆଟି ହିଁ ଏଥର ସବୁରି ଅନ୍ଦର ମହଲକୁ ବାଟ ବତାଇଦେବ— —ବାଟ ବତାଇ ନେଇଯିବ ସବୁରି ଅନ୍ତଃପୁରକୁ । ସୀତାକାନ୍ତ ନିଜ ଅନ୍ତରରେ ଏକ ଉଲ୍ଲସିତ ପୂର୍ଣ୍ଣତା ଓ ପ୍ରଶାନ୍ତି ଅନୁଭବ କଲା ମାତ୍ରେ ତା'ର ମୁଣ୍ଡରୁ ସତେ କି ଖୁବ୍ ଗୋଟାଏ ବୋଝ ଓହ୍ଲାଇଗଲା ! କଟମଟ ହେଉଥିବା କଳଦାନ୍ତଟିକୁ ଉପାଡ଼ିଦେଲା ପରେ ଯେଉଁ ହାଲୁକା ଶାନ୍ତି ଲାଗେ, ସୀତାକାନ୍ତ ତାହା ହିଁ ଅନୁଭବ କଲା । ସେ ଜାଣିନି—ତାକୁ କେତେବେଳେ ନିଦ ହୋଇଗଲା । ଗାଢ଼ ନିଦ—ଗହଳ ମଣ୍ଡିଆ କିଆରି ଭିତରେ ସେ ଶୋଇପଡ଼ିଲା ନିଶ୍ଚିନ୍ତ ନିଦକ ନିଦରେ । ଘୋର ନିଦ ସେ ଅନେକ ଦିନ ଧରି ଶୋଇ ନ ଥିଲା ।

...ତା'ପରଦିନ ସକାଳେ

ସୀତାକାନ୍ତର ନିଦ ଭାଙ୍ଗିଲାବେଳକୁ ମେସ୍‌ରେ କୋଳାହଳ ଆରମ୍ଭ ହୋଇ ଯାଇଥିଲା । ସୂର୍ଯ୍ୟ ବହୁତ ଉପରକୁ ଉଠି ଆସିଥିଲେ । ସୀତାକାନ୍ତ ଖୁବ୍ ହୃଷ୍ଟ ଓ ସୁସ୍ଥ ମନରେ ବିଛଣାରୁ ଉଠି ଆଗ ଖଟତଳକୁ ଚାହିଁଲା । ଅଖାଟି ସେଇମିତି ପଡ଼ିରହିଛି । ପାଖରେ ବଙ୍କାଟଙ୍କା ଆଲୁମିନିଅମ୍ କଟୋରିଟିଏ ଉବୁଡ଼େଇ ହୋଇ ପଡ଼ିଛି । ମାତ୍ର କୁକୁରଛୁଆଟି କାହିଁ ? ସୀତାକାନ୍ତ ବିବ୍ରତ ହୋଇପଡ଼ି ଚାରିଆଡ଼ ଖୋଜିଲା । ତୁ ତୁ କରି 'ଆ ଆ' ଡାକ ମେସ୍ ଭିତରଯାକ ବୁଲିଲା । ସବୁ କୋଠରି ଭିତରକୁ ଯାଇ ଟ୍ରଙ୍କ ସନ୍ଧି, ଖଟତଳ, ରୋଷାଇଘର' ଗାଧୁଆଘର, ପାଇଖାନା-ଘରଆଡ଼ ବୁଲି ଦେଖିଲା । ମାତ୍ର ନାଃ—ସେ କୁଆଡ଼େ ଗଲା ? କୁଆଡ଼େ ଗଲା ସେ କୁକୁର ଛୁଆଟା ? କୁଆଡ଼େ ଗଲା ? ମେସର ଅନ୍ୟାନ୍ୟ ଅନ୍ତେବାସୀ ଯେଝା କାର୍ଯ୍ୟରେ ସେ ଗଲେଣି । ଯେ କେତେ ଜଣ ଥିଲେ, ସେମାନେ ସୀତାକାନ୍ତର ଏ ବ୍ୟାକୁଳ ଅନ୍ବେଷଣ ପ୍ରତି ନେତ୍ରପାତ ବା କର୍ଣ୍ଣପାତ କଲେ ନାହିଁ । କେବଳ ମାଈଚିଆ ପୁଷ୍ପାଶ୍ରୀ ସର୍ବେଶ୍ୱର ଅଣ୍ଟା ହଲାଇ ହଲାଇ ଆନୁନାସିକ ଗେହ୍ଲେଇ ଢଙ୍ଗରେ ହସି ହସି ପଚାରିଲା । ପଚାରିଲା ନାହିଁ ତ ଢ଼ଗ ମେଲିଲା—

କାହାକୁ ଖୋଜୁଚ କଓ ! କଥାରେ କହନ୍ତି ନାହିଁ—"ନଈତଳେ ଗଲପାଣି । ତୁମେ ଯାହାଁ ପାଇଁ ନସରପସର ଆମେ ସେ କଥାଟି ଜାଣି ।" ହଇଓ ବାବୁ ! "ବେଣ୍ଟ ପୋଖରୀର ଅଥଳ ପାଣିରେ ହଜାଇଲି ମଥାମଣି—ମୋ ନାଗର ଘାଣ୍ଟୁଛି ଦଣ୍ଡଆ ପଙ୍କ ହସୁଛି ମୋ ସଜଭୁଣୀ ।"

କାହାକୁ ଖୋଜୁଚ କହୁଚଟି ମୋର ସଜଭୁଣୀର ନାଗର ! କାହାଲାଗି ତମର ଆଖିରେ ନିଦ ନାହିଁ-ପେଟରେ ଭୋକ ନାହିଁ-ମୁହଁ ଥମ ଥମ, ହୃଆ ଦମ ଦମ ମନରେ ସୁଖ ନାହିଁ ?

ସୀତାକାନ୍ତ ସର୍ବେଶ୍ୱରର ପାଖଯାଇ ସର୍ବେଶ୍ୱରଙ୍କ ମାଣ୍ଡଚିଆଁଟାର କୁଞ୍ଚିତ ମୁହଁରେ ଗୋଟାଏ ମୁଥମାର୍ ଚା' ଦାନ୍ତ ଝାଡ଼ିଦେବ ବୋଲି ଭାବିଲା । ମାତ୍ର ପରମୁହୂର୍ତ୍ତରେ ତା' ମନ ଫେର୍ କରୁଣ ହୋଇଗଲା । ସେ କହିଲା—ସରବାନାମ ! ଗୋଟାଏ କୁକୁରଛୁଆ ଦେଖିଛ କି ?

ସର୍ବେଶ୍ୱର ହୋହଲି ହୋହଲି ଆଖିର ଡୋଳାକୁ କଟାକ୍ଷ ଛଟାରେ ଏପଟ ସେପଟ କରି ଦାନ୍ତ ଦେଖାଇ କହିଲା—ମଲି ମୋର ! "ଏଇ କଥାକୁ···ନାହା ପେଲିଦେଲି କଲିକତାକୁ ।" କୁକୁରଛୁଆଟା ପାଇଁ ବୁକୁରେ ତମର ଏତେ ଦରଦ ??···

ସର୍ବେଶ୍ୱର ଫେର ଗୋଟାଏ ଗୀତ ମେଲିବ ବୋଲି ବସିଥିଲା—ମାତ୍ର ସୀତାକାନ୍ତ ସେଠୁ ଚଞ୍ଚଳ ଖସିଯାଇ ନିଜ କୋଠରୀକୁ ପଶିଗଲା । ତା'ପରେ ଗୁମ୍ ହୋଇ ତା' ବିଛଣାରେ ଟିକିଏ ବସିଗଲା । କେଜାଣି କେମିତି ସେ ହସିଉଠିଲା । ଭଲ ହୋଇଛି । ସେ ପଳାଇ ଯାଇଛି । ଗତକାଲି ଆଶ୍ରୟ ସେ ଖୋଜୁଥିଲା । ସେ ତାକୁ ସେତିକି ଦେଇଛି । ମାତ୍ର ସେତିକିର ବନ୍ଧନରେ ସେ ତ ଆଜି ବା ପାଖରେ ଚିରଦିନ ବାନ୍ଧି ହୋଇ ରହନ୍ତା ନାହିଁ ! ଏଣିକି କୁକୁରଛୁଆଟି ଯେମିତି ତା'ଠାରୁ ମୁକ୍ତ, ସେ ମଧ୍ୟ ସେମିତି ତାର ଜଞ୍ଜାଳରୁ ଓ ଦାୟିତ୍ୱରୁ ମୁକ୍ତ । ଗୋଟାଏ ପ୍ରକାର ଉଲ୍ଲାସରେ ସୀତାକାନ୍ତର ଦେହମନ ଭରିଉଠିଲା । ତା'ପରେ ସେ ଦାନ୍ତ ଘଷିବ ବୋଲି ବ୍ରସ୍ ଧରି ଛାତ ଉପରକୁ ଗଲା । ଛାତ ଉପରେ କଅଁଳିଆ ଖରା ଦେହକୁ ବେଶ୍ ଆରାମ ଲାଗୁଥାଏ । ତା'ଉପରୁ ସେ ଏଇ

ସହରଟାକୁ ଗ୍ରାସିଲା । ସହରର କୋଳାହଳ ବଢ଼ି ଉଠିଲାଣି । ପୁଣି ଗାଡ଼ି ମଟର ଯାନବାହନ ଗାଈ ଗୋରୁ, କୁକୁର ଓ ପକ୍ଷୀସମାନେ ହାଉଜାଉ ହେଲେଣି । ସମସ୍ତେ ଦେହକୁ ଦେହ ଘଷିହୋଇ ଚାଲନ୍ତି । ମାଷ ସହିତ ଙ୍କ ସମସ୍ତେ ସମସ୍ତଙ୍କୁ ଆଡ଼େଇ ଦେଇ ଯେ ଯୁଆଡ଼େ ଦଉଡ଼ି ପଳାଉଛନ୍ତି ଅତର୍କ ହୋଇ ! ସତେକି ସମସ୍ତେ ସମସ୍ତଙ୍କଠାରୁ ପ୍ରାଣ ବିକଳରେ ଦଉଡ଼ି ପଳାଉଛନ୍ତି । ସତେ କି ସମସ୍ତେ ସମସ୍ତଙ୍କୁ ଗୋଡ଼ାଉଛନ୍ତି । ସୀତାକାନ୍ତର ହାତରେ ବ୍ରସ-ଚଲା ଆପଣାଛାଏଁ ବନ୍ଦ ହୋଇଗଲା । ସେ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲା । ପୁଣି ଥରେ ଯେପରି ସୀତାକାନ୍ତ ଏକୁଟିଆ ଏକ ବିଷାଦର ସମୁଦ୍ର ଭିତରକୁ ଚାଲିଗଲା ।

ମାତ୍ର ଏ କଣ ? ଏ କଣ ? ସେଇ ପଳାୟନତତ୍ପର ସନ୍ତ୍ରସ୍ତ ଜନଗହଳ, ଗାଈଗହଳ, କୁକୁରଗହଳ ଓ ଯାନବାହନ ଗହଳ ଭିତରେ ରାସ୍ତା କଡ଼େ କଡ଼େ ଅତର୍କ ପ୍ରାଣବିକଳରେ ଗୋଟାଏ କଳାପେଣ୍ଡୁ ଭଳି କଣ ସେଇଟା ଦଉଡ଼ୁଛି ଅମୁହାଁମୁହାଁ ଆଗକୁ ! ଆଉ ତା' ପଛେ ପଛେ କିଏ ସବୁ ସେଇ ବିକଟାକାର ଆକ୍ରମଣତତ୍ପର ହିଂସ୍ର ପ୍ରାଣୀଗୁଡ଼ାକ ? ସେଇ କୁକୁରଛୁଆଟା—ସେଇ ଗତ ବର୍ଷର ଶୀତ ଥରୁ ଥରୁ ଅକ୍ଷିତ ଚେଙ୍ଗଣ୍ଡ କୁକୁରଛୁଆଟା – ଯାହାକୁ ସେ ଗାଁପାଖ ହିମାନନା ହୋଟେଲ ଆଗରୁ ନେଇ ଆସିଥିଲେ—ସେ ଯେ ଏ ବଜାରରେ ସଂପୂର୍ଣ୍ଣ ଅପରିଚିତ ଗୋଟାଏ ଅବାଞ୍ଛିତ ପ୍ରାଣୀ ! ଯାହାକୁ ଦେଖି ସନ୍ଦେହ, ହିଂସା ଓ ଘୃଣାଜର୍ଜର ଏ ସହରର କୁକୁରମାନେ କ୍ରୋଧରେ ଉତ୍ତ୍ୟକ୍ତ ହୋଇ ତାକୁ ଚଢ଼ ଲାଗିଛନ୍ତି । ହୁଏତ ସେମାନେ ତାକୁ ମାରି ଖଣ୍ଡ ଖଣ୍ଡ କରିଦେବେ । ବିଚରା ଦଉଡ଼ୁଛି—ଦଉଡ଼ୁଛି ଅମୁହାଁମୁହାଁ—ପ୍ରାଣ ବିକଳରେ – ସେଇ ଅକ୍ଷିତ ଚେଙ୍ଗଣ୍ଡ କୁକୁରଛୁଆଟି । ତାର ପଛରେ ତା'ର ସଗୋତ୍ର ଏଇସବୁ ହିଂସ୍ର ଶତ୍ରୁମାନେ ।

ସୀତାକାନ୍ତ ଚର୍ଚ୍ଚେଇ ଉଠିଲା । "ଡର ନା—ଡର ନା— ଡର ନାରେ ହତଭାଗ୍ୟ – ହେଇ, ମୁଁ ଚାଲିଲି ତୋ' ପଛେ ପଛେ ।" ସୀତାକାନ୍ତ ସେଇ ଲୁଙ୍ଗି ପିନ୍ଧା ଦେହରେ ପାଟିରେ ବ୍ରସ ଜାକି ଖପାଖପ୍ ସିଢ଼ିଗୁଡ଼ାକ ପାରିହୋଇ ଏକାନିଃଶ୍ୱାସକେ ରାସ୍ତାରେ ପହଞ୍ଚିଲା ।

ତା'ପରେ ସେ ମଧ୍ୟ ଅଣନିଃଶ୍ୱାସୀ ହୋଇ ସେଇ ଆକ୍ରମଣକାରୀ କୁକୁର-ଦଳଙ୍କ ପଛେ ପଛେ ବାତୁଳ ହୋଇ ଦଉଡ଼ିଲା…… । ସେ ଆଜି ତାର ସେହି ପ୍ରାଣପ୍ରିୟ କୁକୁର ଛୁଆଟିକୁ ଏହି ହିଂସ୍ର ଧାବମାନମାନଙ୍କର କବଳରୁ ମୁକ୍ତ କରିବ । ଗୋଟିଏ ପୃଥିବୀର ପ୍ରେମ, କରୁଣା ଆଉ ଦାୟିତ୍ୱ ଆଜି ତା ଉପରେ ଲଦିଦେଲାଣି । …ସୀତାକାନ୍ତ ଅଣନିଃଶ୍ୱାସୀ ହୋଇ ଦଉଡ଼ ଲାଗିଲା ।

ଡରନା ଡରନାରେ ହତଭାଗ୍ୟ ! ହେଇ ମୁଁ ଛୁଟିଛି ତୋର ପଛେ ପଛେ………ଡୋର ପଛେ ପଛେ ……..



# ମୂର୍ଚ୍ଛିତ ବିଷାଦ

କିନ୍ତୁ ଏହାର ଅର୍ଥ ନୁହେଁ ଯେ ନିରଞ୍ଜନ ଏମିତି ଗୋଟାଏ ଆଧ୍ୟାତ୍ମିକ ଦ୍ୱନ୍ଦ୍ୱ ମଧ୍ୟରେ ପଡ଼ିଯାଇଛନ୍ତି କିମ୍ବା ତାଙ୍କ ଭିତରେ ଗ୍ରହଣ ଓ ବର୍ଜନର ଗୋଟାଏ ଭୂମ୍ଳ ସଂଘର୍ଷ ଚାଲିଛି । ସେ କଥା ଆଦୌ ନୁହେଁ; ବରଂ ତାଙ୍କ ଅବସ୍ଥାଟା ଅନେକାଂଶରେ ସେହି ମାଝିଟି ଭଳି — ଯେ କି ଘାଟରୁ ନଈ ସୁଅରେ ଆଗକୁ ଭାସିଯିବାର ଆକୁଳ ତତ୍ପରତାରେ ରାତିସାରା ଡଙ୍ଗାରେ ବସି ଆହୁଲମାରି ଚାଲିଛି – ଅଥଚ ଡଙ୍ଗାଟାକୁ ନଙ୍ଗର ଖୁଣ୍ଟରୁ ଫିଟାଇଦେବାକୁ ଭୁଲି ଯାଇଛି । ଫଳରେ ପ୍ରତିଟି ସକାଳର ଆଲୁଅରେ ସେ ଆବିଷ୍କାର କରିଛି ଯେ ସେ ଯେଉଁଠି ଥିଲା, ସେଇଠି ଅଛି —ରାତିସାରା ବୃଥା ସେହି ସବୁ କ୍ଳାନ୍ତ ଶ୍ରାନ୍ତ ପରିଶ୍ରମ । ଏତିକି ଖାଲି ମାତ୍ର ପ୍ରତିଟି ସକାଳେ ତାକୁ ଗୋଟାଏ ଅସହ୍ୟ ନୈରାଶ୍ୟକର ଜଡ଼ତା ଘାରି ବସେ । ସେ ଆଜି ଡଙ୍ଗାଟିକୁ ଘାଟରୁ ଫିଟାଇ ପାରୁନାହିଁ; ଅଥଚ—ସେହି ସ୍ଥାନରେ ସ୍ଥିରହୋଇ ମଧ୍ୟ ବସିରହିବା ତା' ପକ୍ଷରେ କଷ୍ଟକର ହୋଇଉଠୁଛି ଦିନୁଁ ଦିନ । ଅଧୀର ଆଗ୍ରହରେ ରାତିପରେ ରାତି ତାକୁ ଅପେକ୍ଷା କରିବାକୁ ପଡୁଛି । ଅଥଚ ପ୍ରତିଟି ରାତି ସେହି ନିଷ୍ଫଳ ପରିଶ୍ରମରେ ଘର୍ମାକ୍ତ ଓ ପରିଶ୍ରାନ୍ତ ହୋଇଉଠିଛି ।

ହଁ – ସେହିଭଳି, ଠିକ୍ ସେହିଭଳି ଅବସ୍ଥା ବର୍ତ୍ତମାନ ନିରଞ୍ଜନଙ୍କର । ନିରଞ୍ଜନ ଛାତ ଉପରେ ବୁଲୁବୁଲୁ ପଶ୍ଚିମ ଆକାଶକୁ ଚାହିଁ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲେ । ଗ୍ରାମର ପଶ୍ଚିମପଟେ ଗୋପାଳଜୀଉ ମନ୍ଦିରର ଚୂଡ଼ାଉପରେ ଶୀତ ଅପରାହ୍ଣର ଖରା ପଡ଼ିଛି । ଉତ୍ତରା ପବନରେ ପତାକାଟି ଉଡ଼ୁଛି ଫରଫର ହୋଇ । ଚଢ଼େଇମାନେ ଉଡ଼ି ଯାଉଛନ୍ତି – ନିକଟରୁ ଦୂର୍ ଦିଗ୍‌ବଳୟ ଆଡ଼କୁ । ଚଢ଼େଇମାନେ ଉଡ଼ି ଆସୁଛନ୍ତି ଦୂର ଦିଗ୍‌ବଳୟରୁ ଗାଁଆଡ଼କୁ । ସବୁ ସତେ କି ଅପରିବର୍ତ୍ତମୟ ! ସବୁ ସତେ କି ପୁନରାବୃତ୍ତିର ଅଭିନୟ । କିଛି ଆରମ୍ଭ ହେଉନାହିଁ; କିଛି ଶେଷ ମଧ୍ୟ ହେଉନାହିଁ । କିନ୍ତୁ ଶେଷ ହେବା ଉଚିତ, ଅଥଚ ସବୁ ଶେଷ ସତେକି କିଛି ଗୋଟାଏ ଆରମ୍ଭକୁ ଅପେକ୍ଷାକରି ରହିଛନ୍ତି ଏବଂ ସବୁ

ଆରମ୍ଭ ସତେ କ ଅପେକ୍ଷା କରିଛନ୍ତି, ସବୁ ଶେଷର ଶେଷ ବେଳା ପର୍ଯ୍ୟନ୍ତ ! ଦୁର୍ଦ୍ଦଶା ! ନିରଞ୍ଜନ ସିଗାରେଟ୍‌ଟିଏ ଗାଳିରେ ତେଲ ଗ୍ଲାସ ଉପରେ ଏପଟ ସେପଟ ହେଲେ ।

ଶ୍ରୀମତୀ ଗ୍ରେଟବସ୍ ଖବର ପଠାଇଛନ୍ତି । ଘଣ୍ଟାକଲାଗି ଅନ୍ତତଃ ତାଙ୍କ ପାଖକୁ ଯାଇ ବୁଲିଆସିଲେ ହୁଏ ! ସମସ୍ତ ପ୍ରଚୁର ଅଛି ହାତରେ ବର୍ତ୍ତମାନ । ଲୀଳା ଯାଇଛି ଗୋପାଳଜୀଉଙ୍କ ମନ୍ଦିରକୁ । ଆଜିକାଲି ସକାଳେ ସଞ୍ଜେ ଦୁଇଥର ମନ୍ଦିରକୁ ଯିବାର ଝୁଙ୍କ ଉଠିଲାଣି ଲୀଳାର । ମନ୍ଦିର ବେଢ଼ାଭିତରେ ବଉଳ ଗଛମୂଳେ ପିଣ୍ଡିଉପରେ ବସି ଗରୁଡ଼ସ୍ତମ୍ଭକୁ ଆଗରେ ରଖି ଧୀରସ୍ଥିର ଭାବରେ ବସିଥିବ ଲୀଳା । ଆଖି ବୁଜି ଧ୍ୟାନ କରୁଥିବ । ତା'ର ଧ୍ୟାନ ଦୃଷ୍ଟିରେ ଭାସିଉଠୁଥିବ ଗୋଟିଏ ରହସ୍ୟମୟ ଚିରନ୍ତନ ଛବି । ଜଗତ୍‌ବ୍ୟାପୀ ସମୁଦ୍ର—ଆଖି ପାଉ ନାହିଁ । ସେଇ ଜଗଜଳା ପାଣିଦେହରେ ଯୁଗାନ୍ତର ଅନ୍ଧକାର ମେଞ୍ଚା ମେଞ୍ଚା ହୋଇ ଚକକେଇ ଉଠୁଛନ୍ତି । ଢେଉ ପରେ ଢେଉ ଉଠୁଛନ୍ତି । ଦିଗ୍‌ଦିଗକୁ ଆବୋରି ରହିଛି ଏକ ଘଟଣା ବହୁଳ ନୀରବତା । ସେଇ ଅକୂଳ ସାହାଭରସାହୀନ ପ୍ରଳୟ ସମୁଦ୍ରରେ ଗୋଟିଏ ବିରାଟ ବଟପତ୍ର ଭାସୁଛି କେବଳ । ଆଉ ତା'ପରେ ଶୋଇରହିଛି ଗୋଟିଏ ବଳିଷ୍ଠ ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣର ଶିଶୁ—ଉଲଗ୍ନ କଟିରେ ଉଜ୍ଜ୍ୱଳ ଅଣ୍ଟାସୂତାଟିଏ—ମୁଣ୍ଡର ଝାମ୍ପଲିରକେଶ ଚୂଡ଼ାହୋଇ ବନ୍ଧା ହୋଇଛି । ଆଉ ତା'ଭିତରେ ଖୋସା ହୋଇଛି ମୟୂର ଚନ୍ଦ୍ରିକାଟିଏ । ଗୋଟିଏ ପାଦର ବୁଢ଼ାଆଙ୍ଗୁଠିକ ହାତରେ ଧରି ପାଟିରେ ପୂରାଇଛି ଶିଶୁଟି । ବଟପତ୍ରଟି ଭାସିଯାଉଛି । ଆଉ ତା'ଉପରେ ଶୋଇ ଲୀଳାର ଆଖିକୁ ଚାହିଁ ମୁରୁକି ମୁରୁକି ହସୁଛି ପିଲାଟି—ଆଃ କ ପ୍ରାଣମତାଣିଆ ସେ ଚାହାଣୀ ! ସେ ହସ ! ଲୀଳାର ବାହାର ଆଖିପତା ବୁଜିହୋଇଯାଇଥାଏ ଅଠା ଲାଗିଲା ଭଳି, ମାତ୍ର ଭିତରର ଆଖି ଖୋଲିଯାଇଥାଏ ମାଳତୀଫୁଲଟିଏ ଭଳି—ସେହିଭଳି ଆଶା, ମମତା, ଭରସା ଓ ଆମନ୍ତ୍ରଣର ମେଦୁର ସ୍ନିଗ୍ଧ ।

ଲୀଳା କହେ—ସବୁଥର ଧ୍ୟାନରେ ସେଇ ଗୋଟିଏ ଛବି ତା'ର ଅନ୍ତରକାଶରେ ଭାସିଉଠୁଛି ଆପଣା ଛାଏଁ । ଗୋପାଳଜୀଉଙ୍କ କୃପା ଫେରି ଆସୁଛି ପୁଣି ଥରେ ଏ ଘରକୁ । ଏ ବଂଶ ଉପରେ ପୁଣି ଥରେ ତାଙ୍କର

କରୁଣାର ଧାରା । ବର୍ଷଶେଷାନ୍ମୁଖ ମେଘଟିଏ ହୋଇ ତା'କି ରହିଲାଣି । ବର୍ଷିବ ନିଶ୍ଚେ ।

ନିରଞ୍ଜନ ମନେ ମନେ ହସନ୍ତି । ଲୀଳା ସଙ୍ଗେ ବିବାହ ହେବାର ତିନିବର୍ଷ ବିତିଗଲା । ଲୀଳା ଏ ଯାଏଁ ମା' ହୋଇପାରିନାହିଁ । ହରିବଂଶ, ମହାଭାରତ, ରାମାୟଣ ଓ ଭାଗବତ ବ୍ୟତୀତ ସେ ଆଉ କିଛି ପଢ଼ୁ ନାହିଁ ଏବେ । ତା'ର ଦୃଢ଼ ଧାରଣା – ତାର ସନ୍ତାନ ଏ ପୃଥିବୀର ଆଲୋକ ଦେଖିବା ଆଗରୁ ଦିବ୍ୟାଲୋକର ଚେତନା ନେଇ ଏଠି ଭୂମିଷ୍ଠ ହେବ । ସେ ତାର ସନ୍ତାନର ସମସ୍ତ ବଂଶଗତ ଓ ପୂର୍ବ ଜନ୍ମଗତ ସଂସ୍କାରକୁ ଧ୍ୟାନ ଓ ଆତ୍ମଦ୍ୟୁତି ଶକ୍ତିବଳରେ ରୂପାନ୍ତରିତ କରିଦେବାକୁ ଚାହେଁ । ସେ କେବଳ ତାର ରକ୍ତମାଂସର ଦାୟାଦ ହେବନାହିଁ । ତା'ର ଚେତନାର ମଧ୍ୟ ସେ ହେବ ଉତ୍ତରାଧିକାରୀ—ନେତା । ସେହି ସୁଦିନର ଜ୍ୟୋତିର୍ମୟ ଗର୍ଭଯୋଗକୁ ସେ ଅପେକ୍ଷା କରି ରହିଛି ଆଜଯାଏ ।

ଲୀଳାର ଆଖିରେ ଏକ ଅଦ୍ଭୁତ ସ୍ୱପ୍ନ ଉଜ୍ଜ୍ୱଳି ଉଠେ । ନିରଞ୍ଜନ ତା' ଆଖିର ଏହି ସ୍ୱପ୍ନର ଔଜ୍ଜ୍ୱଲ୍ୟକୁ ଡରିଯାନ୍ତି । ସେ ତାକୁ ଆଡ଼େଇଯିବାକୁ ଚାହାନ୍ତି । ଲୀଳାର ଏ ସ୍ୱପ୍ନ ଯେ କେତେ ଅଲୀକ ଏକଥା ବୁଝିବାକୁ ତାଙ୍କର ଆଉ ବାକି ନାହିଁ; କିନ୍ତୁ ଲୀଳାର ମୁହଁକୁ ଚାହିଁ ତାର ସ୍ୱପ୍ନ ସଙ୍ଗେ ଲଢ଼ାଇ କରି ତାକୁ ଛାରଖାର କରିଦେବା ଲାଗି ନିରଞ୍ଜନଙ୍କ ଅପସାହସ ହୁଏନାହିଁ । ସେ ଏତେ ନିଷ୍ଠୁର ମଧ୍ୟ ନୁହନ୍ତି ।

ତା' ଛଡ଼ା ଲୀଳାର ଆଖି ଦୁଇଟି ଭୟଙ୍କର ଭାବେ ସୁନ୍ଦର ମଧ୍ୟ । ବେଳେବେଳେ ତା' ଭିତରେ ଆକାଶ ପ୍ରତିଫଳିତ ହୋଇଯାଏ । ତାହା ସମ୍ମୋହିତ କରିଦିଏ – ଆନେବାରି ବସେ – ଆଚ୍ଛନ୍ନ କରିଦିଏ । ଏହି ଆଖି ଦୁଇଟିର ସ୍ୱପ୍ନଜାଲରେ ଦିନେ ଅସହାୟ ଭାବେ ନିରଞ୍ଜନ ଧରାପଡ଼ିଥିଲେ । ଆଜଯାଏ ତାଙ୍କର ସେ ଅସହାୟତା କଟିନାହିଁ ।

ଲୀଳାଥିଲା ଦର୍ଶନର ଛାତ୍ରୀ । ସେ ଏମ୍. ଏସ୍ ସି. ପଢ଼ୁଥିଲାବେଳେ ନିରଞ୍ଜନ ତାର ପ୍ରେମରେ ପଡ଼ିଥିଲେ । ନିରଞ୍ଜନ ସେତେବେଳେ ଦର୍ଶନର ତରୁଣ ଅଧ୍ୟାପକ ଭାବେ କଲେଜରେ ଯୋଗ ଦେଇଥିଲେ । ନିରଞ୍ଜନର ବାପା ଆଉ ଲୀଳାର ବାପା ଦୁହେଁ ଥିଲେ ବାଲ୍ୟବନ୍ଧୁ । ଗଭୀର ବନ୍ଧୁତା ଥିଲା

ଦୁହିଁଙ୍କ ମଧ୍ୟରେ । ଦୁଇଜଣଙ୍କ ବାପା ଏ ବିବାହକୁ ସ୍ୱାଗତ କରିଥିଲେ ତାଙ୍କ ଚପଫଳ ରୂପ । ଲୀଳା କେବଳ ଏବେ ଏମିତି ହୋଇନାହିଁ । ମୂଳରୁ ସେ ଥିଲା ସେମିତି – କପଟ ଏକ ସ୍ୱପ୍ନାଚ୍ଛନ୍ନ ହୃଦୟ ତାର ! ଜ୍ଞାନ ତାର ବୈଜ୍ଞାନିକର; ମାତ୍ର ସ୍ୱପ୍ନ ତାର ଦାର୍ଶନିକର କମ୍ପା କବିଟିଏର ।

ଲୀଳା ଜାଣିଥିଲା – ନିରଞ୍ଜନ ମହାପାତ୍ର ତାର ବିଶାଳ ବଂଶାରଣ୍ୟର ସର୍ବଶେଷ ଅଙ୍କୁରଟି । ସବୁ ମହାମହା ବଂଶ ଭଳି ଖେତ-ଗଡପୁରର ମହାପାତ୍ର ବଂଶ ଏଇଠୁ ଲୋପ ହୋଇଯାଇପାରେ । ନିରଞ୍ଜନର ବାପା ହୃଦୟମଣି ମହାପାତ୍ରଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ । ଏ ବିରାଟ ବଂଶର ଆଜି ସବୁ ଶାଖା ପ୍ରଶାଖା, ବର୍ତ୍ତମାନ ଲୁପ୍ତ ପ୍ରାୟ । ଲୀଳା ଏ ବଂଶର ସବୁ ଇତିହାସ ଜାଣିଥିଲା ବିବାହ ପୂର୍ବରୁ । ଦିନେ ରାତିରେ ଅକସ୍ମାତ୍ ବିଛଣାରୁ ଉଠିପଡ଼ିଲା ଲୀଳା । ସତେ କି ଭୂତ ଦେଖି ଚମକି ଉଠିଛି ! ନିରଞ୍ଜନ ଲୀଳାକୁ କୋଳରେ ଧରି ଆଦରରେ କହିଲେ—

କ'ଣ ଲୀଳା ! କ'ଣ ହେଲା ?

ସବୁ ମୁଁ ଶୁଣିଛି !

କଣ ଶୁଣିଛ ? କାହାଠୁଁ ?

ମୋର ଶାଶୁଙ୍କ ଠୁଁ ।

ତୁମ ବଂଶର ପୂର୍ବ ପୁରୁଷମାନେ ବହୁ ପାପ କରିଛନ୍ତି । ଏ ବଂଶ ଆଉ ରହିବ ନାହିଁ । ଏହିଠାରୁ ଲୋପ ପାଇଯିବ ।

ନିରଞ୍ଜନ ଗମ୍ଭୀର ହୋଇଯାଆନ୍ତି । ସେ ଜାଣନ୍ତି—ତାଙ୍କର ବୋଉର ମୁଣ୍ଡ ଭିତରେ ଏହିଭଳି ଏକ ଭୟ ବହୁଦିନୁଁ ବସା ବାନ୍ଧି ରହିଛି । ସେଇ ଯେ ବାବାଜୀ ଜଣଙ୍କ ବାପାଙ୍କ ପକ୍ଷାଘାତ ରୋଗ ଭଲ କରିବାକୁ ଆସିଥିଲେ, ସେଇ—ସେଇ କହିଥିଲେ ବୋଉକୁ କୁଳଦେବତା ଗୋପାଳଜୀଉଙ୍କ ଠାରେ ଆଶ୍ରୟ ନିଅ । ଏ ବଂଶରେ ବହୁପାପ ହୋଇ ଯାଇଛି – ପ୍ରାୟଶ୍ଚିତ୍ତ ନ ହେଲେ ଏ ବଂଶ ରହିବ ନାହିଁ । ଏଇଠୁ ଶେଷ ହୋଇଯିବ । ସେହିଦିନୁଁ ବୋଉ ମୁଣ୍ଡରେ ଜୋକୁଆ ପଶିଛି । ଆଉ ଲୀଳାର ମୁଣ୍ଡଭିତରେ ସେହି ଜୋକୁଆ ଭୟଟିକୁ ସଞ୍ଚରିଦେଇଛି ବୋଉ । ଆଉ ଲୀଳା ସଙ୍କଳ୍ପ କରିଛି, ସେ ସେହି ପାପ ସଂସ୍କାରକୁ ରୂପାନ୍ତରିତ

କରିବ ତାର ତପସ୍ୟାଦ୍ୱାରା । ଏହି ପାପକାଳମାର ଧ୍ୱଂସସ୍ତୂପ ମଧ୍ୟରୁ ସେ ଏହି ବଂଶକୁ ଉଦ୍ଧାର କରିବ । କୁଳଦେବତା ଗୋପାଳଜୀଉଙ୍କ ଆଶୀର୍ବାଦ ରୂପେ ଆସିବ ତାର ଗର୍ଭଦେଇ ଏ କୁଳର ରକ୍ଷାକାରୀ ଜଣେ ମହାପୁରୁଷ । ଭଗୀରଥ ରୂପେ ସେ ରକ୍ଷା କରିବ ଏ କୁଳକୁ । ସେହି ଲକ୍ଷ୍ୟରେ ସେ ଘରକୁ ବୋହୂ ହୋଇ ଆସିଛୁ । ତାର ଜୀବନର ସାଧନା ଏଇଥିଲାଗି । ଗୋପାଳଜୀଉଙ୍କ ଆଶୀର୍ବାଦ ବାଣୀ ଏ ପର୍ଯ୍ୟନ୍ତ ସେ ଶୁଣିନାହିଁ; କିନ୍ତୁ ଶୁଣିବ ନିଶ୍ଚେ — ଖୁବ୍ ନିକଟରେ — ସେଦିନ ପାଖେଇ ଆସୁଛି ।

ଏ ସ୍ୱପ୍ନ ଅଳୀକ ହୋଇପାରେ । ମାତ୍ର ଏ ସ୍ୱପ୍ନ ଭାଙ୍ଗିବାର ନୁହେଁ; ପାପ-ପାପ-ପାପ । ବାପଠାରୁ ମାଆ ପର୍ଯ୍ୟନ୍ତ, ଭଉଣୀଠାରୁ ସ୍ତ୍ରୀ ପର୍ଯ୍ୟନ୍ତ— ସମସ୍ତେ ଯେପରି ସେଇ ଗୋଟିଏ ଶବ୍ଦକୋକୁଆର ଭୟରେ ସନ୍ତ୍ରସ୍ତ ! ପାପ ? କି ପାପ ? କିଏ ପାପ କରିଛି ? କିଏ ସବୁ ପାପ କରିଥିଲେ — ସେ ପାପର ଫଳ ଭୋଗିବେ କେଉଁମାନେ ? କାହିଁକି ? ପାପ କଣ ?

ପ୍ରଚଣ୍ଡ ତର୍କରେ ନିରଞ୍ଜନ ଅସ୍ଥିର ହୋଇପଡ଼ନ୍ତି ।

କାହିଁ ପାପ ? କୋଉଠି ? ଏଇତ ଅପରାହ୍ନର ସ୍ନିଗ୍ଧାଭ ଖରାରେ ଚତୁର୍ଦ୍ଦିଗ ଶୋଭିତ ଓ ସଜୀବ ଦିଶୁଛି । ଏଇତ ନୀଳ ନିର୍ମଳ ଆକାଶରେ ଫର ଫର ଉଡ଼ୁଛି ଗୋପାଳଜୀଉ ମନ୍ଦିରର ବାନା । ଚଢ଼େଇମାନେ ଉଡ଼ନ୍ତୁଛନ୍ତି । ଗଛଲତାର ଶ୍ୟାମଳ ସବୁଜିମାରେ ପୃଥିବୀ ସୁନ୍ଦର । ଉତ୍ତର ପବନରେ ଭାସିଆସୁଛି କାହିଁ କୋଉ ଦୂରଦିଗନ୍ତର ସ୍ୱର୍ଗସ୍ପର୍ଶୀ କେଉଁ ଦେବତାତ୍ମା ତୁଷାରବୃତ ପର୍ବତ ଚୂଡ଼ାର ପବିତ୍ରସ୍ପର୍ଶ ! ଆଉ ସେ ନିଜେ ! ଏକ କ୍ଲାନ୍ତିକର ନିଷ୍ଫଳ ପୁନରାବୃତ୍ତିରେ ଅତିକ୍ତ ବିଷାଦଗ୍ରସ୍ତ । ମାତ୍ର କୌଣସି କଳ୍ପିତ ପାପବୋଧର ତାଡ଼ନାରେ ତ ସେ ଶଙ୍କିତ ନୁହନ୍ତି । ଏ ବଂଶ ଲୋପ ହୋଇଗଲେ ତାଙ୍କର କିଛି ଚିନ୍ତାନାହିଁ । କୌଣସି ବଂଶକୁ ରକ୍ଷାକରିବାର ପ୍ରତିଶ୍ରୁତି ଦେଇ ସେ ଏ ପୃଥିବୀକୁ ଆସି ନାହାନ୍ତି ! ସେ ଆସିଛନ୍ତି···ସେ ଆସିଛନ୍ତି···କାହିଁକି ଆସିଛନ୍ତି ? ସେ ଆସିଛନ୍ତି — ବୁଝିବାକୁ । ହଁ ହଁ ବୁଝିବାକୁ । ସବୁ କିଛି ବୁଝିବାକୁ ! ମଦ୍ୟ ଅଭିମାନୀ ପକ୍ଷାଘାତଗ୍ରସ୍ତ ସନ୍ତ୍ରବାକ୍ ବାପଙ୍କୁ — ପତିଦେବ ଧର୍ଜରିତା ବୋଉକୁ — ଆଜୀବନ କୁମାରୀ ହେବାଲାଗି ଜିଦ୍‌ଖୋର ଖିଅଲି ଭଉଣୀ ମଞ୍ଜୁର ଖିଲିଖିଲି ହସକୁ ଆଉ ପାପର ଉଦ୍ଧସ୍ତୂପତରୁ ଏକ ନୂତନ ପବିତ୍ର ପୁଣ୍ୟଫଳର ସୃଷ୍ଟି

ସ୍ୱପ୍ନରେ ବଞ୍ଚେଇବ, ଅସ୍ପୃହାବଣ୍ଣ ତାଙ୍କର ପତ୍ନୀ ଏବଂ ରହସ୍ୟମୟୀ ଲୀଳାକୁ ନେଇ କରି ସେ ଏ ପୃଥିବୀକୁ ବୁଝିବେ । ବୁଝିବେ ଏହି ଆପାତ ଅର୍ଥହୀନ ଅଥଚ ପରମ ଆକର୍ଷଣୀୟ ଜୀବନଟାକୁ—ଏହାର ସରଳୀକୃତ ଶେଷ ଅର୍ଥ ଟିକକୁ । ସେ ଲୀଳାକୁ ପ୍ରେମ କରନ୍ତି - ବଂଶରକ୍ଷାର ଦାୟିତ୍ୱ ଲାଗି ସେ ତାକୁ ବିବାହ କରିନାହାନ୍ତି; ଅଥଚ ଲୀଳା ବର୍ତ୍ତମାନ ତାର ମହାଅଭିମାନୀ ସଂସ୍କାରକ ପକ୍ଷାଘାତଗ୍ରସ୍ତ ଶ୍ୱଶୁର ଓ ପାପବୋଧ ଜର୍ଜରିତା ଶାଶୁଙ୍କ ବଂଶରକ୍ଷା କରିବାର ଦାୟିତ୍ୱରେ ମୂହ୍ୟମାନ ! ଠିକ୍ ଅଛି; ମାତ୍ର ପାପ କଣ ? ପାପ-ପାପ-ପାପ । ସେ ପାପକୁ ସ୍ୱୀକାର କରନ୍ତି ନାହିଁ । ବଂଶରକ୍ଷା କରିବାରେ ସେ କୌଣସି ମନ୍ତ୍ର କାହାପାଖେ ଦାୟୀ ନୁହନ୍ତି । ସେ ସ୍ୱାଧୀନ—ସଂପୂର୍ଣ୍ଣଭାବେ ସ୍ୱାଧୀନ । ତାଙ୍କର ସଫଳତା ତାଙ୍କର । ତାଙ୍କର ବିଫଳତା ମଧ୍ୟ ତାଙ୍କର । ସେ ପୃଥିବୀକୁ ଭଲପାନ୍ତି, ମାତ୍ର ପୃଥିବୀ ଏଥିଲାଗି ତାଙ୍କଠାରୁ କିଛି ଦାବୀ କରି ନ ପାରେ । କାରଣ ତାଙ୍କର ମଧ୍ୟ ପୃଥିବୀ ଉପରେ କିଛି ଦାବୀ ନାହିଁ । ସେ ଚାହାନ୍ତି - ପୃଥିବୀ ମଧ୍ୟ ତାଙ୍କୁ ଭଲ ପାଉ, ମାତ୍ର କିଛି ଦାବୀ ନ କରୁ, ଦାୟିତ୍ୱ ନ ଦେଉ । ବାପା ମାଆଙ୍କର କୌଣସି ଦାୟିତ୍ୱ ବା ଦାବୀକୁ ସେ ଆଜି ପର୍ଯ୍ୟନ୍ତ ମାନି ନାହାନ୍ତି । ଅଥଚ ଲୀଳା······ପାପ ସମ୍ବନ୍ଧେ ସଚେତନତା ଗୋଟାଏ ଦାବୀ—ଗୋଟାଏ ଭୀଷଣ ଦାୟିତ୍ୱ । ଲୀଳା ସେ ଦାୟିତ୍ୱ ନେଇଛି - ନେଉ । ସେ କିନ୍ତୁ ନେବେ ନି ।

ଲୀଳା ଯାଇଛି ଗୋପାଳଜୀଉଙ୍କ ମନ୍ଦିରକୁ । ବର୍ତ୍ତମାନ ସେ ସେହି ଶିଶୁଚରିତ୍ର ଚିତ୍ରକଳ୍ପଟିକୁ ତାର ଧ୍ୟାନ ଚେତନାରେ ଉପଲବ୍ଧି କରୁଥିବ । ଦିଗନ୍ତବିସ୍ତୃତ ଜଳପାରାବାର ମଝିରେ ଭାସମାନ ଗୋଟିଏ ବଟପତ୍ର ଉପରେ ଶାୟିତ ବାଳଗୋପାଳ । ପୁଣି ଗୋଟାଏ ନୂତନ ସମ୍ଭାବନାର ପ୍ରତୀକ । ଲୀଳା କହେ—ପୁଣି ଏକ ପୁଣ୍ୟ ସମ୍ଭାବନାର ପ୍ରତୀକ । ନିରଞ୍ଜନ ଲୀଳାକୁ କିଛି କହନ୍ତି ନାହିଁ । ମାତ୍ର ଭାବନ୍ତି – ସମ୍ଭାବନା କେବଳ ସମ୍ଭାବନା । ପାପର ନୁହଁ କି ପୁଣ୍ୟର ନୁହଁ । ପାପ ନାହିଁ – ପୁଣ୍ୟ ନାହିଁ । ଅଛି ଖାଲି ବୁଝମଣ —ଅଭିଜ୍ଞତାର ବୁଝାମଣା । ବୁଝିଯାଅ – ଲିଭିଯାଅ । ବୁଝିଯାଅ – ଲିଭିଯାଅ । ବାସ୍ ।

ବୋଉ ମଧ୍ୟ ଘରେ ନାହିଁ । ସେ ମଧ୍ୟ ଯାଇଥିବ ଲୀଳା ସାଙ୍ଗରେ । ଲୀଳାକୁ ଛାଡ଼ି ସେ କଣ ଦଣ୍ଡେ ରହିପାରିବ ? ବୋଉର ଅଗାଧ ଆସ୍ଥା

ଲୀଳା ଉପରେ ।ଲୀଳାର ଅଗାଧ ବିଶ୍ବାସ ବୋଉ ଉପରେ । ବୋଉ ପଛରେ ପାପ ଧାଇଁଛି । ବୋଉ ଧାଇଁଛି ଲୀଳାପଛରେ । ଲୀଳା ଧାଇଁଛି ବାଳଗୋପାଳଙ୍କ ପଛରେ । ଆଜି – ଏ ଘରେ ଧାଇଁ ନାହାନ୍ତି ବାପା— ମହାଅଭିମାନୀ ସଂସାରିବାକ୍ ପକ୍ଷାଘାତଗ୍ରସ୍ତ ବାପା ସୁର୍ଯ୍ୟମଣି ମହାପାତ୍ର ଶ୍ରୀଚନ୍ଦନ । ଆଜି ଧାଇଁ ନାହିଁ – ଆଜୀବନକୁମାରୀ ରହିବାର ଝିଅଙ୍କ ସଂକଳ୍ପରେ ଖିଲଖିଲ ହସୁଥିବା ମଞ୍ଜୁ, କିନ୍ତୁ ସେ କିଏ ? ଧାଉଁଛନ୍ତି ନା ନାହିଁ ? ନା ସେ ସ୍ଥିର ନାହାନ୍ତି କି ଧାଉଁ ନାହାନ୍ତି । ସ୍ତମ୍ଭିତ ଆଦୌ ମାରିଛନ୍ତି । ଡଙ୍ଗା କିନ୍ତୁ ଭିଡ଼ା ହୋଇଛି ଖୁଣ୍ଟିରେ । ଡଙ୍ଗା ଦଉଡ଼ି ଫିଟାଇବାକୁ ଭୁଲିଯାଇଛନ୍ତି । ସ୍ବଚ୍ଛନ୍ଦେ ଅନ୍ଧାର – ଚକଚକ ପାଣି – ଆକାଶରେ ମିଟିମିଟି ତାରା । ସାଇଁ ସାଇଁ ବହମାନ ଜଳସ୍ରୋତ । ସେ ଯୋଉଠି ସେଇଠି । ବୁଝୁଛନ୍ତି— ଜୀବନକୁ ବୁଝୁଛନ୍ତି । ଭଲ ପାଉଛନ୍ତି – ବୁଝୁଛନ୍ତି । ବହେଲେ ହେଉନାହାନ୍ତି – ଖୁସି ହେଉଛନ୍ତି । ବରଂ ହେଉଛନ୍ତି— ରାଗୁ ନାହାନ୍ତି । ଶୋଉଛନ୍ତି—ମାତ୍ର ଦେଖୁଛନ୍ତି । ସବୁ ଦେଖୁଛନ୍ତି – ଶୋଇ ଶୋଇ ନିଦ୍ରାକୁ ଦେଖୁଛନ୍ତି—ସ୍ବପ୍ନକୁ ଦେଖୁଛନ୍ତି । ଜାଗି ଜାଗି ଜାଗରଣକୁ ଦେଖୁଛନ୍ତି । ବସ୍ତୁକୁ ବି ଦେଖୁଛନ୍ତି ।

ଆଜି ଘରେ ବାପା ଶୋଇଛନ୍ତି । ସତୁରିବର୍ଷର ବୃଦ୍ଧ ମହାଅଭିମାନୀ ସଂସାରିବାକ୍ ପକ୍ଷାଘାତଗ୍ରସ୍ତ ବାପା । ତାଙ୍କ ପାଖରେ ବସି ରହିଥିବ ତାଙ୍କର ଏକମାତ୍ର କନ୍ୟା ମଞ୍ଜୁପ୍ରଭା । ଖିଲଖିଲ ଝିଅଙ୍କ ହସରେ ଅଜୀବନ କୁମାରୀ ମଞ୍ଜୁ । ତଳକୁ ମୁହଁ ପୋତି ମନକୁ ମନ ପଢ଼ି ଯାଉଥିବ କଣ ଖଣ୍ଡିଏ ନୂଆ ଉପନ୍ୟାସ । ଇଂରାଜୀ, ହିନ୍ଦୀ, ବଙ୍ଗଳା, ଓଡ଼ିଆ ଯୋଉ ଭାଷାରେ ହେଉ ।

ବାପା ହୁଏତ ଆଖି ବୁଜି ଶୋଇଯାଇଥିବେ । ନଚେତ୍ ଉପରକୁ ଅକ୍ଷି ମେଲିକରି ଛାତକୁ ଚାହିଁ ରହିଥିବେ । କିଛି କାହାକୁ କଥା କହୁ ନ ଥିବେ ! ମୂର୍ତ୍ତିର ଅକ୍ଷି ଭଳି ଅକ୍ଷି ଦୁଇଟା ତାଙ୍କର ! ଚାହିଁଲେ ଭିତରର ଭାବ ବୁଝି ହୁଏନା; କିନ୍ତୁ ସଂଭ୍ରମ ଅସେ । ବାପାଙ୍କୁ ପକ୍ଷାଘାତ ହେଲଣି ତିନି ବର୍ଷ ଧରି । ସେଇ ଗୋଟିଏ ଜାଗାରେ ସେ ସେତେବେଳୁଁ ପଡ଼ିରହିଛନ୍ତି । ଔଷଧ, ଇଞ୍ଜେକ୍‌ସନ୍ ଓ ପଥ୍ୟ, ସେବାର ଭାର ସଂପୂର୍ଣ୍ଣଭାବେ ମଞ୍ଜୁର । ଏମ୍. ଏ. ପାସକରି ମଞ୍ଜୁପ୍ରଭା ତିନି ବର୍ଷଧରି ତାଙ୍କ ପାଖେ ସେମିତି ବସି

ହେଉଛି । ଘଣ୍ଟା ଘଣ୍ଟାଧରି । ଖଣ୍ଡକୁ ଖଣ୍ଡ ଉପନ୍ୟାସ ପଢ଼ି ସାରୁଛି, ବସିଛି, ବାପାଙ୍କର ସେବା କରୁଛି, ବାପା ବଞ୍ଚିଥିବାଯାଏ—ମଞ୍ଜୁ ମନା କରିଛି—, ତାକୁ କେହି ବାହାହେବା କଥା କହିବେ ନାହିଁ ।

ଡାଃଅମାହାନ୍ତି ବୁନିଆଦି ଘର । ପକ୍କା କାନ୍ଥ । ଖପର ଛପର । କାନ୍ଥରୁ ଠାଏ ଠାଏ ଚୂନ ସୁର୍କି ଖୁଲିଲାଣି । କେତେ ଜାଗାରେ କାନ୍ଥମାନ ଭୁଷୁଡ଼ି ଗଲାଣି । ଜାଗା ଜାଗାଏ ଛପର ଉଡ଼ିଯାଇଛି । କେଉଁ ଘର ବାରଣ୍ଡାରୁ ପଂକ୍ତିଏ ଦେଉଳିଆ ପାଗ ଖମ୍ବ ଚୁରି ହେଲାଣି । ବାପାଙ୍କ ଘରପାଖ ବାରଣ୍ଡାପାକ ମଳିନ ଆଲୁଅରେ ଅସଂଖ୍ୟ ଚେମେଣି ଉଡ଼ାଉଡ଼ି ଲଗାଇଛନ୍ତି । ଏପଟ ବେଲ ଗଛମୂଳ ଘରପାଖେ ଭରତିଆ ଚଢ଼େଇ-ମାନେ ଉଡ଼ୁ ଛନ୍ତି । ବାପାଙ୍କ ସାନ ଭାଇ ହିତ୍ୟସିଂହ ମହାପାତ୍ର ଶ୍ରୀ ବଦନ, ଯେ କି ମାତ୍ର ବତିଶିବର୍ଷ ବୟସରେ ଅକସ୍ମାତ ମରିଗଲେ—ସେ ସେହି ବେଲଗଛ ପାଖ ଘରମାନଙ୍କରେ ବହୁ ପଶୁ ପକ୍ଷୀ ପୋଷିଥିଲେ । ଦୁଇଟା ବାଘଛୁଆ—ଦୁଇଟା ହରିଣ—ମୟୂର ମୟୂରୀ—ରାଜହଂସ ହଂସୀ—ହରେକ ରକମର ପାରାବତ ହରେକ୍ ରକମର ବୁଲ୍‌ବୁଲ୍—ଶାରୀ—ଶୁଆ, କାବୁଲି ବିଲେଇ—ଆଉ ଦୁଇ ତିନି ଜାତିର କୁକୁର । ପଶୁ ଓ ପକ୍ଷୀଙ୍କ ସେବା ଯତ୍ନ କରିବାଲାଗି ଜଣେ ପରିଚାରକ ଓ ପରିଚାରିକା ମଧ୍ୟ ନିଯୁକ୍ତ ହୋଇଥିଲେ । ସେପଟ ଘରଗୁଡ଼ିକ ଥିଲା ବସ୍ତୁତଃ ଏକ ଚିଡ଼ିଆଖାନା—ଏ ଗାଁର ଆଉ ଦଶ ଖଣ୍ଡ ଗାଁ'ବାଲାଙ୍କର ଗୋଟାଏ ମିନି ଚିଡ଼ିଆଖାନା । ହିତ୍ୟସିଂହ ଭାଦା ବିବାହ କରି ନ ଥିଲେ । ଏଇ ପଶୁ-ପକ୍ଷୀଙ୍କୁ ନେଇ ମାତିବା ଥିଲା ତାଙ୍କର ଏକ ବିଳାସ । ହିତ୍ୟସିଂହଙ୍କ ଚେହେରା ଥିଲା ଅତି ସୁନ୍ଦର ଆକାଶର ପୂର୍ଣ୍ଣଚନ୍ଦ୍ର ଭଳି । ସେହିଭଳି ସୁନ୍ଦର—ସେହିଭଳି ସ୍ନିଗ୍ଧ—ଶୀତଳ—ସୁକୁମାର । ଆଃ—ବହୁକାଳୁ ମୃତ ଦାଦାଙ୍କ ଲାଗି ନିରଞ୍ଜନଙ୍କ ହୃଦୟ ତରଙ୍ଗିତ ହୋଇଉଠିଥିଲା । ଅଥଚ ଛି-ଛି-ବୋଲି କହେ ତୋ' ଦାଦା ଚନ୍ଦ୍ର ଭଳି ସୁନ୍ଦର ସିନା—ହେଲେ ଚନ୍ଦ୍ରର କଳଙ୍କ ଭଳି ତା'ଭିତରେ ବହୁ ପାପ ଗଦା ହୋଇ ଯାଇଥିଲା । ସେହି ପାପରେ କ୍ଷୟ ହେଉ ହେଉ ସେ ଦିନେ ଅକାଳେ ଅସ୍ତ ହୋଇଗଲାରେ ବାପ !

ଦୁଷ୍ଟଚେଷ୍ଟା ! ବୋଉ ଉପରେ ଫେର୍ ମନ ବିରକ୍ତ ହୋଇ-ଉଠିଲା ନିରଞ୍ଜନର ! ପାପ-ପାପ-ପାପ ! ବୋଉ ସତରେ ଗୋଟାଏ ପାପ ପୃଥିବୀର ମାଲିକା !

ଶୀତ ଦିନର ଏଇ ସ୍ୱର୍ଣ୍ଣାଭ କୋମଳ ଅପରାହ୍ଣ କ୍ରମେ ସନ୍ଧ୍ୟା ଆଡ଼କୁ ମୁହାଁଇ ଯାଉଛି । ଶୀତ ଋତୁର ସନ୍ଧ୍ୟା ସାମାନ୍ୟ କୁହୁଡ଼ିରେ ରହସ୍ୟମୟ । ଭଙ୍ଗା ଘରର ଗୁଜ କଡ଼ରେ; ତଥାପି ପାରାମାନେ ଘୁମୁରୁଛନ୍ତି । ଚେମଣିଆମାନେ ବେଶି ବେଶି ଉଡ଼ିବା ଆରମ୍ଭ କଲେଣି । ଶ୍ରୀମନ୍ତ ଶ୍ରେଷ୍ଠବସୁ ଖବର ପଠାଇଲେ । ଘଣ୍ଟାକ ପରେ ହେଲେ ଆସି ଦେଖା କରଯାଅ । ନିରଞ୍ଜନ ଭାବିଲେ—ଯିବେ କି ନାହିଁ । ଶ୍ରୀମନ୍ତ ଶ୍ରେଷ୍ଠବସୁଙ୍କ ଲୋକଟି କହିଯାଇଛି – ମା'ଙ୍କର ଜରୁରୀ କାମ ଅଛି—ନିଶ୍ଚୟ ଆସିବେ ।

ନିରଞ୍ଜନଙ୍କୁ ଡର ଲାଗିଲା ସାମାନ୍ୟ । ଜରୁରୀ କାମ ? ଶ୍ରୀମନ୍ତ ଶ୍ରେଷ୍ଠବସୁଙ୍କର ଜରୁରୀ କାମ କଣ ତାହା ଜାଣିବାରେ ଆଜଯାଏ ଆଉ ବାକି ଅଛି ତାଙ୍କର ? ତାଙ୍କର ଜରୁରୀ କାମ ବାହାରର ନିସ୍ପୃହମରେ ନ ଥାଏ । ମନର ପ୍ରତିଟି ଆବେଗକୁ ଅସମ୍ଭବ ଧୃଷ୍ଟତା ଦେଇ ସ୍ୱୀକାର କରନ୍ତି ଶ୍ରୀମନ୍ତ ଶ୍ରେଷ୍ଠବସୁ । ପ୍ରାଣର ପ୍ରତିଟି ତରଙ୍ଗକୁ ସେ ଟାଣି ନିଅନ୍ତି ନିଜର ହୃଦୟ ଭିତରକୁ । ପ୍ରତିଟି ଆବେଗତପ୍ତ ମୁହୂର୍ତ୍ତ ତାଙ୍କ ପକ୍ଷରେ ଯୁଗଯୁଗ ଭଳି ଗୁରୁତ୍ୱର ମୂଲ୍ୟରେ ମୂଲ୍ୟବାନ । ଶ୍ରୀମନ୍ତ ଶ୍ରେଷ୍ଠବସୁ ଭବ-ଜଗତର ଗୋଟିଏ ଉଦ୍‌ବେଳିତ ମାଧୁର୍ଯ୍ୟ । ଏକ ବିନଷ୍ଟପ୍ରାପ୍ତ ବିପର୍ଯ୍ୟସ୍ତ ପ୍ରାଚୀନ ସାମନ୍ତ ପରିବାରର ସବା ସାନବୋହୂ ଶ୍ରୀମନ୍ତ ଶ୍ରେଷ୍ଠବସୁ । ସ୍ୱାମୀ ଆମେରିକାରେ, ଆଜକୁ ଛଅବର୍ଷ ହୋଇଗଲା । ଉଚ୍ଚ ଶିକ୍ଷାଲାଗି ଯାଇଥିଲେ । ଆଉ ଫେରି ନାହାନ୍ତି । ଫେରିବେ ବି ନାହିଁ । ଶ୍ରୀମନ୍ତ ଶ୍ରେଷ୍ଠବସୁ ସହରରୁ ଆସି ରହିଛନ୍ତି ଏହି ଗ୍ରାମରେ । ଏଠି ତାଙ୍କର ଜମି ଅଛି ବଗିଚା ଅଛି । ଚାକର ହଳିଆ ଅଛନ୍ତି । ଅଛନ୍ତି ଜଣେ ମ୍ୟାନେଜର ସବୁ କଥା ବୁଝିବାଲାଗି । ଶ୍ରୀମନ୍ତ ଶ୍ରେଷ୍ଠବସୁ ନିଜେ ଜଣେ ଗାୟିକା ଓ କବି— । ରବୀନ୍ଦ୍ର ସଙ୍ଗୀତ, ମୀରା, କବିର ଓ ତୁଳସୀ ଦାସଙ୍କ ଭଜନ ଗାଇବାରେ ସୁନିପୁଣା । ଘରେ ବହୁତ ଭାଷାର ଅସଂଖ୍ୟ କବିତା ଆଉ ସଙ୍ଗୀତ ବହି । ବହୁତ ବାଦ୍ୟଯନ୍ତ୍ର । ଶ୍ରୀମନ୍ତ ଶ୍ରେଷ୍ଠବସୁ ନିଜେ ମଧ୍ୟ ସରୋଦ ବଜାନ୍ତି ଚମତ୍କାର । ଭିନ୍ନ ଜଗତର ନାରୀ ଶ୍ରୀମନ୍ତ ଶ୍ରେଷ୍ଠବସୁ ।

ସିନ୍ଦୂର ଲଗାନ୍ତ—ମାତ୍ର ସବୁବେଳେ ପିନ୍ଧନ୍ତ ଧଳାଶାଢ଼ୀ—ଧଳାବ୍ଲାଉଜ । ମଥାର ସୁନ୍ଦର ନାତିଘନ କେଶଗୁଚ୍ଛ ସର୍ବଦା ଆଲୁଳାୟିତ—ମାତ୍ର ସୁସଜ୍ଜିତ ଓ ପରିଚ୍ଛନ୍ନ । ତାଙ୍କର ଚେହେରାରେ ସନ୍ନ୍ୟାସିନୀର କଷ୍ଟକୃତ ପବିତ୍ର ବୈରାଗ୍ୟ ହୁଏ ତ ଅଛି—ମାତ୍ର ଭାବ ଓ ସୁରଜଗତର ଏକ ଅଲୌକିକ ରହସ୍ୟମୟ ଚମତ୍କାରତା ତାଙ୍କ ମୁହଁ, ଆଖି, ଓଠ ଓ ହାତର ଆଙ୍ଗୁଳି ଗୁଡ଼ିକରେ ଫୁଟିଉଠେ । ଆକର୍ଷଣ କରେ । ଶ୍ରୀମତୀ ଶ୍ରେଷ୍ଠବସୁ ସତେ କି କେଉଁ ଏକ କଳ୍ପଲୋକବାସିନୀ ଭାବରୂପିଣୀ ଦେବୀ । ତାଙ୍କର ଦୃଷ୍ଟି ସତେ କି ସେଇ ସୁଦୂର ହିଗ୍‌ବନପୁର ଆରପାରରେ କେଉଁ ଏକ ରସଲୋକରେ ଖେଳି ବୁଲୁଥାଏ; ମାତ୍ର ନିରଞ୍ଜନଙ୍କୁ ଆଗରେ ଦେଖିଲେ—ସେଇ ଭାବାଚ୍ଛନ୍ନ ଦୂରପାଥୀ ଆଖି ଦୁଇଟି ପୁଣି ଫେରିଆସନ୍ତି, ସତେ କି ନିରଞ୍ଜନ ହିଁ ତାଙ୍କର ସବୁ ସୁର ଓ ଭାବଜଗତର ମୂର୍ତ୍ତିମାନ ବିଗ୍ରହ !

ମାତ୍ର ଶ୍ରୀମତୀ ଶ୍ରେଷ୍ଠବସୁ ପ୍ରେମରେ ପଡ଼ନ୍ତି ନାହିଁ । ସେ ପ୍ରେମକୁ ସ୍ୱୀକାର କରନ୍ତି । ପ୍ରେମର ଦାବୀକୁ ମଧ୍ୟ ସ୍ୱୀକାର କରନ୍ତି, ମାତ୍ର ପ୍ରେମରେ ପଡ଼ନ୍ତି ନାହିଁ, କାରଣ ସେ କଥା କହନ୍ତି ନାହିଁ—ଗୀତ ବୋଲନ୍ତି । ତାଙ୍କର ବାସନାଗୁଡ଼ିକ ଦୌଡ଼ନ୍ତି ନାହିଁ—ନୃତ୍ୟ କରନ୍ତି । ତାଙ୍କର ଅଙ୍ଗପ୍ରତ୍ୟଙ୍ଗର ପ୍ରତିଟି ଇଚ୍ଛା ସଙ୍ଗୀତର ତାଳ ଭିତରେ ଅନୁରଣିତ ହୋଇଉଠେ । ସୁର୍-ସ୍ୱର୍-ଧ୍ୱନି-ମୂର୍ଚ୍ଛନା-ଶ୍ରୀମତୀ ଶ୍ରେଷ୍ଠବସୁ ନିଜେ ହୋଇଉଠନ୍ତି ଏକ ଜୀବନ୍ତ ମୂର୍ଚ୍ଛନାର ପ୍ରାଣବନ୍ତ ବିଗ୍ରହ । ସେ ବେଳେ ବେଳେ କହନ୍ତି—ସବୁର ପଛପଟେ ରହିଛି ତାର ସୁର୍‌ଟି । ମୁଁ ବୋଧେ ସେଇ ସୁର୍‌ଟିଏ ନିରଞ୍ଜନ ବାବୁ !

ନିରଞ୍ଜନ କିଛି ଉତ୍ତର ଦିଏନା । ମୁଗ୍‌ଧ ହୁଏ । ସ୍ୱୀକାର କରେ । ନୀରବ ହସ ହସି ଶ୍ରୀମତୀ ଶ୍ରେଷ୍ଠବସୁଙ୍କୁ ଦେଖେ—ଶୁଣେ—ସ୍ପର୍ଶ କରେ । ସେ ଜାଣେ ସେ ଗୋଟିଏ ସୁରକୁ ସ୍ପର୍ଶ କରୁଛି !

ମାତ୍ର ବୋଉର ମନରେ ସନ୍ଦେହ ରହିଯାଏ । ବୋଉର ଆଖିରେ ପାପର ଆଶଙ୍କା ଫୁଟିଉଠେ । ଏତେ ଯିବାଆସିବା ଏତେ ମିଳାମିଶା ଭଲ ନୁହେଁ ନିରଞ୍ଜନ । ଶ୍ରେଷ୍ଠବସୁ ବଂଶ ମଧ୍ୟ ଭୂମ ବଂଶ ଭଳି ବହୁ ପାପରୁ ଧ୍ୱଂସଆଡ଼କୁ ମୁହାଁଇ ଯାଉଛି । ପୁରୁଷ ପୁରୁଷଧରି ଭୂମ ବଂଶରୁ ତାଙ୍କ ବଂଶଯାଏ ପାପ... ଗୋଟିଏ ଶ୍ରେଷ୍ଠ ନର୍ଦ୍ଦମାର ଝରଣା ଅନ୍ଧାରେ ଅନ୍ଧାରେ ବହିଚାଲିଥାଏ—ସମସ୍ତଙ୍କ ଅଜାଣତରେ—ମୁଁ ଶୁଣିଛି, ମୋ ଶାଶୁଙ୍କ ମୁହଁରୁ ।

ଝଉକ୍ଲଲଗେ ନିରଞ୍ଜନଙ୍କୁ । ଦୁର୍ଦ୍ଦୈବ ! ଫେର୍ ସେଇ ପାପର କୋଳକୁ । ଯଦି ଛୋଟରାୟ ବଂଶ ପୁରୁଷ ପୁରୁଷଧରି ପାପ ଗଦାରେ ପରିଣତ ହୋଇଥାଏ—ତେବେ ତାହା ଶ୍ରୀମନ୍ତ ଛୋଟରାୟଙ୍କ ପବିତ୍ର ହୃଦୟ ଆବେଗ ଓ କଣ୍ଠନିଃସୃତ ଆଲୌକିକ ସ୍ୱର୍ ମୂର୍ଚ୍ଛନାରେ ରୂପାନ୍ତରିତ ହୋଇଯାଇଛି । ମଣିଷର କାମ କ୍ରୋଧ ଲୋଭ ମୋହ ମାତ୍ସର୍ଯ୍ୟାଦି ପ୍ରବୃତ୍ତିଗୁଡ଼ିକ ସ୍ୱର୍ଦ୍ଧନରେ ରୂପାନ୍ତରିତ ହୋଇଯାଆନ୍ତି କି ? ସ୍ଥୂଳଭାବ-ମାନେ ପରିଣତ ହୋଇଉଠନ୍ତି ରସରେ । ଆଉ ରସ ପରିଣତ ହେଉ ହେଉ ସୂକ୍ଷ୍ମ ହେଉ ହେଉ ସ୍ୱର ପାଲଟିଯାଏ ।

ନିରଞ୍ଜନ ବୁଝନ୍ତି – ଉପଲବ୍ଧି କରନ୍ତି—ତାଙ୍କ ହୃଦୟର ସମସ୍ତ ସ୍ଥୂଳଭାବାବେଗ ଶ୍ରୀମନ୍ତ ଛୋଟରାୟଙ୍କ ପାଖରେ କିପରି ସୂକ୍ଷ୍ମ ସ୍ୱର ପାଲଟିଯାଆନ୍ତି । ଫଳରେ ତାକୁ ଭାରି ହାଲୁକା ଲାଗେ । ପବିତ୍ର ଲାଗେ । ସୁବାସିତ ଲାଗେ । ଶ୍ରୀମନ୍ତ ଛୋଟରାୟ କଥାକୁ ସ୍ୱରରେ ପରିଣତ କରିଦିଅନ୍ତି । କାମକୁ ରୂପାନ୍ତରିତ କରିଦିଅନ୍ତି ନୃତ୍ୟରେ ଛନ୍ଦରେ ।

ଅବଶ୍ୟ ଲୀଳା ଏକଥା ବୁଝିଛି । ଲୀଳା ସନ୍ଦେହ କରେନାହିଁ; ପ୍ରଶ୍ନ କରେନାହିଁ । ଶ୍ରୀମନ୍ତ ଛୋଟରାୟଙ୍କୁ ସେ ସମ୍ମାନ କରେ; ମାତ୍ର ସେ କହେ ଛୋଟରାୟ ବଂଶର ପୁରୁଷ ପୁରୁଷଧରି ପାପରାଶିକୁ ରୂପାନ୍ତରିତ କରିବାର ସ୍ୱର୍ ସାଧନାରେ ରତ ଶ୍ରୀମନ୍ତ ଛୋଟରାୟ । ଶ୍ରୀମନ୍ତ ଛୋଟ-ରାୟ ସେ ବଂଶର ପାବନଲାଗି ବିଧି ପ୍ରେରିତା-ବିଧାତାର କରୁଣା ସ୍ୱରୂପା । ଯେପରି ମୁଁ ସେହି ଏକା ଉଦ୍ଦେଶ୍ୟ ସାଧନଲାଗି ଏ ଘରକୁ ବୋହୂ ହୋଇ ଆସିଛି, ମାତ୍ର ମୋ ଧାରା ଭିନ୍ନ । ମୋ ରାସ୍ତା ଭିନ୍ନ ।

ସାନ ଭଉଣୀ ମଞ୍ଜୁ କିଛି କହେନାହିଁ । ଶ୍ରୀମନ୍ତ ଛୋଟରାୟଙ୍କ ସଙ୍ଗେ ନିରଞ୍ଜନଙ୍କୁ ଦେଖିଲେ ସେ କେବଳ ହସେ । ଖିଲ ଖିଲ ହୋଇ ଖିଆଲି ଢଙ୍ଗରେ ସେ ହସେ । ସେମିତି ସେ ହସେ ସବୁ ଘଟଣାରେ । ଉପନ୍ୟାସ ଜଗତରେ ଘୂରିଲାବେଳେ ସେ ଥାଏ ଖୁବ୍ ଗମ୍ଭୀର; ମାତ୍ର ବାହାର ଦୁନିଆର ସାମାନ୍ୟତମ ବା ଗୁରୁତମ ଘଟଣାଟିଏ ଦେଖିଲା ମାତ୍ରେ ସେ ହସେ—ଖିଲ ଖିଲ ହୋଇ ହସେ । ସତେ କି ଉପନ୍ୟାସରେ ଲିଖିତ ଚରିତ୍ର ଓ ଘଟଣାଗୁଡ଼ିକ ତା' ନିକଟରେ ଏକମାତ୍ର ସତ୍ୟ, ବାସ୍ତବ ଓ

ଗୁରୁତ୍ୱପୂର୍ଣ୍ଣ । ମାତ୍ର ବାହ୍ୟଜଗତରେ ଯେତକ ସତ ଘଟୁଥିବା ଘଟଣାମାନ ଜମା ବାସ୍ତବ ନୁହନ୍ତି, ବାସ୍ତବତାର ପିଲକଆ ଅନୁକରଣ ମାତ୍ର । ଗ୍ରେଟ ପିନ୍ନମାନଙ୍କର ବୋଦୁ ବୋଦୁକା ଖେଳ ଭଳି ତୁଚ୍ଛ ଘଟଣାଗୁଡ଼ି ଅଳି ବା କଳକଳ ଭଳି । ବାସ୍ତବତା ଗୋଟିଏ କୌତୁକକର ଦୃଶ୍ୟ ମଞ୍ଜୁ ଆଖିରେ । ତେଣୁ ସେ ହସେ—ଖିଲ ଖିଲ ହୋଇ ହସେ । କିଛି ମନ୍ତବ୍ୟ କରେନାହିଁ । ହସେ । ଖୁବ୍ ବଡ଼ ଅଭିଜ୍ଞ ପ୍ରେରଣୀ ପୁରୁଷ ଓ ନାରୀମାନେ ସିନେମାରେ ଅପରିଣତ ଯୁବକ ଯୁବତୀମାନଙ୍କ ପ୍ରେମ ଦୃଶ୍ୟରେ ଗୋଡ଼ଆଗୋଡ଼, ଉଗାଉଗି, ମାନ ଅଭିମାନ ଓ ପ୍ୟାର ମହଦକୁ ତା'ର ଗଢେ ଗୀତ ଶୁଣି ହସିଲା ଭଳି—ମଞ୍ଜୁ ହସେ ।

ଅଥଚ ବୋଝ କହେ—ମଞ୍ଜୁର ଏ ହସ ଅସଲ ଗୋଟେ ପାଗଳାମି । ତୁମ ବଂଶର ପାପର ପରିଣାମ ମଧ୍ୟ ମଞ୍ଜୁର ଏଇ ପାଗଳାମି ।

ଦୁର୍ଭେଦ୍ୟ !

ମଞ୍ଜୁର ଏଇ ଖିଲଖିଲ ହସ କେବେ ଭଲା ଗୋଟାଏ ପ୍ରାଚୀନ ପାପବୃକ୍ଷର ଫୁଲ ହୋଇପାରେ ? ମଞ୍ଜୁ ହସେ । ନୀଳଆକାଶରେ ଉଡ଼ି ବୁଲୁଥିବା ଚଢ଼େଇର ଗୀତ ଭଳି ତା' ହସ ଶୁଭେ । ଶରତଋତୁର ଘନସବୁଜ ବୃକ୍ଷଲତାରୁ ଚଢ଼େଇର କାକଳି ଭଳି ଶୁଭେ ତାର ଖିଲଖିଲ ହସ । ମଞ୍ଜୁ ବୋଧେ ଏ ବଂଶର ସର୍ବଶ୍ରେଷ୍ଠ ଆଶୀର୍ବାଦ । ସର୍ବଶ୍ରେଷ୍ଠ ଫୁଲ – ସର୍ବଶ୍ରେଷ୍ଠ ସଙ୍ଗୀତ— । ତାର କାହାପ୍ରତି ଅଭିଯୋଗ ନାହିଁ—କାହା ପ୍ରତି ଅନୁରାଗ ନାହିଁ । ସେ ସବୁ କଥାକୁ ଆପଣା ଭିତରକୁ ନଏ । ତା'ପରେ ତାର ଖିଲଖିଲ ହସ ଭିତରେ ସେସବୁ ରୂପାନ୍ତରିତ ହୋଇ ବାହାରେ ଫୁଟିଉଠନ୍ତି—ଫୁଲର ରଙ୍ଗ ଭିତରେ ଚଢ଼େଇର କାକଳି ଭିତରେ । ନିରଞ୍ଜନ ଖୁବ୍ ଭଲ ପାଏ ମଞ୍ଜୁକୁ । ଏ ପୃଥିବୀ ପାଇଁ ଗୋଟାଏ ମଞ୍ଜୁ ଯଥେଷ୍ଟ ନୁହେଁ ଅବଶ୍ୟ । ମାତ୍ର ଏ ପୃଥିବୀ ଅଧିକ ମଞ୍ଜୁ ପ୍ରସବ କରିବାକୁ ଅସମର୍ଥା । ଏଇ ପାପବୋଧନପୀଡ଼ିତା ପୃଥିବୀ ଯଦି ଥରେ ମାତ୍ର ମଞ୍ଜୁର ହସ ଦେଖନ୍ତା – ଶୁଣନ୍ତା ତେବେ ତା' କଳିଜା ଥଣ୍ଡା ହୋଇପାରନ୍ତା, ମାତ୍ର ପୃଥିବୀ ଜନ୍ମ କରିଦେଇ ଆଜି ତାକୁ ଲୁହୁ ନାହିଁ ! ଦେଖୁ ନାହିଁ ! ଭାବୁଛି ବାସୁଣୀଟାଏ ଜନ୍ମ ହୋଇଛି ତା' ଉଦରରୁ । ଯୁଗ ଯୁଗର ସଞ୍ଚିତ ପାପର ଫଳ ଏଇ ବାସୁଣୀଟା । ଖାଲି ହସୁଛି—ଖିଲଖିଲ ହୋଇ ହସୁଛି- କାନ୍ଦୁନି-ରାଗୁନି-ଖାଲି ହସୁଛି ।

ବୋଉ ବେଳେବେଳେ ଲୀଳାକୁ କହେ—ନିରଞ୍ଜନକୁ ବି ମୋର ବିଶ୍ୱାସ ନାହିଁ ବୋହୂମା ! ନିରଞ୍ଜନଟା ଆତ୍ମବାଦୀଟାଏ । ତାର କୋଉ କଥାକୁ ଚିନ୍ତା ନାହିଁ । ସେ କହେ ତାର ଏ ବଂଶ ପ୍ରତି, ପୃଥିବୀ ପ୍ରତି କୁଆଡ଼େ କିଛି ଦାୟିତ୍ୱ ନାହିଁ । କୁଆଡ଼େ ସେ ସ୍ୱାଧୀନ । କହିଲୁ ଭଲ ବୋହୂମା ! ସେ ଏ ପାପ ଆବର୍ତ୍ତଭିତରୁ ଏମିତି ସହଜରେ ଖସିଯାଇପାରିବ ? ଗଣ୍ଡା ଗଣ୍ଡା ନରହତ୍ୟା ଗୋରୁ, ବ୍ରାହ୍ମଣ, ଶିଶୁ, ନାରୀ କାହାକୁ ଏଠି ମରାହୋଇ ନାହିଁ କହ ? କେତେ ଭ୍ରୂଣ ହତ୍ୟା ଏ ବଂଶରେ ନ ହୋଇଛି କହ ? କେତେ ଜାଲଅନ୍ତ, କେତେ ମିଥ୍ୟାଗୁରୁ ! ଆହା ଆହା ! ନିରଞ୍ଜନ ପାରିବନାହିଁ ବୋହୂମା-ମଞ୍ଜୁ ବି ପାରିବନାହିଁ; ମାତ୍ର ତୁ ପାରିବୁ ! ତୁ ପାରିବୁ ! ଗୋପାଳଜୀଙ୍କ କରୁଣା ଗଙ୍ଗାର ଧାରଟିଏ ହୋଇ ବହିଆସିଛୁ ଏ ବଂଶକୁ । ତୁ ସେଇ ପତିତ ଜାହ୍ନବୀର ଧାରଟିଏ ବୋହୂମା' – ତୁ ପାରିବୁ । ତୋର ତପସ୍ୟା ବଳରେ ତୋର ଶ୍ୱଶୁରର ପକ୍ଷାଘାତ ଭଲ ହୋଇଯିବ । ମଞ୍ଜୁ ହସ ଗୁଡ଼ କାଢିବ । ନିରଞ୍ଜନ ସ୍ୱୀକାର କରିବ ଯେ ତାର ଜନ୍ମ ପାପ ଭିତରୁ । ଶେଷକୁ ଶେଷକୁ—ତୋ' ଭିତରୁ ଯେ ଏହି ମାଟି ଉପରେ ଜନ୍ମହେବ – ସେଇ ଉଦ୍ଧାରିବ ଏ କୁଳକୁ । ନିଶ୍ଚୟ ନିଶ୍ଚୟ ! ବାବାଜୀ ଠିକ୍ କହିଛନ୍ତି ।

ବୋଉର କଥା ଶୁଣୁ ଶୁଣୁ ଲୀଳାର ଆଖି ସ୍ୱପ୍ନାଚ୍ଛନ୍ନ ହୋଇଉଠେ । ତା'ର କପାଳରେ ଫୁଟିଉଠେ ଗୋଟାଏ ଉଜ୍ଜ୍ୱଳ ଉତ୍କ୍ରମ ସଂକଳ୍ପ । ବୋଉର ହାତ ଧରିପକାଇ ସେ କହେ—ଚିନ୍ତା କରନ୍ତୁ ନାହିଁ ବୋଉ । ମୁଁ ପାରିବି । ନିଶ୍ଚୟ ତୁମର ଅଭିଳାଷ ପୂର୍ଣ୍ଣହେବ ।

ବିବାହର ତିନିବର୍ଷ ପୂରିଗଲାଣି । ଏ ଯାବତ୍ ଏ ବଂଶର କୁଳ-ପାବନ ସନ୍ତାନ ଜନ୍ମ ହୋଇ ନାହାନ୍ତି । ମହାଅଭିମାନୀ ସଂଯତବାକ୍ ପକ୍ଷାଘାତଗ୍ରସ୍ତ ବାପା ମଞ୍ଜୁକୁ କହନ୍ତି—ବୁଝିଲୁ ମଞ୍ଜୁ ! ମଞ୍ଜୁ କହେ—କଣ ବାପା ? ବାପା କହନ୍ତି— ଏଇଠୁ ପାପ ଲିଭିଯିବ । ଆଉ ଜଳିବ ନାହିଁ । ନା' କଣ କହୁଛୁ ?

ମଞ୍ଜୁ ହସେ—ଖିଲ ଖିଲ ହୋଇ ହସିଉଠେ । ସତେ କି ମଞ୍ଜୁ ନିଜେ ହସି ହସି ଖେଳଘର ସବୁ ଲିଭାଇ ଦେଉଛି ! କମ୍ପା ମଞ୍ଜୁ କହୁଛି—

ଲିଭୁନା ବାପା ! ଲିଭଯାଉ । ଦେଇ ଦେଖ ପାପମାନେ ଜଳୁଛନ୍ତି— ପାପମାନେ ଲିଭୁଛନ୍ତି—ଆଃଫୁଃ ଆଃଫୁଃ—ଲିଭଯାଅରେ ପାପମାନେ ! ପାଅ ଲିଭଯ ଅ—ଲିଭଯାଅ । ଆଃଫୁଃ ଆଃଫୁଃ । ମଞ୍ଜୁ ଖିଲ ଖିଲ କରି ହସିଯାଏ ପରସ୍ତେ ।

ନିରଞ୍ଜନଙ୍କ ଆଖି ଆଗରେ ଫୁଟିଉଠେ ଗୋଟାଏ ଦୀପାଳି ଅମାବାସ୍ୟା ରାତିର ଲକ୍ଷ ଲକ୍ଷ ପାପଜଳା ପୃଥିବୀ ; ଆଜି ପ୍ରତିଟି ଜଳନ୍ତା ପାପଶିଖା ପାଖେ ମଞ୍ଜୁର ଖିଲ ଖିଲ ହସ ପହଁଚିଯାଇ ଫୁଙ୍କିଦଉଛି— ଆଜି କହୁଛି—ଲିଭଯ ରେ ପାପ—ଲିଭଯା—ଯା ଲିଭଯା । ବାପା କହୁଛନ୍ତି ଲିଭଯା—ଭାଇ କହୁଛନ୍ତି ଲିଭଯା—ବୋଉ କହୁଛି ଲିଭଯା । ଲିଭଯା—ଯା' ଲିଭଯା । ପାପମାନେ ସତକୁ ସତ ଲିଭଯାଉଛନ୍ତି । ନିରଞ୍ଜନଙ୍କୁ ଭାରି ଖୁସିଲାଗେ । ଭାରି ଆହ୍ଲାଦ ଲାଗେ । ଅନ୍ଧାର ଅନ୍ଧାର । ଯହାଭିତରେ ପାପ ନାହିଁ ପୁଣ୍ୟ ନାହିଁ । କିଛି ନାହିଁ । ଖୁଣ୍ଟିରୁ ଓଗାଳ ଫଟାଇ ରାତିସାରା ଆତ୍ମଳମାଣବାର କ୍ଲାନ୍ତି ନାହିଁ । ଘଣ୍ଟା ଘଣ୍ଟା ଗରୁଡ଼-ସ୍ତମ୍ଭ ପାଖେ ବସି ଧ୍ୟାନକରି ଦେବଶିଶୁ ଜନ୍ମ କରିବାର ସଂକଳ୍ପଜନିତ ଅଳୀକ ଭାବପ୍ରବଣତା ନାହିଁ— । ଯାହା ଭିତରେ ଖାଲି ଅଛି ପାପମାନେ ଲିଭିଯିବାର ନିଃଶବ୍ଦ ଏକ ସୁର—ଶ୍ରୀମତୀ ଟ୍ରେଷ୍ଟରପୁଙ୍କ କଣ୍ଠଭିତରୁ ଯାହା ନିଃସୃତ ହୋଇଉଠେ । ମଞ୍ଜୁର ଖିଲ ଖିଲ ହସ ଭିତରୁ ଯହା ପ୍ରତିଧ୍ୱନିତ ହୋଇଉଠେ ।

ସେଇ ଗୃହ ଉପରେ ଠିଆହୋଇ ଗୋପାଳଜୀଉଙ୍କ ମନ୍ଦିରର ଚୂଡ଼ାଉପରୁ ଉତ୍ତରୀ ପବନରେ ଫରଫର ଉଡ଼ୁଥିବା ବାନାକୁ ଚାହିଁ— ନିରଞ୍ଜନ ହସିଉଠିରେ ଆପଣା ଅଜାଣତରେ ।

ସେ ଦିନେ—ଶ୍ରୀମତୀ ଟ୍ରେଷ୍ଟରପୁ ଖବର ପଠାଇଛନ୍ତି । ସେ ଦିନେ ସନ୍ଧ୍ୟା ଜମିଆସିଲାଣି । ଶୀତଦିନର ହେମାଳିଆ କୁହୁଡ଼ିଆ ସନ୍ଧ୍ୟା । ପାରାମାନେ ତଥାପି ଘୂମୁରୁଛନ୍ତି । ଗୋପାଳଜୀଉଙ୍କ ମନ୍ଦିରରେ ସନ୍ଧ୍ୟାଳତୀର ଶଙ୍ଖ ଘଣ୍ଟା ଓ ପଖାଉଜ ବାଜିଲାଣି । ମ୍ଳାନ ଧ୍ୟାନଭଙ୍ଗି ସାରି ବେଦୀରେ ପଣତଗୁଡ଼ାଇ ସନ୍ଧ୍ୟା ବନ୍ଦୀର ଅସ୍ପଷ୍ଟ ରହସ୍ୟାଲୋକରେ ଗୋପାଳଜୀଉଙ୍କ ମୂର୍ତ୍ତି ଭିତରେ ଆପଣାର ସତ୍ତାକୁ ମିଶାଇ ଦେଇଥିବ । ଆଜି ତାରି ପାଖେ

ପାଖେ ଠିଆ ହୋଇ ଠାକୁରଙ୍କୁ କାତର କଣ୍ଠରେ ବର ମାଗୁଥିବ ବୋଉ ! ହେ ଗୋପାଳଜୀଉ ! ମହାପାତ୍ର ବଂଶର କୁଳଦେବତା ! ସ୍ୱାଙ୍କର ପକ୍ଷଘାତ ଭଲ କରିଦିଅ । ମଞ୍ଜୁକୁ ଜଗିଥା । ନିରଞ୍ଜନ ପାଗଳୁ ମନୁ । କେହ୍ନୁର ସ୍ୱପ୍ନ ସଫଳ ହେଉ । ଏ ବଂଶର ସମସ୍ତ ପାପ ଅଭିଶାପ ତୁମ ଆଶୀର୍ବାଦରେ ଘୁଞ୍ଚିଯାଉ ।

ନିରଞ୍ଜନ ଫେର୍ ହସିଲେ । ନାଃ ଆଉ ଡେରି କରିବା ଅନୁଚିତ । ଶ୍ରୀମନ୍ତ ଗ୍ରେଟ୍‌ବାପୁ ନ ହେଲେ ଅସ୍ଥିର ହୋଇ ଉଠିବେ । ଶ୍ରୀମନ୍ତ ଗ୍ରେଟ୍‌ବାପୁ । ଆଃ ! ଅକିଂଚନତାର ଏତେ ମୂଲ୍ୟ ତାଙ୍କ ଭଳି କେହି ଦେଇ ପାରେନା । ମଣିଷର ସମସ୍ତ ସ୍ଥୂଳ କାମନା ଆଉ ବାସନାକୁ ନିଜ ଭିତରକୁ ଟାଣି ନେଇ, ତାକୁ ଏକ ପବିତ୍ର ବିଷାଦର ସୁର୍ ରୂପେ ମଧ୍ୟ ବାହାରେ ପ୍ରକାଶ କରିପାରେନା ତାଙ୍କ ଭଳି ଆଉ କେହି ନାହିଁ ! ଏ ପୃଥିବୀରେ ଗୋଟିଏ ଶ୍ରୀମନ୍ତ ଗ୍ରେଟ୍‌ବାପୁ ଯଥେଷ୍ଟ ନୁହଁ ସତ୍ୟ; ମାତ୍ର ଏ ପୃଥିବୀ ଆଉ ଅଧିକ ଶ୍ରୀମନ୍ତ ଗ୍ରେଟ୍‌ବାପୁ ଜନ୍ମ କରିବାରେ ଅସମର୍ଥ । ଏ ପୃଥିବୀ ପାପ ବୋଧରେ ନିପୀଡ଼ିତା, ତା କାନକୁ ଆପଣା ଜନ୍ମକଲା କନ୍ୟାର ପବିତ୍ର ବିଷାଦ ମଧୁର ସଙ୍ଗୀତ ଶୁଭେ ନାହିଁ । ସେଥିକି ସେ କାନ ଦିଏ ନାହିଁ ।

ସେ ଯିବେ । ସେ ଆଜି ଶ୍ରୀମନ୍ତ ଛୋଟବାପୁଙ୍କୁ ଆଲିଙ୍ଗନ କରିବେ ଅନ୍ଧାର ଭିତରେ କୁହୁଡ଼ି ଭିତରେ । ଯହିଁ ଭିତରେ ସେ ଦିଶୁ ନଥିବେ । ପାପ ଦିଶୁନଥିବ – ପୁଣ୍ୟ ଦିଶୁନଥିବ । ସେ ଗୋଟିଏ ସୁର୍‌କୁ ଆଲିଙ୍ଗନ କରିବେ, ଗୋଟିଏ ପବିତ୍ର ବିଷାଦ ମଧୁର ସୁର୍‌କୁ । ତା' ପରେ ସେ ମୂର୍ଚ୍ଛିତ ହେବେ କିଛିକାଳ । ସେଇଠୁ ସେ ଧାପଟିଏ ଭଳି ମିଞ୍ଜିମିଞ୍ଜି ଜଳିବେ । ଆପଣାର କ୍ଷୀଣ ଆଲୁଅରେ ଆପଣାକୁ ଦେଖିବେ । ଦେଖିବେ । ଦୁଃଖିତ ହେବେ ନାହିଁ । ଖୁସୀ ହେବେ ନାହିଁ । କେବଳ ଦେଖିବେ। ବୁଝିବେ । କେବଳ ବୁଝିବେ । ପ୍ରତିକ୍ରିୟା ଦେଖାଇବେ ନାହିଁ କେବଳ ବୁଝିବେ । ଆଗ ଖଣ୍ଡରୁ ଡ଼ଙ୍ଗାଟିକୁ ଫିଟାଇ ଦେବେ । ଆହୁଲା ମାରିବେ ନାହିଁ । ଭସିବେ । ଆପଣାକୁ ଭସିବାର ଦେଖିବେ । ଦୁଃଖିତ ହେବେ ନାହିଁ – ଖୁସୀ ହେବେ ନାହିଁ । ବୁଝିବେ । ଘୋରଆତଙ୍କ ଅନ୍ଧାର । କଳକଳ ନଦୀସ୍ରୋତ । ସୁଅମାନେ ଅନ୍ଧାର ସଙ୍ଗେ ମିଶି ଚକଚକେଇ ହେଉଥିବେ । ସେ ଡ଼ଙ୍ଗା ଭିତରେ ମିଞ୍ଜିମିଞ୍ଜି ଧାପଟିଏ ହୋଇ ଜଳୁଥିବେ । ସେଇଠୁ ସେ

ମଞ୍ଜୁକୁ ଡାକବେ । ମଞ୍ଜୁ ! ମଞ୍ଜୁ କହିବ—ଭାଇ ! ହସିଲୁ ଟିକଏ ହସିଲୁ--ଖିଲଖିଲ ହୋଇ ହସିଲୁ ! ସେଇଠୁ ମଞ୍ଜୁ ହସିବ—ଖିଲଖିଲ ହୋଇ ହସିବ । ତା' ହସରେ ନିରଞ୍ଜନ ଲଭିପିବେ । ଲିଭିଯିବେ । ଦୁଃଖିତ ହେବେ ନାହିଁ—ଖୁସି ହେବେ ନାହିଁ । ଲିଭିଯିବେ । ଲିଭିଗଲେ ବୋଲି ବୁଝିବେ ।

ସତକୁ ସତ ନିରଞ୍ଜନ ଡାକ ଛାଡ଼ିଲେ ମଞ୍ଜୁ !

ବାପାଙ୍କ କୋଠରୀରୁ ମଞ୍ଜୁ ଉଠି ଆସିଲା ।

କଣ ଭାଇ ?

ମୋର ଗରମ କୋଟ ଆଉ ମଫଲର୍‌ଟା ଦେ ତ !

ଦଉଚି ; କିନ୍ତୁ ତୁମେ କଣ ବର୍ତ୍ତମାନ ଏ ଅନ୍ଧାରରେ ବାହାରକୁ ଯିବ ?

ହଁ ଟିକଏ ଆସେ—ଅଳ୍ପ ସମୟ ଲାଗି ।

ଶ୍ରୀମନ୍ତ ଶ୍ରେଷ୍ଠବାପୁ ଲୋକ ପଠାଇଥିଲେ—ଜାଣିଛ ?

ହଁ ଜାଣେ ! ଯାଉଛି ତାଙ୍କ ପାଖକୁ ।

ନା ନା ତୁମର ଯିବା ଦରକାର ନାହିଁ । ସେ ଆସିବେ ବର୍ତ୍ତମାନ । ଭଜନ ଗାଇବେ ଆମ ଘରେ ।

କେମିତି ଜାଣିଲୁ ?

ହଁ—ତୁମେ ଛାତ ଉପରେ ଥିଲାବେଳେ ପୁଣିଥରେ ତାଙ୍କ ଲୋକ ଆସିଥିଲା । ସେ ଆସୁଛନ୍ତି—ତୁମେ ଆଉ ଯାଅନା ! !

ଏତିକି କହି ମଞ୍ଜୁ ହସିଲା—ସେହିଭଳି ଖିଲଖିଲ ହସ । ତା' ହାତରେ ଥିଲା ଖଣ୍ଡିଏ ନବତମ ପ୍ରକାଶିତ ଉପନ୍ୟାସ ।

ନିରଞ୍ଜନ କୋଟଟି ପିନ୍ଧିଲେ । ଆଉ ବୈଠକ ଘରେ ଲଣ୍ଠନଟା ରଖି ସୋଫାମାନ ବାହାରକୁ କାଢ଼ିଦେଲେ । କେବଳ ଗାଲିଚାଟି ଉପରେ କେତୋଟି ତକିଆ ପକାଇ ବସି ରହିଲେ ।

କେତୋଟି ମୁହୂର୍ତ୍ତ ପରେ ମଞ୍ଜୁ ବାହାରୁ ପୁଣି ପାଟିକରି ଉଠିଲା—ଭାଇ ! ଶ୍ରୀମନ୍ତ ଶ୍ରେଷ୍ଠବାପୁ ଆସିଗଲେଣି.............

ନିରଞ୍ଜନ ପଦାକୁ ବାହାରି ଆସିଲେ ତାଙ୍କୁ ସ୍ୱାଗତ କରିବାଲାଗି । ଏହି ସମୟରେ ତାଙ୍କୁ ଶୁଭିଲା ଆରଘରୁ ବାପା ଡାକୁଛନ୍ତି—

ମଞ୍ଜୁ !
କଣ ବାବା !
କଏ ଆସୁଛିରେ ?
ଶ୍ରେଷ୍ଠବସ୍ତୁଙ୍କ ଘର ସାନ ବୋହୂ !!
କଏ ??
ଶ୍ରେଷ୍ଠବସ୍ତୁଙ୍କ ଘର ସାନ ବୋହୂ !?
ହଉ ହଉ-ହେଲା !!
ମଞ୍ଜୁ କହିଲା—କଣ ହେଲା ବାପା ?
ବାପା ପୁଣି କହିଲେ କୁହୁଳାଇଲା ଭଳି—
ହେଲା ହେଲା ।

ମଞ୍ଜୁ ଏଥର ହସିଲା ଖୁବ୍ ଖିଲଖିଲ ହୋଇ । ଏହି ପରମଲଗ୍ନରେ ନିରଞ୍ଜନଙ୍କୁ ମଞ୍ଜୁର ଏଇ ଖିଲଖିଲ ହସ ଭାରି ଚମତ୍କାର ଲାଗିଲା । ମଞ୍ଜୁ ହସି ହସି ଏ ଘରକୁ କଳା ଦେଲାଣି । ଏଥର ଆଉ ଭୟ କଣ ? ଯାଆଲେ ଡାହାଣୀ ମାନେ । ପଳାଇଯାଅ ! ଯାଅଲେ ଚିରୁଗୁଣୀମାନେ ! ପଳାଇ ଯାଅ—ଯାଲେ ପିଚାଶୁଣୀମାନେ ! ପଳାଇ ଯାଅ । ଏ ଘର ଛାଡ଼ ଯାଅ—ଏ ଦୁଆର ଛାଡ଼ ଯାଅ—ଏ ଗାଁ ଛାଡ଼ ପଳାଇଯାଅ । ଯା ଯା ବୋଲ କାହାର ଆଜ୍ଞା ? କାଉଁରୀ କାମଚଣ୍ଡୀଙ୍କର କୋଟି କୋଟି ଆଜ୍ଞା ! ନେତେଇ ଧୋବଣୀର କୋଟି କୋଟି ଆଜ୍ଞା—ପିତେଇ ଶଉରୁଣୀର କୋଟି କୋଟି ଆଜ୍ଞା କୁମାରୀ ମଞ୍ଜୁ ପ୍ରଭୁଙ୍କର କୋଟି କୋଟି ଆଜ୍ଞା—ଯା ଯା! ପଳାଇଯାଅ !

ନିରଞ୍ଜନ ଏକ ପବିତ୍ର ସୌରଭରେ ପ୍ରକୃତିସ୍ଥ ହୋଇ ଦେଖିଲେ —ଆଗରେ ଉଭା ହୋଇଛନ୍ତି ଶ୍ରୀମତୀ ଶ୍ରେଷ୍ଠବସ୍ତୁ । ଶୁଭ୍ର-ସୁନ୍ଦର-ବିଷାଦ ମଧୁର ସ୍ୱର ମୂର୍ତ୍ତି ଟିଏ । ଏଣିକି ସବୁ ଆବର୍ଜନାର ସ୍ତୂପ ପରିଣତ ହେବେ ରୂପରେ—ସବୁ ରୂପ ପରିଣତ ହେବ ରସରେ—ଆଉ ସବୁ ରସ ଅନୁରଣିତ ହୋଇ ପୃଥିବୀକୁ ରୂପାନ୍ତରିତ କରିଦେବ ଗୋଟିଏ ଗମ୍ଭୀର ପବିତ୍ର ନାଦ ଭିତରେ । ଆଜି ସମସ୍ତେ ସୁର ମୂର୍ଚ୍ଛିତ ହେବେ ।

ଆଜି ସେ ଶ୍ରୀମତୀ ଶ୍ରେଷ୍ଠବସ୍ତୁଙ୍କୁ ଆଲିଙ୍ଗନ କରିବେ ।

ଖୁସୀ ହେବେନାହିଁ—ଦୁଃଖିତ ହେବେନାହିଁ – ଆଲିଙ୍ଗନ କରିବେ । ଆଲିଙ୍ଗନକୁ ବୁଝିବେ । ପ୍ରତିକ୍ରିୟା ଦେଖାଇବେ ନାହିଁ— ବୁଝିବେ ।

ବୋଝ ଆସୁ—

ଲଜ୍ଜା ଆସୁ –

ମୃତ୍ୟୁ ଆସୁ –

ବାପା ଆସନ୍ତୁ—

ପାପ ଆସୁ –

ପୁଣ୍ୟ ଆସୁ—

ଆପ ସମସ୍ତେ – ମୂର୍ଚ୍ଛିତ ହୁଅ । ଖୁସୀ ହୁଅନାହିଁ – ଦୁଃଖିତ ହୁଅନାହିଁ – ମୂର୍ଚ୍ଛିତ ହୁଅ ।



# ଇତି ଓ୍ୱାନ୍ଂ ଜାରଡେଜନ

ନାଃ — କଣ୍ଟ ଗୋଟାଏ ହେବା କଥାଟା ମିଛ । କଣ୍ଟ ନ ହେବାଟାଇ ସିଦ୍ଧାନ୍ତ । କଣ୍ଟ ନହେବା—ମାନେ "ମୁଁ"—ଯାହାକୁ ଅନ୍ୟମାନେ ଫେଲ୍‌କନ୍ ଦାସ୍ ନାମରେ ଡାକନ୍ତ—ସେ ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିବାକୁ ବା ନଜେ ନଶ୍ଚିନ୍ତ ହୋଇପିବାକୁ ସେହ୍ୱ ଫେଲ୍‌କନ୍ ଦାସ ନ ହୋଇ ଅନ୍ୟକଣ୍ଟ ହେବା— ଏଇ ଯେମିତ ସାଲ୍‌କମ୍ ଷଡ଼ଙ୍ଗୀ ବା ଦାଲୁଭନ୍ ପୃଜାପଣ୍ଡା—ବା ସାଲ୍‌ଢୀନ୍ ପଡ଼ିଆଣ୍ଡ ! ସେମାନେ ମୋତେ ଯାହା ହେବାକୁ ଭାବଚ୍ଛନ୍ତ—ମୁଁ ତାହା ହେବ ନାହିଁ ବା ସେମାନେ ମୋତେ ଫେଲ୍‌କନ୍ ଦାସ ରୂପେ ଯାହା ଭାବଚ୍ଛନ୍ତ ମୁଁ ତାହା ନୁହେଁ । କନ୍ତୁ ଏକଥା ମୁଁ କାହାକୁ ଜଣାଇବାକୁ ମଧ୍ୟ ବାଧ ନୁହେଁ । ମାତ୍ର କାହାର ମୋତେ ଯେମିତ ସେମିତ ଭାବବାକୁ ଦେବାରେ ମଧ୍ୟ ମୁଁ ବାଧା ଦେବ ନାହିଁ । ପିଏ ଯେମିତ ଖୁସୀ ଭାବୁ । ସେମାନେ ଫେଲ୍‌କନ୍ ଦାସ କହିଲେ ବୁଝନ୍ତ—ଗୋଟାଏ ଲମ୍ପଟ ଯେ କେବଳ ସ୍ତ୍ରୀ ଲୋକଙ୍କ ପିଛା ଲଗିଥାଏ ଓ କଳେ ବଳେ କୌଶଳେ ସେମାନଙ୍କୁ ନଜ ବଛଣାକୁ ଟାଣି ଆଣେ—ବା ନଜେ ସେମାନଙ୍କ ବଛଣାକୁ ଅଧିକାର କରେ । ଅତଏବ ତାର ମୁଣ୍ଡ ଛେଦନ କରିଦେଲେ ସେ ଥଣ୍ଡା ହେବ । ଆଉ କେତେକ କହନ୍ତ—ଫେଲ୍‌କନ୍ ଦାସ ଗୋଟାଏ ଜୁଆଖେଳୁର—ନର୍ଦ୍ଦିଷ୍ଟ କଣ୍ଟ କାର୍ଯ୍ୟ ନ କରି ଜୁଆଖେଳି କରି ଚଳେ । ଅତଏବ ତାକୁ ନେଇ ହାଜତ୍ ଘରେ ବନ୍ଦକରି ରଖ—ବା ଜେଲ୍‌ରେ ଘଣା ପେଲଅ । ଆଉ ଦଳେ କହନ୍ତ—ଫେଲ୍‌କନ୍ ଦାସ ଗୋଟାଏ ଆଡ଼ବାଇଆ ଲୋକ ଯେକ ଅନ୍ୟ ଟୋକାମାନଙ୍କ ଆଗରେ ଭୁଲ ଦର୍ଶନ ସବୁ ବଖାଣୁଛି ଓ ସେମାନଙ୍କୁ ମଧ୍ୟ ଆଡ଼ବାଇଆ କରି ଖରାପ କରୁଛି । ତା' ଯୋଗୁଁ ସମାଜର ବହୁ ଅମଙ୍ଗଳ ହେଉଛି—ତାକୁ ଗୁଳ କରି ମାରିଦେଲେ ଦେଶର ମଙ୍ଗଳ ହେବ ।

ମୁଁ ଫେଲ୍‌କନ୍ ଦାସ କହୁଛି—ସେମାନେ ଯେ ଯାହା ଭାବୁଛନ୍ତ । ବା ଯାହା ମୋ ପାଇଁ ସିଦ୍ଧାନ୍ତ କରୁଛନ୍ତ—ତାହା ସେମାନେ କରନ୍ତୁ—

ଭଲ ହେବ । ମାତ୍ର କାହାର ମୁଣ୍ଡ ଛେଦିବେ ସେମାନେ ? କାହାକୁ ଜେଲ୍ ଦେବେ ? କାହାକୁ ବା ଗୁଳି କରି ମାରିବେ ? ଫେଲ୍‌କନ୍ ଦାସ ବୋଲି ପ୍ରକୃତରେ କିଏ ଥିଲେ ତ ? ସେମାନେ ହୁଏତ ଫେଲ୍‌କନ୍ ଦାସକୁ ଲକ୍ଷ୍ୟକରି ଗୁଳି କରିବେ – ମାତ୍ର ମରିବ ଅପର । ଆଉ ଜଣେ ଯାହା ନାଁ । ସେତେବେଳେ ହୋଇଥିବ ସାଲ୍‌କ୍ୱାଆନ୍ ମୁଖର୍ଜି । ଏହା କଣ ମିଛ ? ସତ ହେଉ ନ ହେଉ ବାସ୍ତବ । ଜଣେ ମହାତ୍ମା ଗାନ୍ଧୀଙ୍କୁ ଲକ୍ଷ୍ୟକରି ଗୁଳି ଚଳେଇଲା--ମଲେ କିନ୍ତୁ ଆଉ ଜଣେ—ମୋହନ ଦାସ କରମଚାନ୍ଦ । ଜଣେ ମୃଗ କାନକୁ ଲକ୍ଷ୍ୟ କରି ଶର ମାରିଲା—ମଲେ କିନ୍ତୁ ଶ୍ରୀକୃଷ୍ଣ । ଉଦାହରଣ ବଢ଼ାଇ ଲାଭ ନାହିଁ । ଯଦି ଆଉ ଶୁଣୁଁଚ ତେବେ ଅନ୍ତତଃ ଆଉ ଗୋଟେ ଘଟଣା ଶୁଣ । ଜଲର୍‌ପଦା ଆଉ ନିଲମ୍‌ପୁର ସ୍କୁଲ ଭିତରେ ଯେତେଥର ଫୁଟବଲ ମ୍ୟାଚ୍ ହୁଏ ନିଲମ୍‌ପୁରବାଲା ଜିତନ୍ତି । ଏଣେ ଜଲରପଦା ଆଉ ନିଲମ୍‌ପୁର ଗ୍ରାମବାସୀଙ୍କ ଭିତରେ ମଧ୍ୟ ପୁରୁଷ ପୁରୁଷର ଝଗଡ଼ା । ଜଲର୍‌ପଦା ବାଲା ଥରେ ରାଗି ଯାଇ ନିଲମ୍‌ପୁର ସ୍କୁଲର ସେଣ୍ଟର ଫରୁଆର୍ଡ଼କୁ ଛୁରୀ ଭୁଷି ମାରିଦେଲେ । ଭାବିଲେ – ନିଲମ୍‌ପୁରିଆ ମାରିଛନ୍ତି । କିନ୍ତୁ ପରେ ଦେଖାଗଲା—ନିଲମ୍‌ପୁରିଆଙ୍କ ସେଣ୍ଟର ଫରୁଆର୍ଡ କରିମ ଖାଁ ଫଟକ ସହରର କଂସେଇ ପିଲ୍ଲୁ ଖାଁର ବଡ଼ପୁଅ । ସେ ଭଡ଼ାରେ ଅଭିନ୍ନ ଜାଗାକୁ ଖେଳିବାକୁ ଯାଏ । ସେଥି ତାର ରୋଜଗାର । ଜଲରପଦାବାଲା—ପ୍ରକୃତରେ କାହାକୁ ମାରିଲେ ? ହେଲା ତ ?

ଗୁଡ଼—ଯେ ଯାହା ଭାବୁଛି ମୋ ବିଷୟରେ କରୁଥାଉ ମୋର କିଛି ଯାଏ ଆସେନା । ମାତ୍ର ମୋର ସିଦ୍ଧାନ୍ତ ହେଲା ବର୍ତ୍ତମାନ ଆଉ କିଛି ନ ହେବା । କିନ୍ତୁ ମୁଁ କେବଳ ଏହି ମାନସିକ ଚିନ୍ତାଟିକୁ ସୌଜନ୍ୟ ଦୃଷ୍ଟିରୁ ହିଁ ସିଦ୍ଧାନ୍ତ ବୋଲି କହୁଛି । ଅସଲରେ ଏହା ଏକ ସିଦ୍ଧାନ୍ତ ନୁହେଁ । କାରଣ କିଛି ନହେବାକୁ ସିଦ୍ଧାନ୍ତ ନେବା ଅର୍ଥ ମଧ୍ୟ କିଛି ଗୋଟାଏ ହେବାର ସିଦ୍ଧାନ୍ତ ଭଳି ଆକାଶ କୁସୁମ ବଡ଼ ଅଜବ ବ୍ୟାପାର ।

ମୁଁ ବର୍ତ୍ତମାନ ଏଇ ଝୁଁପା ଭିତରୁ ବାହାରି ଆସିଲି । ମିସ୍ ମିତ୍ରଆଙ୍କୁ ବିଦାୟ ଦେଲି । କହିଲି— ଯାଅ ! ଆମର କାମ ସରିଗଲା । କିଛି ଅଉ ଭାବିବ ନାହିଁ । କାହା ବିଷୟରେ ବା ଭାବିବ ? ତୁମେ ଅବା ଭାବିବ ଯେ ଫେଲ୍‌କନ୍ ଦାସ ଆଜି ତୁମ ସଙ୍ଗେ ବଣୀଗୁମ୍ଫା ଭିତରେ

ରଜାଗଣୀ ଖେଳ ଖେଳନ୍ତି । ଅସଲ କଥା ଏହା ଫେଲ୍‌କନ୍‌ଦାସ ନ ହୋଇ କାଙ୍‌ଗନ୍‌ ଦାସର ଏକ କାଣ୍ଡ ହୋଇପାରେ । କିନ୍ତୁ କାଙ୍‌ଗନ୍‌ ଦାସ ବୋଲି ମଧ୍ୟ କେହି ନାହିଁ ତୁମର ଭାବନାର ବିଷୟ ବା କର୍ତ୍ତା ହେବାକୁ । ତେଣୁ ତୁମେ ଏ ବିଷୟରେ ବା କାହାକୁ ଦାୟୀ କରିବ ? ଦାୟିତ୍ୱ ଦେବ ? ତୁମେ ଯାଅ । ଖୁସୀ ହୋଇଯାଅ । ତୁମେ ଭଲ ସ୍ତ୍ରୀ ଲୋକ ବୋଲି ମୋର ଧାରଣା । ମିସ୍‌ ମିଣ୍ଟିଆ ବେଶୀ କଥା କହନ୍ତି ନାହିଁ । ସେ ହସି ହସି ଚାଲିଗଲେ । ସେ ପ୍ରକୃତରେ ଭଲ ସ୍ତ୍ରୀ ଲୋକ । ଏତେ ସେତେ ନାହିଁ । ହଁ ନାଁ ନାହିଁ । ହାଉଁ ମାଉଁ ନାହିଁ । କାଉଁ କାଉଁ ନାହିଁ ଗୁଁ ପୁଁ ନାହିଁ । ଥିଲା ଅଛି ହେବ ନାହିଁ । ସେ ହସିଦେଲା । ଚାଲିଗଲା । ସତେକି କିଛି ହୋଇନ ! ସତରେ କଣ ଏମିତି ଗୁଡ଼େ ହେଲା ଯେ ! ଗଲାବେଳେ କହିଗଲା – ପୋଛିଦବ । ମୁଁ କହିଲି—ପୋଛିବା ଦରକାର ନାହିଁ ଆପେ ପୋଛି ହୋଇଯିବ । ଦେଖୁନ ! ଆମେ କଣ ପୋଛୁଚୁ ? ଏ ଗୁମ୍ଫା ତାହାରେ ମୂର୍ତ୍ତିମାନଙ୍କର ନାକ, କାନ, ଆଖି, ସ୍ତନ ସବୁ କିଏ ପୋଛିଦେଇଛି ? ପିମ୍ପୁଡ଼ିମାନେ, ଜହାମାନେ, କୁକୁର ଆଉ ବିଲେଇମାନେ ସବୁ ଚାଟିଚାଟି ସଫା କରିଦେବେ । ସେମାନେ ପଚାରୁଆ କରିଛନ୍ତି ? ତାଙ୍କ ପାଇଁ ପଥରର ଡିମା ଯାହା—ଏଇ ପଥର ନାରୀ ମୂର୍ତ୍ତିଟାର ସ୍ତନ ବୋଲି ଯାହାକୁ ଭାବୁଛ ସେଇଆ । ରସ ଯାହା ଲାଳ ତାହା । ସେମାନେ ସବୁ ସାଫ କରିଦେବେ । ଚାଟିଦେବେ । ଅଥଚ ନାଁ ହେବ ମହାକାଳର । ଯେ ଚାଟୁ—ମୋର କି ଯାଏ ଆସେ ? ଯଦି କାଳ ଚାଟିବ—ତେବେ 'କାଳକୁ ଡାକ । ଚଟାଚଟି କଥା କାଳ ବୁଝୁ । କିନ୍ତୁ ପ୍ରକୃତ କଥା ହେଉଛି—ତୁମେ ମତେ ଚାଟି ଦିଅ—ମୁଁ ତୁମକୁ ଚାଟିଦିଏଁ । ସବୁ ସାଫ୍‌ । ମିସମିଚି ! ଆମେ ଅତଃପର ପରସ୍ପରଂ ଚାଟୟିତ୍ୱା ଚଟା-ଚଟି ଭୂତ୍ୱା—ସାଫ୍‌ ହୋଇଗଲୁ । ମିଣ୍ଟିଆ ଚାଲିଗଲା । ତାର ପଛପଟର ବପୁସ୍ଥ ନିତମ୍ବ ଓ ଜଘନାଦ୍ଧ ହଲିହଲି କହୁଥିଲେ—ମିଣ୍ଟିଆ ନାହିଁ, ମିଣ୍ଟିଆ ନାହିଁ ଆମେ—ଆମେ—ଆମେ । ଆମକୁ ମନେ ରଖିବ ? ମୁଁ କହିଲି—ଯାଉନ ! ମିଣ୍ଟିଆ ଯଦି ନାହିଁ ତୁମେ ମାନେ ଅଛ ? ମୁଁ ଏକଥା ମାନିବି ! ଚାଟିବା ମାନେ ସମସ୍ତଙ୍କୁ ଚାଟି ସାଫ୍‌ କରିଦେବା । ତୁମେମାନେ କପର ଅଛ ? ତୁମ୍ଭେମାନେ ନାହିଁ । ମୋର କି ଯାଏ ଆସେ ବାବୁ କିଏ—ଅଛି

କ ନାହିଁ ବୋଲି ପ୍ରମାଣ କରିବାରେ ? ସ୍ୱୟଂ ପ୍ରତ୍ୟକ୍ଷ ବୋଲି ଯଦି କହୁଥାଏ – ତେବେ ସେ କାହିଁ ? ମୁଁ ତ ତାକୁଇ ଖୋଜୁଛୁ ।

ଅସଲ କଥା ! ମୋ ପକେଟରେ ରୁଦ୍ରାକ୍ଷ ବୋଲି ଗୋଟାଏ ମାଳା ଅଛି । ତାର ତ ଫେର୍ ଗୋଟେ ବ୍ୟବସ୍ଥା କରିବାକୁ ହେବ ! ତେଣୁ ମୁଁ ବର୍ତ୍ତମାନ ସିଦ୍ଧ ଗୁମ୍ଫାକୁ ଯିବି । ମୁଁ ଏଇ ରାଣୀଗୁମ୍ଫାରୁ ବାହାରିଲି । ମିଚ୍ଚିଆ ବି ତା' ବାଟରେ ଗଲା ଚାଲି । ବର୍ଷାରୁ ରକ୍ଷା ପାଇବାକୁ ଆମେ ଏ ରାଣୀଗୁମ୍ଫାରେ ପଶିଲୁ । ତା' ଭିତରେ ପଶିବା ମାତ୍ରେ ମିଚ୍ଚିଆ ରାଣୀ ଭଳିଆ ହେଲା । ମୁଁ ଭାବିଲି ମୋର ଗୋଟାଏ କଣ ରାଜଦଣ୍ଡ ଥିଲା ଭଳି ଲାଗୁଛି । ଏଇ ରାଜଦଣ୍ଡ ମୋର ସାଧନଦଣ୍ଡ ବର୍ତ୍ତମାନ । ଆମେ ରାଜାରାଣୀ ଖେଳ ସାଧିବା । ସେଇଥିରୁ ଆମେ ପରସ୍ପରର ଇଚ୍ଛାନୁସାରେ ସେ କାର୍ଯ୍ୟରେ ମାତିଲୁ । ସେଇଥିରୁ ପରସ୍ପରର ଇଚ୍ଛାନୁଯାୟୀ ସବୁ ପୋଛା ପୋଛି କରିଦେଲୁ । ଏ କାର୍ଯ୍ୟଟି ସଇଲା-ସରଗଲା ।

ମାତ୍ର ବର୍ତ୍ତମାନ ଏଇ ରୁଦ୍ରାକ୍ଷ ନାମକ ଯେଉଁ ମାଳା-ତାର ତ ପୁଣି କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ ! ସେଥିପାଇଁ ମୋତେ କଣ କିଏ ବାଧ୍ୟ କରୁଛି ? କରୁଥାଇପାରେ । ନିଜକୁ ମୋର ପିତା ବୋଲି ଜାହିର କରୁଥିବା ସ୍ୱର୍ଗତ ଜାନ ମହେନ୍ଦ୍ର ଦାସ କହିବେ—ମୋର ସଂସ୍କାର ତୋ' ରକ୍ତରେ ବହୁଛି—ତୁ ଯିବୁ କୁଆଡେ ? ମୁଁ ଥିଲି ବାମାଚ୍ଛଶ ହଠଯୋଗୀ – ଜାଣିନୁ ? ଅମାବାସ୍ୟା ରାତିରେ ମଶାଣିରେ ଶବ ଉପରେ ବସି ସାଧନା କରୁଥିଲି । ମଣିଷ ଖପୁରିରେ ମଣିଷମାଂସ ରାନ୍ଧି ଖାଉଥିଲି-ପଞ୍ଚମକାର ସାଧୁଥିଲି ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା, ମୈଥୁନ- ଚଣ୍ଡୀ ସାଙ୍ଗେ ଶବଘରରେ ବଳାତ୍କାର ରତ କରୁଥିଲି । ଖେଚରୀ ମୁଦ୍ରାରେ ଜିଭକୁ ଲମ୍ବାଇ ମୋ ତାଳୁ ବ୍ରହ୍ମରୁ ଅମୃତ ବିନ୍ଦୁ ଚାଟୁଥିଲି । ତୁ ଜାଣିନୁ ?

ମୁଁ ଜାଣେ—ସେ ରୁଦ୍ରାକ୍ଷ ମାଳାଟା ଶେଷରେ ତୋ'ଉପରେ ପଡ଼ିବ । ତୁଇ ହେବୁ ମୋର ଉତ୍ତର ସାଧକ । ସେ ସଂସ୍କାର ମୁଁ ତୋତେ ଦେଇ ଆସିଛି । ତୁ ହାରାମ୍‌ଜାଦା ଯିବୁ କୁଆଡେ ? ଜପ୍ ଜପ୍—ଯା ସିଦ୍ଧ ଗୁମ୍ଫାକୁ ଯା । ସେଠି ଦୁଆର ମୁହଁରେ ଦେଖିବୁ-- କଙ୍କାଳୀବାବାର ମୂର୍ତ୍ତି

ଅଛି । ଗୁମ୍ଫା ଉପରେ ଗୋଟାଏ ବରୁଣ ଗଛ ନଇଁପଡ଼ିଛି । କଙ୍କାଳ ମୂର୍ତ୍ତି ଦେଖି ଗୁମ୍ଫା ଚିହ୍ନିବୁ । ସେ ମୂର୍ତ୍ତି ଖାଲି ହାଡ଼ମାଳ । ସେଇ ହାଡ଼ମାଳ ଭିତରେ ବ୍ରହ୍ମବିଭୂତି ଅଛି । ଉକ୍ତ ମଉଁସ ବଡ଼ କଥା ନୁହଁରେ ହାଗନ୍ଧାଦା । ଷଡ଼ଚକ୍ର ବଡ଼ କଥା । କୁଣ୍ଡଳିନୀକୁ ଜଗାଇ ସହସ୍ରାର ଯାଏ ଭେଦିଦିବା ବଡ଼ କଥା । ଇଡ଼ଁ ପିଙ୍ଗଳାରୁ ପ୍ରାଣ ପବନକୁ କାଢ଼ି ଆଣି ଶୀଶୁମ୍ନା ଭିତରେ ବୁହାଇଲେ ଯାଇ ସେଠି ଭେଦିବୁ—ଜହ୍ନିଂ ମନ ପବନ ନ ସଂଚରଇ—ରବି ଶଶୀ ନୋହେ ପ୍ରବେଶ···

ମୁଁ କହିଲି—ହେ ପ୍ରେତାତ୍ମା ଅଶରୀରୀ ! ମୁଁ ଗୋଟାଏ ରୁଦ୍ରାକ୍ଷମାଳା ପାଇଛି ସତ । ମାତ୍ର ତୁମର ଉକ୍ତ କଣ ସତରେ ମୋ ପାଖରେ ବହୁଛି ? ସତ କହୁଚ ? ଜାଣିଛ କିଛି ? ମତେ ଅବଶ୍ୟ ସମସ୍ତେ କହନ୍ତି—ଜାନ ମହେନ୍ଦ୍ର ଦାସ ସୁତ—ତୋ’ ନାମ ଫେଲକନ ଦାସ । ଅବଶ୍ୟ ତୁମର ସେଇ ନାଁଟା ଉପରେ ମୁଁ ଏମ୍. ଏ. ପଢ଼ିବା ଯାଏ ସଚେତନ ନଥିଲି । ଏମ୍. ଏ. ପାସ୍ ପରେ ମୁଁ ଚାକିରି ଉଦ୍ଦେଶ୍ୟରେ ମାଟ୍ରିକ ସାର୍ଟିଫିକେଟ ଦେଖେ ତ—ପିତାର ନାମ ସ୍ଥଳେ ଲେଖା ହୋଇଛି ତୁମ ନାମ ସନ୍ ଅଫ୍ ଶ୍ରୀ ଜାନ ମହେନ୍ଦ୍ର ଦାସ । ମୁଁ ସେଦିନ ରାଗି ଉଠି ସେ ନାଁକୁ ଦେଖି ଖେଙ୍କାରି ଉଠିଲି—କିଏବେ ତୁ ଜାନ ମହେନ୍ଦ୍ର ? ମକୁନ୍ଦୀ ! ଧିକ୍ ମକୁନ୍ଦୀ ? ତୁ ମୋ ବାପା ? ନା ଶ୍ଳେପାବେ ? ତା’ ହେଲେ ମୋ ବୋଉ ପାଖେ ମୋ ଜନ୍ମ ଆଗରୁ ଆଜ ପରେ ରାତିରାତି ଶୋଇଥିଲୁ ସେଇ ଯୋଉ ଗ୍ଲେକାର ଟିଙ୍ଗା ବାବା—ନାଲ୍ ନାଲ୍ ଆଖି—ଭକ୍ ଭକ୍ ଧୂଆଁ ହ୍ରିଁ କ୍ଲିଁ ସ୍ୱର—ଯାହାକୁ ତୁମେ ଗୁରୁ ବୋଲି ପୂଜା କରୁଥିଲ ସେ କାହା ବୋପା ? ସେ ଟିଙ୍ଗା ବାବା ଥରେ ମୋ ବୋଉ ପାଖେ ଶୋଇବ ବୋଲି (ତୁମେ ତ ମଶାଣିରେ ମଡ଼ାକୁ ଧରି ଶୁଅ) ବୋଉକୁ ଭାଙ୍ଗ ପିଆଇ ଦେଲା । ମୁଁ ରାତିରେ ଉଠି ଖୁଜୁବୁଜୁ ହେବି ବୋଲି ଶଳା ମତେ ବି ଭାଙ୍ଗ ପିଆଇ ଦେଲା । ଶଳା ଟିଙ୍ଗା ମକୁନ୍ଦା ଭାବିଥିଲା—ମୁଁ ଶୋଇ ପଡ଼ିବି । ସେ ପୁଣି ମୋ ସାନ ଭାଇର ବାପ ହେବ । ଶଳା ନିଜକୁ ଜଗତ ଯାକର ବାବା ବୋଲାଉଥିଲା । ତାରି ହୋଲେ ନା ଡୋଲେ ! ମାତ୍ର ମୋତେ ଆଜ ନିଶା ନଧରେ ! ଶ୍ଳା—ପିଲାଦିନୁଁ ମୋର ଗୋଟାଏ ବଦଭ୍ୟାସ ଧାତୁ ହୋଇଗଲା । ଆଜଯାଏ ବି ମୋତେ ଆଉ କିଛି ନିଶା ଧରୁନି । ଭାଙ୍ଗ

ଅଫିମ, ମଦ ବଟିକା କଛୁ ଆଜ୍ଞ କାନ୍ଥ କରୁନ । ଶ୍ଳା ଭୂତରେ ଗୋଟାଏ କଏ ପାଗଳା ଅଛୁ—ତା' ଆଖିକ ଭିତରେ କ ନଦ ନାହିଁ । ମୁଁ ଶୋଇ ପଡ଼ିଲେ ବ ସେ ଶଳା ଜାଗ୍ରତଆର – ଖାଡ଼ା ପହରା—ମାଝ ଖୁଜ୍‌ବୁଜ୍ । ତାକୁ ଯଦ ନଶା ଧରନ୍ତା ତେବେ ମୋର ଆଜ ପରୁଆ କଣ ଥିଲା ?

ହେଇଗଲା ଫେ଼ବୃଆରୀ ମାସରେ ରାତ ଅଧରେ ଆମେ ସବୁ ସହରତଳ ମଶାଣୀକ ଗଲୁ । ସେଦନ ମୁଁ ଏକା ତନବୋତଲ ରମ୍ ପିଇଦେଲ ସବଟ ଭଲଆ । ସୁରଆ କହିଲା—ପିଇନା ବେ ଏତେ— ମଣିଯିବୁ । ମୁଁ କହିଲ – ବେଧଛୁଆ ମାନେ ମରନ୍ତୁନ ବେ ଏତେ ସହଜରେ ! ତାଙ୍କ ଜୀବନ ଭଷରେ ଭଆର ପିଲ୍ଲାଦନ୍ତୁ । ସମସ୍ତିଙ୍କ ନଶା ହେଲା—ମାଝ ରାତଯାକ ମୁଁ ଛଟପଟ ହେଉଥାଏ – ନଶା ଧରୁ ନ ଥାଏ । ଅଲ୍ପ ଦୂରରେ ଦୁଇଟା ମୁର୍ଦ୍ଦାର ପୋଡ଼ା ହେଉଥାଏ । ସେ ମଶାଣୀରେ ଯୋଗ ମଶାଣିଚଣ୍ଡୀ ବାବାଜୀ ଥାଏ ସେବ ଆସି ଆମ ଦଳରେ ମିଶିଲା । ଆମଠାରୁ ରମ୍ ପିଇଲା—ଗଞ୍ଜେଇ ଟାଣିଲା– ଆମକୁ ବ ଚଣ୍ଡ ଦେଲା । ମୁଁ ଦୁଇଟା ଦାମ୍‌ରେ ଚଲମଟାକୁ ବ ପାଉଁଶ କରଦେଲ । ମୁର୍ଦ୍ଦାର ପୋଡ଼ା ଗନ୍ଧ ନାକକୁ ଭାର ଆରାମ ଦଉଥାଏ । ଚତାର ନଆଁ ମଧ୍ୟ ବେଳେବେଳେ ବଜୁଳ ଭଳଆ ଆମ ଉପରେ ଆସି ପଡ଼ୁଥାଏ । ମୁଁ ଭାବୁଥାଏ – ଶଳା ସମସ୍ତେ ଏକାଦନକେ ପୋଡ଼ା ହଅନ୍ତେ କ । ଗୃହଦନ ହାଲେଇମସ୍ତ ହୋଇ ଉଠନ୍ତା । ସେଇଠୁ ସେ ବାବାଜୀ କହିଲା—ଭଜନ ବୋଲ ଭକ୍ତମାନେ । ସୁରଆ ବୋଲଲା – ଯଦର ବୟସେ ଦେଲ ଅମର ମନ୍ତ୍ରରେ ମନ ଅମର ମନ୍ତ୍ର—ଏବେ ତରଣୀ ହେଲଣି – ମୋର କାମିନୀ ଚନ୍ଦ୍ରା – ଆରେ କାମିନୀ ଚନ୍ଦ୍ରା – । ମୁଁ ସୁରଆ ପାଟିକୁ ଘୁପିଧର କହିଲ – ଶୁଣ୍ ବେ – କବତା ଶୁଣ ! ସମସ୍ତେ କହିଲେ – ବୋଲ୍ ବୋଲ୍ । ମୁଁ କହିଲ – ଇଂରାଜୀ, ନା ବଙ୍ଗଳା ନା ଓଡ଼ିଆ ? ସମସ୍ତେ କହିଲେ – ସବୁ ଭାଷାରେ ବୋଲ । ମୁଁ ଠିଆ ହୋଇପଡ଼ି ଖଙ୍କେଇ ହେଲଭଳ ଅଭିନୟ କର ବୋଲଲ –

In the night more of dark
All the dogs of city bark.

ସେମାନେ ସମସ୍ତେ ତାଳଦେଇ ଗାଳ ଧରିଲେ—ଆରେ ଅଲ୍ ଦ ଡଗ୍ସ ଅଫ୍ ସିଟି ବାର୍କ—ଅଲ୍ ଦ ଡଗ୍ସ ଅଫ୍ ସିଟି ବାର୍କ ! ସେଇଠୁ ସୁରିଆ ଗୀତ ଗୁଡ଼ କୁକୁରଙ୍କ ଭଳି ବଳବାଳ ବୋବାଳ ଗୁଡ଼ଲା । ତା ସାଙ୍ଗେ ଗାଳ ଧରି ଅନ୍ୟମାନେ ମଧ୍ୟ କଣ୍ଟି ସମସ୍ତ କୁକୁର ଭଳି ବୋବେଇ ଉଠିଲେ । ସେମାନେ ନୀରବ ହୁଅନ୍ତେ—ମୁଁ ପୁଣି ଆଉ ଗୋଟେ କବିତାର ଧାଡ଼ି ବୋକଲ ସୁର୍ ଧରି –

ଅରେ—

Crazed we come and
coarsened we go
Our wobbling way,
there is a white silence
Of antiseptics and instruments
at both ends, but
ababble between and
a shame surely.

ସେଇଠୁ ସମସ୍ତେ ପୁଣି ପ୍ରମତ୍ତ କଣ୍ଠରେ କାହାକୁ ଖଡେଇ ଦେଲା ଭଳି, ଅଣ୍ଟା କଲ୍ଭଳ ତାଳମାରି ତାଳଧରି ଶେଷ ପଦକୁ ଓ ଦ୍ରାକରି ଗାଇ ଗାଇ ନାଚିଲେ – ଏ ବାବ୍ଲ ବଟ୍ ଉଇନ୍, ଅଣ୍ଡ ଏ ସେମ୍ ସିଓରଲି – ଏ ବାବଲ୍ ବଟ୍ ଉଇନ୍, ଆଣ୍ଡ ଏ ସେମ୍ ସିଓର୍ଲି । ଡାଡ଼ୀ ସେମ୍ ସିଓର୍ଲି – ମମୀ ସେମ୍ ସିଓର୍ଲି – ବ୍ରାଦାର ସେମ୍ ସିଓର୍ଲି – ଅଙ୍କଲ ସେମ୍ ସିଓର୍ଲି---ବାବାଜୀ ସେମ୍ ସିଓରଲି······

ସମସ୍ତେ ଗାଇ ଗାଇ ନାଚି ନାଚି ଟଳେ ପଡ଼ିଗଲେ । ଫେର ଗୋଟାଏ ରାଉଣ୍ଡ ବଅର ପିଆଗଲା । ଶୋଷେଇ ଯାଇଥିଲେ ନା ! ସେଇଠୁ ମଣି ଚଣ୍ଡୀ ବାବାଜୀ କହିଲା – ଭାଗବତ ଗାଇ ଆସେ ଯଦ ଗାଅ ଭକ୍ତ ମାନେ । ସଂଲମନ କହିଲା – ଫେଲ୍‌କନ୍ ତୁ ଗା ! ମୁଁ ସେଇଠୁ ଗାଇଲି ଭାଗବତ ସୁର୍‌ରେ –

ହେ ସଚ୍ଚିଦାନନ୍ଦ ନାଗେଶ୍ୱର – ବାପାଙ୍କୁ ଦେଖିଛ କ ମୋର ?
ଆଗୋ ଜନନୀ ଅନ୍ଧମାତା – କହ ସେ କାଏ ମୋର ପିତା ?

ବାଜୁ ତ କାଜୁ ମୁହିଁ ଜାଣ – ଦେଖିନ ପିତାଙ୍କ ବଦନ ।
କାହା ଗର୍ଭରୁ ମୁହିଁ ଜାତ – କି ଅବା ଶୂନ୍ୟରୁ ଆଗତ ?
ଶୂନ୍ୟକୁ ଶୂନ୍ୟକି ରମିଲ – ତା' ଚନ୍ଦ୍ରୁ ବନ୍ଧୁ କି ଛରିଲ ?
ସେ ବନ୍ଧୁ ମୁହିଁ କବା ଜାତ – ଜନମ କହ ସେ ଉଦନ୍ତ ।
ଯତ୍ତେ ଟିଙ୍ଗା ବାବା ନାମେ – ଥିଲ ସେ ବୋଉ ସନ୍ନିଧାନେ
ବୋଉ ତାହାର ଭୁଜ ଧରି – ବାପାଙ୍କୁ ଗଲଟି ପାଶୋରି
ବାପା ଯେ ଥିଲ ମଶାଣିରେ – ରତ୍ତ କରଣ ମଡ଼ା ଭୁଲେ
ଏବେ ବୋଲଏ ସେ ମୋ ପିତା – ଜନମ କହ ସତ୍ୟାସତ୍ୟ !

ସେଇଠୁ ସମସ୍ତେ ଗଦ୍‌ଗଦ୍ କଣ୍ଠରେ ଘଡ଼ିଏ କାଳ ଆପଣା ଆପଣାର ମା' ମାନଙ୍କୁ ପଚାରିଲା ପରି ଶେଷ ପଦ୍ୟଟିକୁ ମିଳିତ କଣ୍ଠରେ ଗାଇଲେ – ଜନମ ବରି ବରି କହ ସତ୍ୟାସତ୍ୟ – (ଆରେ) ଜନମ ବରି ବରି ବରି କହ ସତ୍ୟାସତ୍ୟ । ଏହି ସମୟରେ ମଶାଣିଚଣ୍ଡୀର ଶଲମ୍ ଝାଁଟା ଧପ୍‌କନା ଜଳି ଉଠିଲା । ସେ ଗୋଟାଏ ଅଟ୍ଟହାସ୍ୟ କଲା ଭୈରବର ଅଟ୍ଟହାସ୍ୟ । ସମସ୍ତେ ହୋ ହୋ କରି ହସି ଉଠିଲେ । ବଦନାଟା ଶଳା ନବରଙ୍ଗିଆ । ତା' ମଥାରେ ଟିକିଏ ବି ଦଦ୍ଧି ନାହିଁ । ସେ ଠିଆ ହୋଇପଡ଼ି ସମସ୍ତଙ୍କ ମୁହଁ ପାଖେ ହାତ ହଲାଇ ଟିହାଇଲା ଢଙ୍ଗରେ ଗାଇଲା ।

ଆରେ ମକୁନ୍ଦା ! ଧକ୍ ଧକୁନ୍ଦା ! ତୋ ବୋପା କୁଆଡ଼େ ଗଲା ? ସମସ୍ତେ ତା' କଥାର ଉତ୍ତର ଦେଲେ ସୁର୍ ଦେଇ ମୃଦଙ୍ଗୀ ଢଙ୍ଗରେ ଆମକୁ ଜଣା ନାହିଁ, ଆମକୁ ଜଣାନାହିଁ । ଅବଶେଷରେ ସମସ୍ତେ ଖୁସି ହେଲେ ଶୁଣି ଯେ ମୁଁ ଗୋଟାଏ ହୋସ୍କରୁଣୀର ପୁଅ । ସୁରିଆ କହିଲା ହେ ଫେଲ୍‌କନ ! ଆମେ ସମସ୍ତେ କଣ ସେଇଆ କରେ ? ତୋ ଭଳିଆ ? ସେମିତ ଆମକୁ ଲାଗୁଛୁ ବେ । ଭଲ ଲାଗୁଛୁ । ଏଥର ମନ ହଉଛି ଚାଲ ସବୁ ଭାଙ୍ଗିଦେବା । ସହରଯାକର ସବୁ ଗଳିରେ ବାପା ବୋଲଉଥିବା ମୂର୍ତ୍ତିମାନ ଅଛୁ ବେ । ଚାଲ ସମସ୍ତେ ସେ ମୂର୍ତ୍ତିମାନ ଭାଙ୍ଗିଦବା ନହେଲେ ସବୁ ମୂର୍ତ୍ତିର ଗାଲରେ ଚୂନ ଆଉ ଆଲକାତରା ବୋଳିଦବା । ଗୋଲମଇଚ ଗ୍ଲେବେଇବା--ସଭିଙ୍କି ଯାଚିକ ଶୋଧିବା--ବାବାଜୀମାନଙ୍କୁ ଧରି ଶୂଳୀ ଦବା--ବାପାମାନଙ୍କ ପିଣ୍ଡୁରୁ ଲୁଗାକାଢ଼ି ପିଟିବା ମା'ମାନଙ୍କୁ ଖତେଇଦେବା

ଟିଡ଼ାଇବା—ଧମକାଇବା – ଦେଖା ଆମ ବାପାଙ୍କୁ ଦେଖା – ଦେଖା ଚଞ୍ଚଳ ନହେଲେ ଦେଖିବୁ । ସେଇଠୁ ସ୍କୁଲ୍ କଲେଜକୁ ଯାଇ ସବୁ ପିଲାଙ୍କ ବାପାମାନଙ୍କ ନାଁକୁ ରେଜିଷ୍ଟରରୁ କାଟିଦବା କଣ ଏ ପ୍ରସ୍ତାବ ତୋ ମନକୁ ପାଉନୁ ନାରେ ଫେଲ୍ କନ୍ ? ମୁଁ କହିଲି—ଯାହାପାରୁଛ କର । ମୋ କାମ ବଡ଼ି ଯାଉଛି । ମୁଁ ମୋ କଥା ବୁଝିବ – ମୋ ପାଇଁ ଆଉ କିଛି କର୍ତ୍ତବ୍ୟ ଅକର୍ତ୍ତବ୍ୟ ନାହିଁ ।

···କେଣୁ ସ୍ୱର୍ଗିତ ବାପାଙ୍କ ପ୍ରେତ ମୋର ଘଷାର ବଢ଼ାଇ ଦେବାରୁ ମୁଁ ଯେ ଏ ରୁଦ୍ରାକ୍ଷ ମାଳାର ସଦବ୍ୟବହାର କରିବ ତା ନୁହେଁ । ଅସଲ କଥା – ମୁଁ ସେଦିନ ସେଇ ନିଶା-ଧ୍ୟାନସ୍ଥ ମଶାଣୀଚଣ୍ଡୀ ଗଞ୍ଜୋଡ଼ ଅଘୋରୀ ବାବାଜୀଙ୍କ ଧରି ତା' ଗାଲରେ କଷିକରି ଦୁଇଟି ଚଟକଣୀ ମାଇଲି । ଚମକିପଡ଼ି ସେ ଶଳା ତ ଗଞ୍ଜା ଖୁସୀରେ ରାଗୀ ଉଠିଲା । ତେଜୀ କଣ୍ଠରେ କହିଲା—କଣ ନେବୁରେ ଶଳା ହାରାମ୍ ଜାଦା ? ମୁଁ ତା ବେକରୁ ମାଳକୁ ଧରି କହିଲି ଏଇଟା କ ମାଳରେ ? ସେ କହିଲା ରୁଦ୍ରାକ୍ଷ । ମୁଁ କହିଲି ଏଥିରେ କଣ କରାଯାଏ ? ସେ କହିଲା ଜପାଯାଏ । ମୁଁ କହିଲି ସେଇଟା ମତେ ଦେ । ସେ କହିଲା ନଜକୁ ! ମାରୁଚୁ କାହିଁକି ? ନେ ଜପ୍ । ପାଇବୁ ଶଳା ଚେଙ୍ଗ ଯା । ସେଇଠୁ ସେ ମତେ ଚିଲମ ଦେଖେଇଲା – କହିଲା ଏଇଟା ବି ନେବୁ ? ମୁଁ କହିଲି ସ୍ନେପ୍ କେ – ଶଳା ଗ୍ରହଣ – ମାଳା ସଙ୍ଗେ ଚିଲମ୍ ଧରେଇ ମତେ ଗୋଟେ ପାକ୍ଷା ଦବ ତା ବାଟରେ ମତେ ଚଳେଇବ ।···

ସେଇ ମାଳାଟି ବର୍ତ୍ତମାନ ମୋ ହାତରେ । ଆଜଯାଏ ମୁଁ ତାକୁ ଜପି ନଥିଲି । ପକେଟରେ ରଖିଥିଲି । ସେଇ ମାଳା ବର୍ତ୍ତମାନ କହୁଛି ମତେ ଜପ୍ ! ମୁଁ କହୁଛି ହଉ ତତେ ଜପିବି । ଏତିକି ତ ତଥ୍ୟ ଆଉ କଣ ? ମିଛିଆ କହିଲା ମୋତେ ଧ—ମୁଁ ଧଇଲି । ମୁଁ ମିଛିଆକୁ କହିଲି ମତେ ଗୁଡ଼୍ । ସେ ମତେ ଗୁଡ଼ ଦେଲା । ଏତିକି ତ ତଥ୍ୟ ଆଉ କଣ ?

ଅଗତ୍ୟା ମାଳାଧରି ମୁଁ ସିଦ୍ଧ ଗୁମ୍ଫା ଅନ୍ୱେଷଣରେ ଗଲି । ଏ ଗୁମ୍ଫାଟା ପାଇବା ମୁସ୍କିଲ ସହସ୍ରେ ଗୁମ୍ଫା ଏଠି ଅଛି । କିନ୍ତୁ ସିଦ୍ଧ ଗୁମ୍ଫା ମୁହଁରେ କ ୀଳୀବାବାର ମୂର୍ତ୍ତି ରହିଛି ଏଇ ପ୍ରମାଣ । କିନ୍ତୁ ମୁଁ ଯେ

ବାବାଜୀ ସିଦ୍ଧ ବା ଯୋଗୀ ହେବାକୁ ଯାଉଛୁ ତା' ନୁହଁ । ଫେର୍ କଏ ଆସିବ—ମୋ ଗାଲରେ ଦୁଇଚଟକଣୀ ମାରି ମୋ ଠାରୁ ମାଳାଟି ଛଡ଼େଇ ନବ । ମୁଁ କଛୁ ହେବ ନାହିଁ । କଛି ହେବାର ନହେବାର ସିଦ୍ଧାନ୍ତ ମୋର ଆପାତତଃ ନାହିଁ ।...

ସେହି କଥା ମତେ ସେଦିନ ପଚାରିଥିଲି କୁମାରୀ ଜୁଲି ମିଶ୍ର । ଅସାଧାରଣ ମନସ୍ତତ୍ତ୍ୱ ଉପରେ ଗବେଷଣା କରୁଥିଲି ସେ । ମୁଁ ଗବେଷଣା କରୁଛି ବୋଲି ଦେଖେଇ ହେଉଥିଲି । ଅସଲ କଥା ଖିଆଲ ଖୁସିରେ ଏଣୁତେଣୁ ବହି ପଢ଼ୁଥିଲି । ଗୋଟାଏ ବୃତ୍ତି ପାଉଥିଲି ମାସକୁ ଦେଢ଼ଶ ଟଙ୍କା । ସେଦିନ ମୁଁ ଲାଇବ୍ରେରୀରୁ ଫେରୁଥିଲି । ପାଞ୍ଚଘଣ୍ଟା ଧରି ଏକାଦିକ୍ରମେ ସେ ଦିନ ମୁଁ ଗୋଟାଏ ବହି ପଢ଼ୁଥିଲି ଲାଇଫ୍ ଡିଭାଇନ୍ । ଏଠୁ ସେଠୁ ପଢ଼ୁଥିଲି । ଦି ହ୍ୟୁମାନ୍ ଆସ୍ପିରେସନ୍—ଡେଷ୍ଟିନି ଅଫ୍ ଦି ଇନ୍ଡିଭିଜୁଆଲ୍ – ମ୍ୟାନ୍ ଇନ୍ ଦି ଇଉନିଭରସ୍, ଡାଇଟ୍ ଅଫ ଏକ୍ଜିଷ୍ଟେନ୍ସ, ଦି ପ୍ରୋବ୍ଲେମ ଆଣ୍ଡ ଦି ସଲ୍ୟୁସନ୍ ଡେଥ, ଡିଜାୟାର ଆଣ୍ଡ ଇନ୍କାପାସିଟି – ଦି ଡବଲସୋଲ୍ ଅଫ ମ୍ୟାନ । ବହିଟି ଖୁବ୍ ଆଗ୍ରହ ଓ ଆବେଗରେ ପଢ଼ି ଯାଉଥିଲି । କିନ୍ତୁ ହଠାତ୍ ମତେ ଖୁବ୍ ବିମର୍ଷ ବୋଧହେଲା । ବିଗ ମଧ୍ୟ ହେଲା ? ଏସବୁ କଣ ? କଥା କଣ ? ଏ ଜୀବନକୁ ଏତେ ମୂଲ୍ୟ କପରି ଦିଆଯାଉଛି ! ସ୍ୱା ବିଷୟରେ ଏତେ ନିଶ୍ଚିନ୍ତ ସିଦ୍ଧାନ୍ତ କପରି ନିଆଯାଇ ପାରୁଛି ? ସତରେ କଣ ଏ ଜୀବନକୁ ନେଇ କିଛି ଗୋଟାଏ କରିଦେଇ ହେବ ? ଅବଶ୍ୟ ଯେ ଏ ସିଦ୍ଧାନ୍ତ ନେଇଛନ୍ତି ଓ ସିଦ୍ଧାନ୍ତ ନେବାକୁ ବାଟ ଓ ନିର୍ଦ୍ଦେଶ ଦେଇଛନ୍ତି ସେ ବହିରେ – ତାଙ୍କର ଗୋଟିଏ ଚମତ୍କାର ଫଟୋ – ମୁଁ ତାଙ୍କର ଆଉ ଖଣ୍ଡିଏ ବହିରେ ଦେଖିଥିଲି । ସେ ଗୋଟିଏ ଧୋତିପିନ୍ଧି ସେଇ ଧୋତିର ଫେରକୁ ଘୋଡ଼େଇ ହୋଇ ଠିଆ ହୋଇଥିଲେ ସେ ଭାରି କରୁଣ ଦେଖାଯାଉଥିଲେ । ସତେକି ସେ ତାଙ୍କର ପୁତ୍ରମାନଙ୍କୁ ହରାଇଥିଲେ । ସତେକି ସେ ତାଙ୍କର ବାଳୁଙ୍ଗା ପୁଅମାନଙ୍କ ଲାଗି ସ୍ନେହ ଓ କାରୁଣ୍ୟରେ ବିଗଳିତ ମୂର୍ତ୍ତି । ମୁଁ ଏତେ ସୁନ୍ଦର ପିତୃମୂର୍ତ୍ତି କୋଉଠି ଦେଖି ନ ଥିଲି । ହଁ ଦେଖିଥିଲି – ଶହେବର୍ଷ ପୂର୍ବେ ଚିକାଗୋରେ ଯେଉଁ ସ୍ୱାମୀ ବକ୍ତୃତା ଦେଇ ବିଖ୍ୟାତ ହୋଇଥିଲେ । କଥିତ ଅଛି କୁଆଡ଼େ ତାଙ୍କ ଗୁରୁ ଯେ ପରମହଂସ ତାଙ୍କର ଗଳା କାନ୍ଧପର

ହୋଇଥିଲା । ଥରେ ସେ ରକ୍ତ ପ୍ରଜମିଶା ଶିଶୁ ବାନ୍ତ କରି ପକାଇଲେ । ପାଖରେ ଠିଆ ହୋଇଥିବା ବହୁ' ଅଶିକ୍ଷିତ ଚେଲାଙ୍କ ଭିତରୁ ଜଣେ ଚେଲା କହିଲେ – ସମସ୍ତେ ତ କହୁଛ – ଏ ଗୁରୁ ଅବତାର । ଆଚ୍ଛା ଏ ବାନ୍ତିକୁ ତୁମ ଭିତରୁ କିଏ ବର୍ତ୍ତମାନ ଗିଳିଦେଇ ପାରିବ ? ଶିକାଗୋ ବକ୍ତୃତାବାଲା ସ୍ୱାମୀ ତାକୁ ସାଙ୍ଗେ ସାଙ୍ଗେ ଚଳୁ ଆଞ୍ଜୁଳାରେ ଉଠାଇ ଆଣି ସମସ୍ତଙ୍କ ଆଖି ଆଗରେ ଗିଳିଦେଲେ । ସେଇ ଶିକାଗୋ ବକ୍ତୃତାବାଲା ସ୍ୱାମୀ ଆରମ୍ଭରେ ଆମେରିକାରେ ଖୁବ୍ ସୁନ୍ଦରୀ ଯୁବତୀମାନଙ୍କୁ ବ୍ରାହ୍ମବିଦ୍ୟା ଆଉ ଅଦ୍ୱୈତ ଯୋଗ ଶିଖାଉଥିଲେ । ହଠାତ୍ ତାଙ୍କର କାମଭାବ ଜାଗ୍ରତ ହେଲା । ସେ କାମ ଉପରେ ରାଗିଯାଇ ଗୋଟାଏ ଉହଉହ ଚୁଲୀ କୋଇଲା କଡ଼େଇ ଉପରେ ବସିପଡ଼ିଲା । ତାଙ୍କର ପିଣ୍ଡି ପୋଡ଼ିଗଲା । ଛ ମାସକାଳ ସେ ଯନ୍ତ୍ରଣା ଭୋଗିଲେ । ମାତ୍ର ସେଇ ଯନ୍ତ୍ରଣା ଭିତରେ ସେ ହସୁଥିଲେ କହୁ– ଥିଲେ ଚିରଦିନ ଲାଗି କାମ ଭସ୍ମୀଭୂତ । ସେଇ ଶିକାଗୋ ବକ୍ତୃତାବାଲାଙ୍କ ଫଟୋ ଦେଖି ଥରେ ମୁଁ ଉସୁମାନ୍ କାନ୍ଦି ଥିଲି । ସେ କହୁଥିଲେ ଆମେ ସବୁ କୁଆଡେ ଅମୃତସ୍ୟ ପୁତ୍ରାଃ । ଆମେ ସବୁ ସିଂହଶାବକ । ମେଷ– ପଲରେ ରହି ମେଣ୍ଢା ବୋଲି ନିଜକୁ ଭାବୁଛୁ ଆଉ ମରୁଛୁ । ମୁଁ ତାଙ୍କ କଥାରେ ବିଶ୍ୱାସ କରି ଫେର୍ କାନ୍ଦି ଉଠିଲି । ସେଇଠୁ ମୁଁ ତାଙ୍କ ଫଟୋକୁ ଚୁମା ଦେଲି । ମନେମନେ ତାଙ୍କ ପାଦକୁ ସାଉଁଳିଲି । ତାଙ୍କ ଛାତିରେ ମୁହଁ ରଖି କାନ୍ଦି କାନ୍ଦି କହିଲି ତୁମେ ମୋ ବାପା ହେବ ? ସେ କହିଲେ ମୁଁ କାମକୁ ଭସ୍ମ କରିଛି । ତା କପରି ସମ୍ଭବ ହୋଇଥାନ୍ତା ବା ହେବ ? ତୁମେ ମୋର ଭାଇ ହୁଅ ।

ମୁଁ ସେଇଠୁ ରାଗିଗଲି । କହିଲି–ମୁଁ ତ ଟିଙ୍ଗାବାବାର ଅବୈଧ ସନ୍ତାନ ମୁଁ କେମିତି ଅମୃତସ୍ୟ ପୁତ୍ରଃ ହେଲି ? ସେ କହିଲେ ତୁମେ କାହାର ସନ୍ତାନ ନୁହଁ – ବ୍ରହ୍ମର ସନ୍ତାନ ନିଜେ ବ୍ରହ୍ମ ।

ତାଙ୍କ କଥା ବିଶ୍ୱାସ କରିଯିବା ଭଲ – ମାନିଯିବା ଭଲ । ମାତ୍ର ବ୍ରହ୍ମକୁ ଫେର୍ ବୁଝିବି କପରି ? ଏ ସବୁ ବେଧ ଛୁଆଙ୍କୁ ସାଧୁମାନଙ୍କରେ ଭଣ୍ଡାଇବା କଥା । ମୁଁ ରାଗିଗଲି । କହିଲି – ତୁମେ ଯଦି ମୋ ବାବା ହବନାହିଁ – ତେବେ ମୁଁ ଜାହାନ୍ନମାକୁ ଗଲିଲି । କଣ କରୁଚ କର । ଥୁ କହି ତାଙ୍କ ଫଟୋକୁ ରାଗରେ ତଳେ କଚାଡ଼ିଦେଲି । ହସ ହସ ହୋଇ

ଆଗକୁ ଗ୍ଭଲଗଲ । ଫେର୍ କଣ ହେଲା । କେଜାଣି — କାଢ କାଢ ପଛକୁ ଫେରି ସେ ଫଟୋକୁ ଗ୍ଭତିରେ ଜାକି ଧରିଲି — କାନ୍ଦ କାନ୍ଦ କହିଲି ଠାକୁରେ ବଲ୍ଗୁଡାଛ ବାନ୍ଧ ! ତୁମେ ଭଲ — ଖୁବ୍ ଭଲ । ତୁମେ ସତ କହୁଛ ନିଜକୁ ଠକାଉନାହିଁ ମୁଁ ଜାଣେ । ପ୍ରମାଣ ଲୋଡ଼ାନାହିଁ । ମାତ୍ର ତୁମେ ଆମ ମାନଙ୍କୁ କାହିଁକି ଠକାଉଛ ? ତୁମେ ଆମ ଯନ୍ତ୍ରଣା ବୁଝିଛ ? ବୁଝିଛ — ଆମ୍ଭେମାନେ ଜାରଜ ? ଜାରଜ ହେବାର ଜ୍ୱାଳା ଓ ବକ୍ଷଭ ତୁମେ ବୁଝିଛ ? ମୁଁ ମାନୁଛି — ତୁମେ ଆମର ପରମ ମଙ୍ଗଳାକାଂକ୍ଷୀ । ମାତ୍ର ଆମର ମଙ୍ଗଳ କରିବା ନିଶାରେ ତୁମେ ଆମକୁ ମିଛକଥା କହୁଛ କାହିଁକି ? ତା ଅପେକ୍ଷା ସେଇ ଯେ ଯାହାକୁ କ୍ରୁଶରେ ଚଢ଼େଇ ବେଧକ୍ଷୁଆମାନେ ମାରିଥିଲେ — ତାଙ୍କ କଥା ବରଂ ଠିକ୍ । ସେଇ କହୁଥିଲେ—ସାରା ଦୁନିଆ ଜାରଜ— ପାପରୁ ଜନ୍ମ ହୋଇଛି । ସେମାନଙ୍କୁ ତାଙ୍କର ଅସଲ ପିତା ଜ୍ଞାତବ୍ୟ ନାହିଁ । ସେଇ ଠିକ୍ ବୁଝିଥିଲେ ଏହି ପାର୍ଥିବ ଜାରଜମାନଙ୍କର ପାପ- ସମ୍ଭୂତମାନଙ୍କର କି ଯନ୍ତ୍ରଣା ! ସେଇଥିପାଇଁ ତ ସେ କ୍ରୁଶକୁ ନିଜ ବେକରେ ଗଳାଇ ଦେଲେ । କଣ୍ଟାର ମୁକୁଟ ପିନ୍ଧିଦେଲେ-ପାଦରେ ଲୁହା କଣ୍ଟା ପିଟା ହେବା ସହିଲେ । ସହିଲେ କଣ ? ଯନ୍ତ୍ରଣାରେ ଛଟପଟ ହୋଇ ତାଙ୍କର ଅଦୃଶ୍ୟ ପିତାଙ୍କ ଉଦ୍ଦେଶ୍ୟରେ ଚିତ୍କାର କରି ଉଠିଲେ- Father ! You too forshook me atlast ! ପିତଃ ! ତୁମେ ବି ମତେ ଶେଷରେ ପରିତ୍ୟାଗ କଲ ! ହାଃ ହାଃ ହାଃ-ଈଶ୍ୱରଙ୍କ ପୁତ୍ର ବୋଲାଉଥିବା ଅବତାର ମଧ୍ୟ ଶେଷ ପର୍ଯ୍ୟନ୍ତ ପିତୃ ପରିତ୍ୟକ୍ତ ! ଏକା ସଂପୂର୍ଣ୍ଣ ଏକା । ଚରମ ଯନ୍ତ୍ରଣାବେଳରେ ବି ଏକା । କୋଉ ବାପା ପିଠିରେ ପଡ଼ିବ ନାହିଁ । କିନ୍ତୁ ଏହା ମଧ୍ୟ ସବୁଛି-ଈଶ୍ୱରଙ୍କ ଜାରଜ ପୁତ୍ର ସେହି ଆପଣା କ୍ରୁଶ ଆପେ ବହନକାରୀ ବ୍ୟକ୍ତି ଭଲ—ଖୁବ ଭଲ ।

ଆମକୁ ଅବଶ୍ୟ କ୍ରୁଶରେ ଚଢ଼ାଇ କିଏ ମାରୁନି । କାରଣ ଆମେ ନିଜକୁ ଈଶ୍ୱରପୁତ୍ର ବୋଲି ଘୋଷଣା ବା ଦାବୀ କରୁନାହୁଁ ।ଆମେ ଜାରଜ ବୋଲି ଆମକୁ ମାରିବା ଲାଗି ମଧ୍ୟ କାହାର କେୟାର୍ ନାହିଁ । କିନ୍ତୁ ଆମେ କଣ ଆମ କ୍ରୁଶଟିମାନ ଆପେ ଆପେ କାନ୍ଧରେ ବୋହି ବୋହି ଗ୍ଭଲୁନୁ ଦୁଃସହ ଯନ୍ତ୍ରଣାରେ ବାପା ବାପା ଡାକ ଡାକିକା ? କିନ୍ତୁ କୋଉ ବାବା ଆମ ପିଠିରେ ପଡ଼ିବ ? ଝିଙ୍ଗା ବାବା ? ରକ୍ଷାକର । ସେ କଥା ହୋଇ

ପାରିବ ନାହିଁ । ସେ ଟିଙ୍ଗାବାବା ଆସିବ ! ସେ ଶଳାକୁ ମୁଁ ବାବା ବୋଲି ଡାକିବି ? ଆଉ କ'ଣ ଆସିବ ଜାନ୍‌ମହେନ୍ଦି ଦାସ ? ତାକୁ ବି କାହିଁକି ମୁଁ ଡାକିବି ? ସେ କିଏ ମୋ ବାପା ଯେ ! ତେଣୁ ମୁଁ କିଛି ସିଦ୍ଧାନ୍ତ ନେଇ ନାହିଁ । କ୍ରସ୍ କୋହିବାର ସିଦ୍ଧାନ୍ତ ବି ମୁଁ ନେଇନାହିଁ । କେହି ମଧ୍ୟ ମୋତେ ସେଥିପାଇଁ ବାଧ୍ୟ କରିନାହିଁ । କାହିଁକି କାହାକୁ ମିଛରେ ଦୋଷ ଦେବି ? ଅସଲ କଥା—କ୍ରସ୍‌ଟା ବଳେ ବଳେ ମୋ କାନ୍ଧରେ ପଡ଼ିଛି ଆଉ ମତେ କଲ୍‌ଭାରି ମତେ ବଧ୍ୟଭୂମି ପର୍ଯ୍ୟନ୍ତ ବୋହି ନେଇଯାଉଛି । ମୁଁ ଯାଉଛି । ବାସ୍ ଏତିକି ତ—ଆଉ କଣ ?

ଏବେ ଲାଇଫ୍ ଉଇ୍‌ଦନ୍ ବେଲକୁ ବି ସେଇ କଥା ହେଲା । ମୁଁ ସେହି ଧୋତି ଫେରିକୁ ଘୋଡ଼ାଇ ହୋଇ ପରମ କାରୁଣିକ ଭୂପ ଠିଆ ହୋଇଥିବା ଫଟୋକୁ ଧରି ଫେର୍ କହିଲି । ପରମେଶ୍ୱର ହେ ହରିଜୀବନର ସିଦ୍ଧାନ୍ତୀ ପଣ୍ଡିତେଖ୍‌ଦାସୀ । ତୁମେ ମୋ ବାବା ହବ ? ତୁମେ ତ ସାକ୍ଷାତେ ବିଶୁଦ୍ଧ ବିଲୁଙ୍ଗା ମାନଙ୍କ ବାବା ପ୍ରାପ୍ତ ! ସେ କହିଲେ ମୁଁ ଜଗତର ପିତା । ମୁଁ ଚଡ଼ିଗଲି । କହିଲି ମୁଁ ସେ ଫିସାଦାରେ ପଡ଼ିବି ନାହିଁ । ମୁଁ କିଏ ? ଜଗତ କିଏ ? ଜଗତ ସଙ୍ଗେ ମୋର କି ଯାଏ ଆସେ ? ଜଗତ ରହିଲେ କେତେ ? ଗଲେ କେତେ ? ତୁମେ ମୋତେ ଭଲ ବିଶୁଦ୍ଧ । ବାପା ପ୍ରାପ୍ତ ବିଶୁଦ୍ଧ । ତୁମରି ପୁଅ ହେଲେ ମୁଁ ଆଉ ଗୋଲମରିଚ ଖୋବାଇବି ନାହିଁ, ନିଜ ଇଚ୍ଛାରେ ଚାଲିବି ନାହିଁ ତୁମରି ଇଚ୍ଛାରେ ଚାଲିବି । ତୁମେ ଯଦି କହିବ ପାଲଟନ ! ମୁଁ ଅସିବା ଯାଏ ଜାହାଜର ଏଇ ଅଂଶରେ ଠିଆ ହୋଇଥା; ମୁଁ ନକହିଲେ ଏଠୁ ପାଦେ ବି ଘୁଞ୍ଚିବୁ ନାହିଁ ତା ହେଲେ ଦେଖିବ ମୁଁ ସେଇଠି ଠିଆ ହୋଇଥିବି । ତା' ପରେ ତୁମେ ମତେ ସେଠି ଛାଡ଼ି ତୁମରି ଜଗତ କାର୍ଯ୍ୟ ବୁଝିବା ଲାଗି ଚାଲିଯିବ – ସେଇଠୁ ଜାହାଜରେ ଲାଗିବ ନିଆଁ – ମୋ ପାଖକୁ ନିଆଁ ଚମକ ଆସିବ । କ୍ରମେ ଲହଲହ ଜିଭମାନ ବଢ଼େଇ ନିଆଁ ମୋତେ ଚାଟି ଦେବାକୁ ମାଡ଼ି ଆସିବ । ମୁଁ ଡରିଯିବି—ଅତର୍କିରେ ଚିତ୍କାର କରିଉଠିବି ବାପା ବାପା, ମୋ ଗୋଡ଼ପଟେ ନିଆଁ ଲାଗିଗଲାଣି । ମତେ ଅନୁମତି ଦିଅ । ମୁଁ ଏଠୁ ପଳାଇଯାଏ । ତୁମେ କିନ୍ତୁ ଜଗତର ଆଉ କୋଉ କଣରେ ଗୋଟାଏ ବେଧକୁଆର ବଣବାଉଳା ମେଣ୍ଢାକୁ ଆଗ ଦାୟିତ୍ୱ ତୁଲାଉଥିବ । ମୋ ଡାକକୁ ଶୁଣି ପାରିବନି । ମୋର ପ୍ରାଣାନ୍ତକ

ବିପଦ କଥା ଜାଣିପାରିବନି । ତୁମେ ଜାଣିପାରିବନି ଯେ ତୁମର ପ୍ରାଣର ପୁଅ ଆଜ୍ଞାଧୀନ ଫାଲ୍‌କନ୍ ଅଶେଷ ଭାବେ ଜାହାଜ ଉପରେ ପୋଡ଼ି ମରିଯାଉଛି ପଳେ ପଳେ—ଆଜି ତୁମକୁ ଡାକୁଛି 'ବାପା' 'ବାପା' ଛକଳରେ । ତୁମଠୁ ଉତ୍ତର ଆସୁନଥିବ । ମୁଁ ସେଇଠି ଠିଆହୋଇ ନିଆଁରେ ପଳେପଳେ ଦଗ୍‌ଧ ହୋଇ ମରୁଥିବ । ଖୁସିରେ ମରୁଥିବ ବାପା ! ଖୁସିରେ ମରୁଥିବ । ସେ ଯନ୍ତ୍ରଣା ମୋତେ ଖୁସିଦେବ—ଆନନ୍ଦ ଦବ-ପୂର୍ତ୍ତି ଦବ । ନିଆଁରେ ପୋଡ଼ିପୋଡ଼ି ମରୁଥିବ—କାନ୍ଦୁଥିବ—ଚିତ୍କାର ଛାଡ଼ୁଥିବ-ମାତ୍ର ପିତୃଆଜ୍ଞାକୁ ଧରି ମରୁଥିବ । ମୋ ପିତାର ଅନୁମତି ପ୍ରାର୍ଥନା କରୁଥିବ । ମରୁଥିବ । ତୁମେ ମୋ ମନ୍ଦାଏ ଆସିବ ନାହିଁ । ··· କିନ୍ତୁ ସବୁ ଶେଷରେ ଯାଇ ଆସିବ । ଶେଷରେ ଆସି ଦେଖିବ—ସାରା-ଜାହାଜ ପୋଡ଼ି ଯାଇଛି—ତୁମର ଆଜ୍ଞାଧୀନ ପ୍ରାଣର ପୁଅ ଫାଲ୍‌କନ୍ ତା' ସାଙ୍ଗରେ ମିଶି ପାଉଁଶ ହୋଇଯାଇଛି । ସ୍ୱରପଟର ଲୋକେ ସାକ୍ଷ ଦେବେ—ତୁମ ସ୍ୱରପଟେ ଯେଉଁ ମହା ଉତ୍ସାହ ଉଲ୍ଲାସରେ କହିବେ—

ଫାଲ୍‌କନ୍ ଶେଷ ପର୍ଯ୍ୟନ୍ତ ତୁମକୁ ବାପା ବାପା ବୋଲି ଡାକୁଥିଲା—ଆମେ ସମସ୍ତେ ସମୁଦ୍ର କୂଳେ ଠିଆହୋଇ ଶୁଣିଛୁ ତାର ମରଣାନ୍ତକ ଚିତ୍କାର—ଶେଷରେ ସେ କାନ୍ଦ କାନ୍ଦ ନିଆଁ ଭିତରେ ଡେଇଁ ଡେଇଁ ଉଡ଼ି ଛାଡ଼ୁଥିଲା—ବାପା ! ଶେଷରେ ତୁମେ ବି ମତେ ଏ ବେଳାରେ ଛାଡ଼ି ଚାଲିଗଲ ! ···ଆମେ ସବୁ ତାକୁ ଡାକିଲୁ । ସେ ଆମ କଥା ଶୁଣିଲା ନାହିଁ—ଖାଲି ବାପା ବାପା ହେଲା । ସେ ଜିଦ୍‌ଖୋର ଟୋକା, ଶେଷରେ ପିତୃଭକ୍ତ ହୋଇ ମଲା । ଧନ୍ୟ ଧନ୍ୟରେ ଫେଲ୍‌କନ୍ ! ଧନ୍ୟ ତୁମେ ତାର ପିତା !

ତୁମେ ସେଇଠି ସେଠି ଠିଆ ହେବ । ହେଇ ଯେମିତି ଏ ଫଟୋରେ ଧୋତିର ଫେରଟିକୁ କାନ୍ଧରେ ପକାଇ ବିଷର୍ଣ୍ଣ କରୁଣ ଦୃଷ୍ଟିରେ ପରମ ଧୀନତା ଓ ପରମ ଐଶ୍ୱର୍ଯ୍ୟକୁ ପରମ କରୁଣାରେ ବଗଳିତ କରି ପୂର୍ବଦିଗ ଶୀର୍ଣ୍ଣ ପିତାଟିଏ ଭଳି ପରମ ଗୌରବ ଓ ଉଦାର ସାହସ ଧରି ଠିଆ ହୋଇଛ । ନିଜେ କାନ୍ଦୁନ—କିନ୍ତୁ ସମସ୍ତଙ୍କୁ କନ୍ଦାଉଛ ! ହେ ଦିବ୍ୟ ଜୀବନର ଲେଖକ ! ପଣ୍ଡିଚେରୀ ବାସୀ ! ଏବେ କୁହ ! ତୁମେ ମୋର ବାପା ହେବ ? ମୁଁ ତରିଯାନ୍ତି । ହାୟ ! ମୋତେ ଏ ସୌଭାଗ୍ୟ କିଏ

ଦେବ ? ମୋର ମନେ ହେଉ—ମୋର ଏହି ବିଶ୍ୱସ୍ତବାର ପ୍ରଶ୍ନରେ ତୁମେ ସତେକ "ହଁ" କହିଲ । ମୁଁ ତୁମକୁ କାନ୍ଦକାନ୍ଦ ବାପା ବୋଲି ଡାକି ଲାଗିଲି, ବାପା, ବାପା ବାପା ଶହେଥର, ଦୁଇଶହ ଥର, ପାଞ୍ଚଶ ଥର । କହିବାକୁ ମୋ ମୁହଁରେ ଯୋଡ଼ାଇ ଧରି କାନ୍ଦ ଉଠିଲି । ମୋର ଅନୁଭବ ହେଉଥିଲା ଯେ ମୁଁ ମୋର ପ୍ରକୃତ ବାପାଙ୍କ କାନ୍ଧରେ ମୁହଁଗୁଞ୍ଜି କାନ୍ଦୁଛି । ଆଜି ସ୍ୱପ୍ନ ହେବାକୁ ଆରମ୍ଭ କରୁଛି । ମୁଁ କଣ ଧ୍ୟାନସ୍ଥ ହୋଇଗଲି କି ? କିନ୍ତୁ ମୋର ସେ ଧ୍ୟାନ ବେଶୀ ସମୟ ରହିଲା ନାହିଁ । କିଏ ପେଟର ମୋ ପଛରେ ଠିଆହୋଇ ମୋ କାନ ଧରି ଉଠାଇ ଦେଲା । ନାଲି ଆଖିଆ ଆଜ ବଡ଼ଦାଢ଼ି ଦାଢ଼ୀବାଲା ଖୁରମୁହାଁ ଲୋକଟା ମୋ କାନ ଧରି ରାଗିକରି କହିଲା—କବେ ହାରାମ୍ ଜାଦା ! ମୁଁ କିଏ ଜାଣିଛୁ ? ମୁଁ କହିଲି—ତୁ ଟିଙ୍ଗା ବାବା ! ମୁଁ ତୋ ବାପା ବୋଲି ଜାଣିନୁ କିରେ ବେଧେଇ ପୁଅ ! ମୁଁ ତା' ଗାଲରେ ଗୋଟାଏ ଚଟକଣା ବସାଇ କହିଲି—ସ୍କେପ୍‌ବେ !

ଏହି ଚକ୍କାରଟା ମୋ ଅଜାଣତରେ ମୋ ପାଟିରୁ ବାହାରି ଯାଇ ଲାଇବ୍ରେରୀର ନିସ୍ତବ୍ଧତାକୁ ଘଡ଼ଘଡ଼ କରିଦେଲା ! ସମସ୍ତେ ଚମକି ପଡ଼ି ମତେ ଚାହିଁଲେ । ମୁଁ ରାଗରେ ବହିଟାକୁ ସେଲ୍‌ଫ ଭିତରେ ଫୋପାଡ଼ି ଦେଇ ଘରୁ ବାହାରି ଆସିଲି । ବାଟସାକ ରକ୍ତ ଗୁଡ଼ିଲି ଝୋବାଉଥାଏ । ଏହି ସମୟରେ ଦେଖିଲି—କୁମାରୀ ଜୁଲି ମିଶ୍ର ମୋ ପ୍ରଠେ ଆସି ମୋ କଡ଼ ଧରିଲଣି । ଫେଲ୍‌କନ୍ ! କଣ ସିଦ୍ଧାନ୍ତ କଲ ?

ମୋ ଆଖି ତଥାପି ଲୁହରେ ପୁରିଥିଲା । ନାଲି ପଡ଼ିଥିଲା । ମୋ ପାକସ୍ଥଳୀରେ କଷ୍ଟର ଯନ୍ତ୍ରଣା ହେଉଥିଲା । ଜୁଲି ମିଶ୍ର ମୋଠୁ ଉତ୍ତର ନଶୁଣି ମୋ ମୁହଁକୁ ଚାହିଁଲା । ସମ୍ପୃକ୍ତ ସ୍ୱରରେ କହିଲା—ଏ କଣ ? ଆଖିରେ ଲୁହ ଯେ !

ମୁଁ କହିଲି—ଲୁହ ନୁହଁ ରକ୍ତ । ଜୁଲି କହିଲା—କାହା ପାଇଁ ଏହି ରକ୍ତକାନ୍ଦଣା ? ମୁଁ କହିଲି—ଦୁନିଆଁ ସାକର ଦୋଷ୍ଟରୁଣୀ ମା'ମାନଙ୍କର ଜାରଜ ସନ୍ତାନଙ୍କ ପାଇଁ । ଅସାଧାରଣ ମନସ୍ତତ୍ତ୍ୱର ଗବେଷିକା ଜୁଲି କହିଲା—ତୁମର ଏଇଟା ଗୋଟାଏ ଅବ୍‌ସେସନ୍ ହୋଇଗଲାଣି । ବର୍ତ୍ତମାନ ଏହା ପୁଣି ଗୋଟାଏ ପର୍ଯ୍ୟାୟର ମାନସିକ ବିକୃତିକୁ ଆସିଗଲାଣି । ଏହାର ପର ଅବସ୍ଥା ବଦ୍ଧ ପାଗଳାମୀ । ମୁଁ

କହିଲି – ତାହା ଯଦି ହୋଇଥାଏ—ତେବେ ଉପାୟ କଣ ? ସେ କହିଲା—ଗୋଟାଏ ସିଦ୍ଧାନ୍ତ ନିଅ । ମୁଁ କହିଲି—କି ସିଦ୍ଧାନ୍ତ ? ସେ କହିଲା—ପ୍ରେମର ସିଦ୍ଧାନ୍ତ । ମୁଁ ଚମକି ପଡ଼ିଲି—ପ୍ରେମ ? ସେ କଣଗୋ ପଦାର୍ଥ ? ସେ କହିଲା – ଅକ୍ଷୟ ଅବ୍ୟୟ ନିତ୍ୟ ପଦାର୍ଥ ! ମୁଁ କହିଲି—ତାକୁ ନେଇ କଣ କରିବ ? ସେଇଠୁ ଜ୍ୟୋତ୍ସ୍ନା ମିଶ୍ର ମୋ ହାତକୁ ଧରିପକାଇ କହିଲା ଦୋସ୍ୱରୁଣୀ ମାଆମାନଙ୍କ ଢଙ୍ଗରେ—

ତୁମକୁ ବହୁବାର କହିଛି ଫେଲ୍ କନ ! ବେଶୀ ଗୁଡ଼ାଏ ଏଣୁ ତେଣୁ ପଢ଼ନାହିଁ । ବେଶୀଗୁଡ଼ାଏ ଚିନ୍ତା କରନାହିଁ ଏଣୁତେଣୁ । ସବୁ ଜଟିଳ ଓ ଅଜ୍ଞେୟ ରହସ୍ୟମାନଙ୍କ ସମ୍ବନ୍ଧେ ମୁଣ୍ଡ ଖେଳାଅ ନାହିଁ ବେଶୀ । ଆଉ ଶେଷରେ ନିଜ ବିଷୟରେ ଏତେ ଅଧିକ ସଚେତନ ହୁଅନାହିଁ । ତୁମେ କେବଳ ଭଲପାଅ । ହେଇ ! ମୋର ଭଲ ପାଇବାକୁ ସ୍ୱୀକାର କର । ଫେଲ୍ କନ୍ ! ତୁମକୁ ବିବାହ କରିବାଲାଗି ମୁଁ ସିଦ୍ଧାନ୍ତ ନେଇସାରିଛି । ଏଇ ଅସାଧାରଣ ମନ ନେଇ ସ୍ୱାମୀ ହିସାବରେ ତୁମେ ମୋତେ ସୁଖୀ କରିପାରିବ ନାହିଁ । ମାତ୍ର ମୁଁ ସୁଖୀ ହେବାକୁ ଚାହେଁନା । ମୁଁ ପ୍ରେମ କରିବାକୁ ଚାହେଁ ।

ମୁଁ କହିଲି—ବେଶ୍ ତ ! କିଏ ତୁମକୁ ସେକଥା କରିବାକୁ ମନା କରୁଛି ? ତୁମର ସିଦ୍ଧାନ୍ତ ତୁମର । ମତେ କାହିଁ ସେଥିରେ ଜଡ଼ିତ କରୁଛ ? ଜ୍ୟୋତ୍ସ୍ନା କହିଲା – ତୁମେ ନା କହୁଥିଲ ସେଦିନ, ଯୌବନ ଦିନ ମୁଁ ତୁମକୁ ମୋର ସର୍ବସ୍ୱ ସମର୍ପି ଦେଲି – କହୁଥିଲ ନା ? ଜ୍ୟୋତ୍ସ୍ନା ! ମୁଁ ତୁମକୁ ଭଲ ପାଏ । ତୁମ ବିନା ମୋର ଜୀବନ ନିରର୍ଥକ ।

ମୁଁ କହିଲି—ଜ୍ୟୋତ୍ସ୍ନା ! ତୁମେ ଗୋଟିଏ ସ୍ତ୍ରୀଲୋକ । ସ୍ତ୍ରୀ ଲୋକ ହେବା ମନ୍ଦ ନୁହେଁ । ମାତ୍ର ଏତେ ବେଶୀ ସ୍ତ୍ରୀ ଲୋକ ହେଲେ ଅନ୍ୟପାଇଁ ଖରାପ । ମାନେ ମୋ ପାଇଁ ଓ ତୁମ ପାଇଁ ଖରାପ । କେବଳ ତୁମ ବିନା ମୋ ଜୀବନ ନିରର୍ଥକ ନୁହେଁ—ମୋ ଜୀବନ ଏମିତି ବି ନିରର୍ଥକ । ତେବେ ମୁଁ ତୁମକୁ ଭଲ ପାଏ ଓ୍ୱାନ୍ କ୍ଲାସରେ ଅନାଡ଼ି ହାତର ପିଲା ଯେମିତି ତାର ରବରଟିକୁ ଭଲପାଏ । ସେ ରବର ବଙ୍କା ଡ଼ଙ୍କା ଗାରଗୁଡ଼ାକୁ ଲିଭାଇ ଦିଏ – ମାତ୍ର ସିଧା ଗାର ପକାଇବାକୁ ପ୍ରତିଶ୍ରୁତି ଦେଇପାରେନା । ମୁଁ ବର୍ତ୍ତମାନ ବି କହୁଛି – ମୁଁ ତୁମକୁ ଭଲପାଏ । ମୁଁ ମିଛ ଘୃଣା କରେ ।

ତା’ହେଲେ କାଳ୍ପନିକ ସିଦ୍ଧାନ୍ତ ନଉନ ?

ମୁଁ କହିଲି—ପ୍ରେମରେ ପଡ଼ିବା କଣ ଗୋଟାଏ ସିଦ୍ଧାନ୍ତ ? ମୁଁ ଯେ ତୁମକୁ ଭଲପାଏ—ମଧ୍ୟ କଣ ଗୋଟାଏ ସିଦ୍ଧାନ୍ତ ?

ଆଜି ତେବେ କଣ ?

ଏହା ଗୋଟିଏ ସ୍ୱୀକୃତିଠାରୁ ବେଶୀ କିଛି ନୁହେଁ । ଏହା ଗୋଟିଏ ବାକ୍ୟାଳଙ୍କାର ବି ହୋଇପାରେ । କିମ୍ବା ସଂମ୍ପର୍କର ଗୋଟାଏ ବିସ୍ମୃତ ବିଶେଷଣ ବି ହୋଇପାରେ । ତୁମେ ଜାଣ-ବାକ୍ୟଟି ଉଚ୍ଚରିତ ହୋଇଗଲେ—ବା ବିଂସ୍ପାପଦପାକେ ମାଡ଼ିଗଲେ ବାକ୍ୟଟି ସରିଯାଏ । ମାନେ ତାର ଅର୍ଥ ମଧ୍ୟ ସରିଯାଏ ଏବଂ ବାକ୍ୟ ଯେ ଗୋଟାଏ ସିଦ୍ଧାନ୍ତ ଏହା ଅତି ମାତ୍ରାର ସ୍ତ୍ରୀ ଲୋକମାନେ ବିନା ବିସ୍ମୟରେ ବୁଝିଯାନ୍ତି ମନକୁ ମନ । ଆଜି ମଧ୍ୟ ବୁଝନ୍ତି ସେଇମାନେ ଯେଉଁମାନଙ୍କର ସତକୁସତ ବାପା ଅଛନ୍ତି ଓ ସେମାନେ ସେ ବାପାକୁ ଜାଣନ୍ତି ଓ ମାନନ୍ତି ।

ଜୁଲି କହିଲା କାନ୍ଦ କାନ୍ଦ ହୋଇ – ତା’ହେଲେ କଣ ଏଇଥିପାଇଁ ମୁଁ ତୁମକୁ ମୋର ସର୍ବସ୍ୱ ସମର୍ପି ଦେଇଥିଲି !

ମୁଁ କହିଲି—ଜୁଲି ! ଏ ପ୍ରଶ୍ନ ମଧ୍ୟ ଅତି ମାତ୍ରାରେ ସ୍ତ୍ରୀ ଲୋକ ସୁଲଭ ପ୍ରଶ୍ନ । କଣ ତୁମେ ମୋତେ ସମର୍ପି ଦେଇଛ ? ତୁମେ ଆଗ ତୁମ ସର୍ବସ୍ୱ ସମ୍ବନ୍ଧେ କିଛି ଜାଣ ?

ଜୁଲି ଉତ୍ତେଜିତ ହୋଇ କହିଲା—ଜାଣେନା ? ମୋର ନାରୀ ଜୀବନର ସର୍ବସ୍ୱ ମୁଁ ତୁମକୁ ସମର୍ପି ଦେଇନ ?

ମୁଁ ଭିତରର ବିରକ୍ତିକୁ ଚୁପି ଶାନ୍ତ ଭାବେ କହିଲି—ଜୁଲି ! ମୋର ସୁନା ! ମୁଁ ତୁମକୁ କିପରି ଭାବେ ବୁଝାଇ ଦେବି ଯେ ତୁମର ନାରୀ ଜୀବନର ସର୍ବସ୍ୱ ତୁମର ନୁହେଁ ବୋଲି ? ତୁମର ସର୍ବସ୍ୱ ତୁମକୁ ଜଣାନାହିଁ । ତାହା ମଧ୍ୟ ଆପାତତଃ ତୁମ ହାତରେ ନାହିଁ । ତୁମେ ମଧ୍ୟ ତାକୁ ଏତେ ସହଜରେ କାହାକୁ ହସ୍ତାନ୍ତର କରିପାରନା । ମୋତେ ମଧ୍ୟ ଦେଇନାହଁ ।

ଜୁଲି କାନ୍ଦ କାନ୍ଦ ହୋଇ କହିଲା—ଫେଲ୍‌କନ୍ ! ତୁମେ ଗୋଟାଏ ପାଷାଣ୍ଡ—ବାଷ୍ଟାର୍ଡ଼ ।

ମୁଁ ଜୁଲିର କାନ୍ଧରେ ହାତ ପକାଇ ତାର ବାଳ ସାଉଁଳି ଦେଇ କହିଲି—ତଥାସ୍ତୁ । ଜୁଲି ! ଆଜି ବୃଥା ଚେଁ ଚେଁ କରନାହିଁ । ଯାଅ

ଖୁସୀ ମନରେ ଚାଲିଯାଅ । ରାଗିବା ବେଳୁ—ତୁମେ ଏବେ ମୋ ବଶସ୍ଥରେ ସତ୍ୟ କହିଲେ ବୋଲି ଭାବୁଛି । ସର୍ବସ୍ୱ ସମର୍ପି ଦେବା କଥା ଓ ସିଦ୍ଧାନ୍ତ ନେବା କଥା ଖାଲି ପ୍ରେମରେ କହୁଥିଲି । ତେଣୁ ତାହା ମିଛ ।

ଜୁଲି ମୋ ଠାରୁ ନିଜକୁ ମୁକ୍ତ କରିଦେଇ କହିଲା—ମୁଁ ଜାଣେ—ତୁମର ମତଲବ । ତୁମେ ମିସେସ୍ ମିତ୍ରଆକୁ ବାଦ ଦେବାର ସିଦ୍ଧାନ୍ତ ନେଇଛ । ଜାଣ ମିତ୍ରଆ ତୁମର ମା ବୟସର ହୋଇପାରେ ?

ମୁଁ କହିଲି—ଜୁଲି ! କାହିଁକି ବୃଥା ଚେଁ ଚେଁ ହେଉଛ ? ମିତ୍ରଆ ତୁମଠାରୁ ଗୋଟିଏ ଦୃଷ୍ଟିରୁ ଭଲ । କାରଣ ସେ ଚେଁ ଚେଁ ହୁଏ ନାହିଁ । ସିଦ୍ଧାନ୍ତ ଦାବୀ କରେ ନାହିଁ । ମା—ମା କଣ କହୁଛ ? ମା' ଯାହା ମାଇପ ତାହା । ପ୍ରଭେଦ ଭିତରେ ମା' କହେ – ଜନ୍ମ କରିଛି—ମାଇପ କହେ—ଜନ୍ମ କରିବ । ଅସଲ କଥା ! ଜନ୍ମ ପ୍ରସଙ୍ଗ କାହା ହାତରେ ନାହିଁ । ଜନ୍ମ ପ୍ରସଙ୍ଗ ବାପା ହାତରେ । ସେ ବାପା କୋଉଠି ଅଛି କେଜାଣି ? ଯାଅ ଯାଅ ମୁଁ ମୋ ବାପାଙ୍କୁ ଖୋଜି ବାହାରିଛି । ଯୋଉଦିନ ମୋର ବାପାଙ୍କୁ ପାଇବ ପ୍ରତିଶ୍ରୁତି ଦେଉଛି—ସେହିଦିନ ବାପାଙ୍କ ଠାରୁ ଅନୁମତି ନେଇ ତୁମ ପାଖକୁ ଆସିବ—କହିବ, ଜୁଲି ! ବାପା ଅନୁମତି ଦେଇଛନ୍ତି । ଏଥର ସିଦ୍ଧାନ୍ତ ନେବା—ଏଥର ସର୍ବସ୍ୱ ଦିଆ ନିଆ ହେବା । ଦେଖ ଜୁଲି ! ତା' ପୂର୍ବରୁ ଆଉ ସିଦ୍ଧାନ୍ତ ଫିଦ୍ଧାନ୍ତ ସର୍ବସ୍ୱ ଫର୍ବସ୍ୱ କଥା କହି ବୃଥା ଚେଁ ଚେଁ କାଉଁକାଉଁ ହୁଅନାହିଁ । ସେ ସମୟ ଆସିନି । ଯାଅ-ତୁମେ ମଧ୍ୟ ତୁମ ବାପାଙ୍କୁ ଖୋଜ—ପାଅ—ଆଉ ଅନୁମତି ନେଇ ଆସ । ଦେଖ ଭାଗ୍ୟରେ କଣ ଅଛି ।

ଜୁଲି ଆଉ କିଛି କହିଲା ନାହିଁ । ସେ ଧାଇଁଲା ସାପୁଣୀ ପରି ଫଁ ଫଁ ହେଉଥିଲା । ହାତରେ ଧରିଥିଲା ଗୋଟାଏ ଚମ୍ପା ଫୁଲର ତୋଡ଼ା । ଭାବିଥିଲା ବୋଧେ ମତେ ଉପହାର ଦେବ । ମାତ୍ର ତାହା ଦେଲା ନାହିଁ । ରାଗରେ ତୋଡ଼ାଟାକୁ ମୋର ଆଗ ରାସ୍ତାକୁ ଫୋପାଡ଼ି ଦେଲା । ମୁଁ ହସି ଦେଲି—ଭାବିଲି—ଏ କୁଆଡ଼େ ମୋତେ ସର୍ବସ୍ୱ ସମର୍ପି ଦେଇଥିଲା ! ହାରାମଜାଦୀ ! ତୁଚ୍ଛା ମାଇକିନିଆଟେ ! ଜୁଲି ମିଶ୍ର ନୁହଁ ।

ଜୁଲି ମିଶ୍ର ଚାଲିଗଲା । ଘୋର ଅନ୍ଧାର ଭିତରେ ପଛର ନାଲି ଆଲୁଅ ଦେଖାଇ ମଟରଟି ଚାଲିଯିବା ଭଳି ।

ତେଣୁ ହିଷ୍ଟାନ୍ତ ନେବା କଥା ମିଛ । ଏଇ ସିଦ୍ଧ ଗୁଂଫା ଖୋଜିବା ଓ ତା' ଭିତରେ ମାଳା ଗଡ଼ାଇବା କାମ ମଧ୍ୟ ମୋଟେ ସିଦ୍ଧାନ୍ତ ନୁହେଁ । ହୋଇପାରେ ମୁଁ ସେ ଗୁଂଫା ଭିତରେ ମୋ ବାପାଙ୍କୁ ପାଇଯିବି । କିଏ କହିବ ? କିନ୍ତୁ କାହିଁ ସେ ସିଦ୍ଧ ଗୁଂଫା ? ତା ମୁହଁରେ କଙ୍କାଳୀ ବାବାର ମୂର୍ତ୍ତି ଅଛି । ପୁଣି ତାକୁ ଘେରି ରହିଛି ଗୋଟାଏ ବଙ୍କା ବରୁଣ ଗଛ ।



ମୁଁ ଗୁଂଫା ଖୋଜି ବୁଲିଲି ।

ସେତେବେଳକୁ ସାରା ପାହାଡ଼ଟା ଉପରେ ମୁଁ ଏକା । ଖଣ୍ଡଗିରି ଅଞ୍ଚଳ ନିର୍ଜନ-ନୀରବ ହୋଇ ଉଠିଲାଣି । ସନ୍ଧ୍ୟା ଘୋଟି ଆସିଲାଣି ବଣ ଭିତରୁ ପାହାଡ଼ ଆଡ଼କୁ । ମିସେସ୍ ମିତ୍ତଲ ଆଉ ତାଙ୍କ ବସ କେତେବେଳୁ ଗଲାଣି ଘର । ପାହାଡ଼ର ତଳ ଦେଶରେ ମଧ୍ୟ ଆଉ ଗହଳି ନାହିଁ । ବର୍ତ୍ତମାନ ଏଇ ଐତିହାସିକ ପାହାଡ଼ଟା—ତାର ଭଙ୍ଗାରୁଜା ଗୁଂଫାମାନ—। କିଛି ଅକ୍ଷତ ଶିଳାଲିପି—ପାହାଡ଼କୁ ଲାଗି ଘଞ୍ଚ ଘଞ୍ଚ ବଣ ବୁଦା । ଏମାନେ ଏ ଗୁଂଫାମାନଙ୍କୁ ସାଇତି ରଖିଛନ୍ତି । ଏମାନେ ଆଶାକରନ୍ତି—ଏଇ ସବୁ ଗୁଂଫାମାନଙ୍କ ଭିତରେ ଚାରଦିନ ଅବାଗିଆ ମଣିଷମାନେ ପଶିବେ । ଗଞ୍ଜେଇ ଖାଇବେ । ମାଳା ଜପିବେ । ନହେଲେ ମିସେସ୍ ଫିସେସ୍ ମିତ୍ତଲ ଫିତ୍ତଲ-ମାନଙ୍କୁ ଧରି ଉତ୍ତିସୁଖସାରେ ଗତମଭୁସାରେ ଭଲିଆ କରିବେ । ଫେର୍ ଅବଦନ୍ଧ ହେବେ – ବକଶ୍ରୀ ହେବେ – ଏକୁଟିଆ ହେବେ । ସେଇଠୁ ଗୁଂଫା ଭିତରେ ପଶି ସମାଧିସ୍ଥ ହେବେ – ନହେଲେ ଗୁଂଫା ବାହାରେ ଯେଉଁମାନେ ଯେଉଁଠାର ବାପାମାନଙ୍କୁ ଡାକୁଥିବେ—କାନ୍ଦୁଣୁ ମାନ୍ଦୁଣୁ ହେଉଥିବେ । ଉତ୍ତମ ବ୍ୟବସ୍ଥା । କିନ୍ତୁ ଉତ୍ତମ ସିଦ୍ଧାନ୍ତ ନୁହେଁ । କାରଣ ପିମ୍ପୁଡ଼ିମାନେ ଛାଡ଼ିବେ ନାହିଁ—ଜହାମାନେ ଛାଡ଼ିବେ ନାହିଁ । କୁକୁରମାନେ, ଭାଲୁଆମାନେ ବଣ କଟାସମାନେ, ମୂଷାମାନେ, ଗଧିଆମାନେ, ଗୋଧିମାନେ ଆସିବେ । ସବୁ ଖୁଣ୍ଟିଚୁଣ୍ଟି ସଫା କରିଦେବେ । କପୋତମାନେ ବାହୁନିବେ । ପେଚାମାନେ କୁହୁଳେଇବେ ଉବ ଉବ ଆଖିରେ ଅନ୍ଧାର ଭିତରେ କାହାକୁ ଦେଖି ଅସ୍ୱସ୍ତି ବୋଧ କଲାପରି । ମହାକାଳ ଆଁ ଭିତରେ ସମସ୍ତେ ନିର୍ବିଘ୍ନପୂର୍ବକ ପଶିବେ । କୋଉ ବାପ କୋଉଠି ଥିବ ଯେ ଆଉ ରଖିବ ? ପିଠିରେ ପଡ଼ିବେ ?

ମହାକାଳ କାହିଁ? ହେଇ ସେଠି ଗୋଧିଟାଏ ଓଦା ମାଟି ଓ ପଥ ଉପରେ ପେଟେଇ ପେଟେଇ ଘୁସୁରି ଘୁସୁରି ବୁଲୁଛି । ହେଇ ସେଠି ହଳେ କୁଣ୍ଢକୁଣ୍ଢି ଲଗାଲଗି ହୋଇ ଆନନ୍ଦ କରିସାରି ବର୍ତ୍ତମାନ ଛନ୍ଦାଛନ୍ଦ ହେବାର ଯନ୍ତ୍ରଣା ଭୋଗୁଛନ୍ତି । ହେଇ ଦେଖ ପିମ୍ପୁଡ଼ିଙ୍କ ଧାର—ଜନ୍ଦାଙ୍କ ଧାର – ଜନ୍ଦାଙ୍କମନ୍ଦା – ସାଲୁବାଲୁ ଖାଆନ୍ତି ଯନ୍ତ୍ରଣା—ଏକୁଟିଆ ଘୁସୁରି ଘୁସୁରି ବୁଲିବାର – ମନ୍ଦାମନ୍ଦା ସାଲୁବାଲୁ ହେବାର—ଧାଡ଼ି ଧାଡ଼ି ତୀର୍ଥ ଯାତ୍ରା କରିବାର ନିର୍ମମ ଯନ୍ତ୍ରଣା ।

ଏହି ଯନ୍ତ୍ରଣାର ସାର । ମୁଁ ବା ଏଠିକି ଏ ଅବେଳରେ ଆଜି ଆସିଲି କାହିଁକି ? ତାର କାରଣ ମୋର ସାନଭାଇ ଝାଡ଼ୁମଙ୍ଗଳ ମୋର ମୁଣ୍ଡଟାକୁ ଏମିତି ନଷ୍ଟ କରିଦେଲା । ସେ ମତେ ଆଜି ଘରୁ ବାହାର କରିଦେଲା । ଏହା ପୂର୍ବରୁ ସେ ମୋ ସାନଭଉଣୀକୁ ବାହାଦେବା ଛଳରେ ଘରୁ ବାହାର କରିଦେଇଥିଲା । ସେ ବର୍ତ୍ତମାନ ଗୋଟାଏ ପୁରୁଷ ହାତରେ ପଡ଼ି କଦର୍ଥନା ଭୋଗୁଛି । ମୁଁ ପ୍ରଥମେ ତାକୁ ବାହାଦବାକୁ ମନା କରୁଥିଲି । ମୁଁ କହୁଥିଲି—ବଳଙ୍କିତା ବାହା ନ ହେଉ । ସେ ଯୋଉଠି ଅଛି ସେଠି ଥାଉ । ଯାହା ଖୁସି ତାହା କରୁ । କାହା ସାଙ୍ଗରେ ଛନ୍ଦ ମନ୍ଦ ନହେଉ । ଛନ୍ଦ ମନ୍ଦ ହେଲେ ଭଲ । ମାତ୍ର ଭାରି କଷ୍ଟ । ସେ ପାରିବ ନାହିଁ । ଯାହା ସଙ୍ଗେ ଛନ୍ଦ ହେବ ସେ ବି ପାରିବ ନାହିଁ । ସେଇଆ ହିଁ ହେଲାଛି । ବଳଙ୍କିତାର ଟୋକାଟା ଛୁଆ ହେଲେଣି । ମାତ୍ର ସେ କାନ୍ଦୁଛି ସବୁବେଳେ । କହୁଛି—ତାର ସ୍ୱାମୀ ଗୋଟାଏ ଜନ୍ତୁ । ମୁଁ ମୋ ସାନଭଉଣୀ ପାଇଁ କାନ୍ଦୁଛି । ମାତ୍ର ଝାଡ଼ୁମଙ୍ଗଳର କୋଉ କଥାକୁ ଖାତିର ନାହିଁ । ସେ କହେ—ତୁମେ ଦୁଇ ଭାଇ ଭଉଣୀ ବୁଡ଼୍ବକମାନଙ୍କ ବୋକ୍ସବୁହା । ତୁମମାନଙ୍କୁ ବଞ୍ଚିବାର କଳା କି ବିଜ୍ଞାନ ଜଣା ନାହିଁ । ତୁମ ଦୁହିଁଙ୍କ ମୁଣ୍ଡ ଖରାପ—ସେ ସ୍ୱାମୀ ଘରେ ଥାଇ ସ୍ୱାମୀକୁ ଖୋଜୁଛି – ତୁମେ ପିତୃ ଗୃହରେ ଥାଇ ପିତାଙ୍କୁ ଖୋଜୁଛ । ତୁମ ଲଲାଟରେ ଅସୁଖ । କିଏ କଣ କରି ପାରିବ ?

ଝାଡ଼ୁମଙ୍ଗଳ ଗୋଟାଏ ଶୀର୍ଣ୍ଣକାୟ ଟୋକା । ବାଲ୍ୟକାଳରୁ ରୁଗ୍ଣ —ପେଟରୋଗୀ । ମୋ ଭଳି ଡଗଡ଼ା ନୁହଁ । ମୋ ଭଳି ଉଞ୍ଚା ବି ନୁହଁ । ମାତ୍ର ତାର ଆଖି ଦୁଇଟା ଖୁବ୍ ଉଜ୍ଜ୍ୱଳ ଆଉ ବଡ଼ବଡ଼ । ସେ ଭାରି

ବୁଝିଥା । ପିଲାଙ୍କୁ ସ୍କୁଲ୍ କଲେଜମାନଙ୍କରେ ବୃତ୍ତିପାଇ ଆସିଛୁ । ତର୍କ ସଭାରେ ପ୍ରଥମ ହୋଇଛୁ । ଲୋକେ କହନ୍ତି—ଫେଲକନ୍‌ଟା ପାଗଳଟାଏ । ହବ ଜଣେ ଭବିଷ୍ୟତରେ ଏଇ ଝାଉମଙ୍ଗଲ୍ । ସତକୁ ସତ ଝାଉମଙ୍ଗଲ୍ ବର୍ତ୍ତମାନ ବେଶ୍ ବଡ଼ଲୋକ ହୋଇଗଲେଣି । ତା' ଭିତରେ ପ୍ରଚଣ୍ଡ ଉଚ୍ଚାକାଂକ୍ଷା । ତା' ଆଖି ଆଉ କପାଳ କହୁଥାଏ; ମୁଁ ସମସ୍ତଙ୍କୁ ଟପିଯିବି । ମୁଁ ଯା ଅର୍ଜିବି-ତା' ଅର୍ଜିବି । ମୁଁ ଯା ଦଖଲ କରିବି – ତା ଦଖଲ କରିବି । ମୁଁ ଝାଉମଙ୍ଗଲକୁ ଖୁବ୍ ଭଲ ପାଉଥିବାରୁ ତାର ଏହି ଶୋଚନୀୟ ମନୋଭାବ ଦେଖି ବିକଳ ହୋଇ ଉଠେ । ଗଡ଼ପାଇ କହେ—ଆବେ ଟୋକା ! ତୁ ଗୋଟାଏ ଦରିଦ୍ର । ତୋର ବହୁତ ଆଶା—ତୋର ବହୁତ ଆକାଂକ୍ଷା କାହିଁକି ତୁ କିଛି ଗୋଟାଏ ହବାକୁ ଚାହୁଁଚୁ ? କିଛି ଗୋଟାଏ ପାଇବାକୁ ଚାହୁଁଚୁ ? ଶେଷପର୍ଯ୍ୟନ୍ତ ଯାଇ ଦେଖିବୁ···ତୁ ଯାହା ହୋଇଛୁ —ତାହା ହେବାକୁ ଇଚ୍ଛା କରି ନ ଥିଲୁ । ମାତ୍ର ଝାଉମଙ୍ଗଲ ହସି କରି କହେ—କାନୁ ଭାଇ ! ମୁଁ ଏ ପୃଥିବୀକି ଆଙ୍ଗୁଠି ଆଗରେ ନଚେଇବି । ଦେଖିବ ସବୁ ପାଇବି, ହାସଲ କରିବି, ଅଧିକାର କରିବି । ତୁମେ ଦେଖିବ !

ମୁଁ କହେ—ଝାଉମଙ୍ଗଲ ! ତୁ ଆଗ ଜାଣିଚୁ । ଆମେ ସବୁ ଅବୈଧ ସନ୍ତାନ ? ପାପ ଭିତରୁ ଜନ୍ମ ହୋଇଛୁ ?

ଝାଉମଙ୍ଗଲ ହସେ । କହେ – ଭାଇ ! ମୁଁ ମୋର ଜନ୍ମ ବିଷୟକ ରହସ୍ୟକୁ କେୟାର କରେନା । ମୁଁ ମୋର ପୁରୁଷକାର ଉପରେ ବିଶ୍ୱାସ ଓ ଆସ୍ଥା ରଖେ । ମୁଁ ଜାଣେ—ମୁଁ ବୈଧ ସନ୍ତାନମାନଙ୍କର ଜନକ ହେବି ।

ମୁଁ ତା ମୁହଁ ପାଖରେ ଆଙ୍ଗୁଠି ହଲାଇ ତାକୁ ଥଟ୍ଟା କଲାଭଳି କହେ—ତୁ ହୋଇ ପାରିବୁନି । ସେ ଅଦ୍ଭୁତ କଦ୍‌ଖୋର ଭାବେ କହେ— ଅଲବତ ହେବି ଦେଖିବ । ମୁଁ ଜାଣେ – ମୋର ସଂକଳ୍ପର ଅସାଧ୍ୟ କିଛି ନାହିଁ ।

ମୁଁ କହିଲି – ତୁ କେମିତି ଜାଣିବୁ ଯେ ଅମୁକ ସନ୍ତାନର ତୁ ବୈଧ ପିତା ବୋଲି ? ସନ୍ତାନ ସମ୍ବନ୍ଧେ ତୋର କି ଧାରଣା ଥିବ ଆଗରୁ ? ତୋର ବୋଲି ଯେ ସନ୍ତାନ ତୋର ସ୍ତ୍ରୀ ପ୍ରସବ କରିବ—ସେ ସନ୍ତାନ ଜନ୍ମ ହେବା ପରଠାରୁ ନିରନ୍ତର ତାର ସ୍ୱରୂପ ବଦଳି ଚାଲିଥିବ ଜାଣିଚୁନା ?

ଯାହାଁ ଯାହାଁ ସେ ବଡ଼ ହେବ, ତାର ଜ୍ଞାନ ବଢ଼ିବ, ସେ ନୂଆ ନୂଆ ବ୍ୟକ୍ତିତ୍ୱମାନ ପ୍ରକାଶିବ — ଯାହାଥିବ ତୋର କଳ୍ପନାର ବାହାରେ । ତୁ ତାକୁ ଚିହ୍ନିପାରିବୁ ନାହିଁ । ସେ ବି ତୋତେ ତା ବାପା ବୋଲି ଚିହ୍ନିପାରିବ ନାହିଁ । ସେଇଠୁ ତାର ମୁଣ୍ଡ ବିଗିଡ଼ିଯିବ । ସେ ଦିନେ ତୋତେ ସାଫ୍ କହିଦବ—ତୁ ତା' ବାପା ନୁହଁ ବୋଲି । ତା'ପରେ ସେ ଦୁନିଆଯାକ ଘୂରିବୁଲିବ ତାର ଅସଲ ବାପାକୁ ଖୋଜି ଖୋଜି ।

ସେଦିନ ଏଇ କଥାରୁ ଝାଡ଼ମଙ୍ଗଲ୍ ମୋ ଉପରେ ଷେପି ଉଠିଲା । କହିଲା — ଏହିକ୍ଷଣି ତୁମେ ମୋ ଘରୁ ବାହାରିଯାଅ । ମୋ ସଙ୍ଗେ ଆଉ କଥାବାର୍ତ୍ତା କରନାହିଁ । ତୁମ ମୁଣ୍ଡରେ ଆଉ ଠିକଣା ନାହିଁ । ଭୂତ ଚଢ଼ିଲାଣି ତୁମ ମୁଣ୍ଡରେ । ତୁମେ ଆଉ ମୋତେ ବାଧା ଦେବାକୁ ଆସିବ ନାହିଁ । ମୁଁ ତୁମଠାରୁ ଏହି ମୁହୂର୍ତ୍ତରେ ସମସ୍ତ ସମ୍ପର୍କ କାଟିଦେଲି ।

ତା' ତିରସ୍କାର କଥା ଶୁଣି – ମୁଁ କରୁଣ ଆଉ ହତାଶ ହସ ହସି କହିଲି – ସେ କଥା ମିଛ । ତୁ ସଂପର୍କ କାଟିପାରିବୁ ନାହିଁ । ମୁଁ ଯାଉଛି । ଆଉ ତୋ ପାଖକୁ ଆସିବିନାହିଁ । ମାତ୍ର ଏହା ନିଶ୍ଚିତ ଯେ ତୁ ମନେ ଝୁରି ଝୁରି ଦିନ କାଟିବୁ । କେହି ସୁସ୍ଥମସ୍ତିଷ୍କ ବ୍ୟକ୍ତି ତାର ପ୍ରକୃତିର ସଂଗଳାଧୀ ଅଂଶଟିକୁ ବାଦ ଦେଇ ସୁସ୍ଥରେ କାଳ କାଟି ପାରିବ ନାହିଁ । ଦେଖ୍ ! ତୋର ଏଇ ସବୁ ଉଚ୍ଚାକାଂକ୍ଷା ଆଉ ଉଚ୍ଚ ସଙ୍କଳ୍ପମାନ ବ୍ୟର୍ଥ ହେବ ।

ମୁଁ ତା ପାଖରୁ ଉଠିଆସିଲି । ମୁଁ ଝାଡ଼ ମଙ୍ଗଲକୁ ଅଭିଶାପ ଦେଇନଥିଲି । ଏହା ତାର ଭବିତବ୍ୟ ବୋଲି କେବଳ ଘୋଷଣା ମାତ୍ର କରିଥିଲି । ମାତ୍ର ତାର ଭାଷା'ଟା ଥିଲା ତିରସ୍କାରର – ଭର୍ତ୍ସନାର । ମାତ୍ର ଏତିକି ଘୋଷଣା କରିବା ମାତ୍ରେ ମୋର ଛାତି ରୁଦ୍ଧ ହୋଇ ଆସିଲା – ଛାତି ଫାଟିଯିବା ଭଳି ଲାଗିଲା । ମୋର ସବୁ ଶିରାପ୍ରଶିରା ପାକସ୍ଥଳୀ ମାଂସ-ପେଶୀ ହାଡ଼ ଆଉ ସ୍ନାୟୁମାନ ରୁଦ୍ଧ ହୋଇଗଲେ । ମୋତେ ଲାଗିଲା—ମୋ ଭିତରୁ କୋଉ ସ୍ୱରରେ କିଛି ଗୋଟାଏ ଖଲାସ ହୋଇଯାଉ । ତା'ହେଲେ ଯାଇ ମୋ ଜୀବନ ରହିବ—ନଚେତ୍ ନାହିଁ । ଜୀବନ ଚାଲିଗଲେ ମୋର ଶୋଚନା ନାହିଁ । ମାତ୍ର ଜୀବନ ଚାଲିଯିବା ପୂର୍ବରୁ ତାର ଏହି ତର୍ଜନ ଗର୍ଜନ ତଜହାର ରୁଦ୍ଧଦେବା ଭଳି ଦୁର୍ବ୍ୟବହାରମାନ ମୋର ଅସହ୍ୟ । ମୁଁ ଆତ୍ମହତ୍ୟା କରିଦେଇପାରେ ।

କିନ୍ତୁ ତା ପୂର୍ବରୁ ମୋ ଭିତରୁ କିଛି ଗୋଟେ କୋଉ ସୂତ୍ରରେ ଖସିପଡ଼ ହେଇଯାଉ – ବାହାରିଯାଉ କିଛି ପବନ—ବା କିଛି ଜଳ—କିଛି ଲୁହ—ବା କିଛି ରକ୍ତ। ତା' ନହେଲେ ଯନ୍ତ୍ରଣାରେ ମୁଁ ଛଟପଟ ହୋଇ ମରିବି। ଏଭଳି ଦୁଃସହ ଯନ୍ତ୍ରଣା ନେଇ ଆତ୍ମହତ୍ୟା କରିବି ବା କପରି ? ସ୍ୱାଧୀନ ଓ ସ୍ୱେଚ୍ଛାକୃତ ଆତ୍ମହତ୍ୟା ଏଭଳି ଯନ୍ତ୍ରଣା ଭିତରେ ହୁଏନାହିଁ। ସବୁ ମହାନ୍ କାର୍ଯ୍ୟଭଳି—ସବୁ ମହାନ୍ ଶିଳ୍ପ ଭଳି – ସବୁ ମହାନ୍ ସାଧନା ଭଳି ଆତ୍ମହତ୍ୟା ମଧ୍ୟ ଯନ୍ତ୍ରଣାହୀନ ଶାନ୍ତ ସ୍ଥିର ଓ ଧୀର ମସ୍ତିଷ୍କରେ ସାଧିତ ହୁଏ। ତାହା ପଙ୍ଖାରେ ଦଉଡ଼ି ଦେଇ ହେଉ—ବା ବିଷ ଖାଇ ହେଉ—ବା ରେଳଲାଇନରେ ବେକ ରଖି ନିଶ୍ଚିନ୍ତ ଘୁମେଇ ହେଉ। ଏହି ଭଳି ଶାନ୍ତ ସମାହିତ ଆତ୍ମହତ୍ୟା ପୂର୍ବରୁ ହିଁ ପୃଥିବୀ ପ୍ରତି ଗୋଟାଏ ପରମ କରୁଣା ଓ କ୍ଷମା ଭାବ ରଖି ଲେଖି ଦେଇ ଯାଇହୁଏ – ମୋର ଏହି ଆତ୍ମହତ୍ୟା ଲାଗି କେହି ଦାୟୀ ନୁହନ୍ତି। ଅପର ନୁହନ୍ତି—କି ମୁଁ ନୁହେଁ ବା ମୋର କୌଣସି ଯନ୍ତ୍ରଣା ନୁହେଁ।

ତେଣୁ ଆଗ ମୁଁ ଏ ଯନ୍ତ୍ରଣାରୁ ମୁକ୍ତ ହେବି କପରି ? ତା'ପରେ ଯାଇ ଆତ୍ମ-ହତ୍ୟାର ଚିନ୍ତା। ମୁଁ ମୋର ସାନଭାଇର କଥା ଭାବି ଫେର କରୁଣ ହେଲି। ଟୋକାଟା ଯେତେ ନିଜକୁ ସିଆଣା ମନେ କରେ— ପ୍ରକୃତରେ ସେତେ ସିଆଣା ନୁହେଁ। ଭାବୁଛି—ଉଚ୍ଚାକାଂକ୍ଷା ଉପରେ ଠିଆହୋଇ ସଂକଳ୍ପରେ ପୃଥିବୀ ଓଲଟାଇ ପକାଇବ। ସେ ଆଗ ଏ ପୃଥିବୀ ଉପରେ ଠିଆହୋଇ ପାରିବ ନା ? ତା' ପାଦତଳୁ ମୂଷାମାନେ ମାଟି ଖୋଳନେବେ। ସେ ପାତାଳକୁ ଗଳିପଡ଼ିବ। ଅନ୍ୟମାନେ ତା' ତଣ୍ଟି ଚିପି ଧରିବେ – ଅବନିଃଶ୍ୱାସୀ କରିଦେବେ। ଗୋଧିମାନେ ତା' ପାଟିଭିତରେ ମୁହଁ ଗଳାଇ ତା' ଘଣ୍ଟିକାକୁ ଭିଡ଼ ଖାଇବେ। ସେ ସିଂହ ହେବାକୁ ଯାଉଥିବ—ମାତ୍ର ଶେଷରେ ଦେଖିବ ସେ ବଣଭିତରେ ଗୋଠଛଡ଼ା ଏକାକୀ ମେଣ୍ଢାଟାଏ ଭଳି ଚଉଦିଗକୁ କାକୁସ୍ଥଭାବେ ଚାହିଁ ରହି ମେଃ ମେଃ ହେଉଛି। ସେଇଠୁ ତାକୁ ପଲେ କାଳିଆ କୁକୁର ବା ହେଟା ଘେରିଯିବେ। ତାକୁ କଚକଚା କରି କାମୁଡ଼ି ଖାଇଯିବେ। ଏହି ସମୟରେ ବଣ ଭିତରେ କପୋତମାନେ କାନ୍ଦ ଉଠିବେ। ପେଚାମାନେ ଏଡ଼େ ଏଡ଼େ ଆଖି ମେଲାଇ ବଣ ଭିତରେ କଣ ଗୋଟାଏ ଦେଖି ଅସ୍ୱସ୍ତି ବୋଧ

କଲଭଲ କୁନ୍ଥେଇବେ । ତା'ପରେ ପିମ୍ପୁଡ଼ିମାନେ—ଜନ୍ତାମାନେ··· କୁକୁର ମାନେ—ବିଲୁଆ ମାନେ···ଇସ୍ ଓଃ !

ଗସ୍ପେଲଟା କିଛି ବୁଝି ପାରୁନି । ଉଚ୍ଚାକାଂକ୍ଷା କରୁଛି—ସଂକଳ୍ପ କରୁଛି ଜଣ ଗୋଟାଏ ହବ ବୋଲି ! ଓଃ ! ଓଃ ! ଉଚ୍ଚାକାଂକ୍ଷାର ପତନ କି ମର୍ମନ୍ତୁଦ ! ଓଃ ! ଓଃ ! ସଂକଳ୍ପର ବିଫଳତା କି ଦାରୁଣ ଶୋକାବହ ! ଆଃ—କି କଷ୍ଟ ! କି କଷ୍ଟ ! ଝ୍ୱାଡ୍ ମଙ୍ଗଲ୍ ! ଝ୍ୱାଡ ମଙ୍ଗଲ୍ ! ତୁ ମୋ ଭାଇ ନା ଶତ୍ରୁରେ ? ମୋତେ ଏତେ କଲବଲ କରି ମାରୁଛୁ !

ସେଇଠୁ ମୁଁ ଏଇ ଗିରିଗୁମ୍ଫା ଆଡ଼କୁ ଧାଇଁଲି । ବାଟରେ ଗୋଟାଏ ଦୃଶ୍ୟ ଉପରେ ମୋର ଦୃଷ୍ଟି ପଡ଼ିଗଲା । ପାହାଡ଼ ଆଉ ଅଳ୍ପବାଟ ଅଛି । ଆଗରେ କାଁ ଭାଁ ଗୋଟେ ଗୋଟେ ଶ୍ରମିକ ବସ୍ତି ପଡ଼ିଲା । ପାଖରେ ରାସ୍ତା ତିଆରି ଚାଲିଛି । ସବା ଶେଷ କୁଡ଼ିଆଟି ପାଖରେ ଦେଖିଲି—ସ୍ତ୍ରୀ ଲୋକଟିଏ ଇଟାରେ ଚୁଲି କରି ଜାଳୁଛି । ଖୁବ୍ କ୍ଷୀଣକାୟା ସ୍ତ୍ରୀ ଲୋକଟି—ମାତ୍ର ତାର ସ୍ତନ ଦୁଇଟି ଖୁବ୍ ବଡ଼ ବଡ଼ । ସେଗୁଡ଼ିକ ବାହାରକୁ ଦୁଇଟା ପଦ୍ମକଳି ଭଳି ଦିଶୁଥାଏ । ସତେକି ସେଥିରେ ପଶୁଶାବକ ମାନଙ୍କ ଖାଦ୍ୟ ରହିଛି ଭରପୂର । ସତକୁ ସତ ଗୋଟାଏ ଛୁଆ ସେଥି ଭିତରୁ ଗୋଟାଏ ସ୍ତନ ଉପରେ ମୁହଁ ମାଡ଼ି କ୍ଷୀର ଶୋଷୁଛି । ପାଖରେ ପାଣି ଧାରଟିଏ ପାହାଡ଼ ଆଡ଼ୁ ବହିଆସି ସମତଳ ଆଡ଼କୁ ବଙ୍କେଇ ବୋହି ଯାଉଛି । ସେହି ପାଣି ଧାର ପାଖରେ ବସିଛି ସେ—ସେ ଏହି ସ୍ତ୍ରୀ ଲୋକଟା ପାଖରେ ରାତିରେ ଶୁଏ ବୋଧେ । ସେ ଲୋକଟା ଗୋଟାଏ କୁକୁଡ଼ାକୁ କଟିକଟି କରି କାଟୁଛି । ତା' ଦେହରୁ ପରଗୁଡ଼ାକ ଉଳାରି ପକାଉଛି—ସିଝା ଅଣ୍ଡାରୁ ଚୋପା ଛଡ଼ାଇବାର ମନ ଦେଇ । ଘରଆଡ଼େ କୁକୁଡ଼ା ପର ଆଉ ରକ୍ତ ସାଣୁମାଣୁ । ସେହି ଛେଲି କୁକୁଡ଼ାଟାକୁ ଏଡ଼େ ଏଡ଼େ ଆଖିରେ ଚାହିଁ ଦେଖୁଛି ଆଉ ଗୋଟାଏ—ନଅ ଦଶ ବର୍ଷର ଛୁଆ । ସେମାନେ ସମସ୍ତେ ମିଶି ଆଜି ରାତିରେ ଏ କୁକୁଡ଼ାଟାକୁ ସିଝାଇ ଖାଇପିବେ । ମୁଁ ସେଠି ଦଣ୍ଡେ ଠିଆ ହେଲି । ମୋର କେମିତି ହଠାତ୍ ମନହେଲା—ସେ ସ୍ତ୍ରୀ ଲୋକଟାର ଅଧରୁ ତାକୁ ଶୋଷୁଥିବା ଛୁଆଟାକୁ ଛଡ଼ାଇ ଆଣି ଫିଙ୍ଗି ଦେବି । ଚୁଲି ଉପର ହାଣ୍ଡିଟା ବାଡ଼େଇ

ଘୁଙ୍ଗି ଦେବ । ତା'ପରେ ଏ ଲୋକଟାର ହାତରୁ ସେଇ ଛେଳି କୁକୁଡ଼ାଟାକୁ ଧରି ଫୋପାଡ଼ି ଦେବ । ତା'ପରେ ଏଇ ଏଡ଼େ ଏଡ଼େ ଆଖିରେ ଗୁହିଁ ଗୁହିଁ ବସିଥିବା ଆଇଁସିଆ ଟୋକାଟାକୁ କାନଧରି କହିବ— ଆ ! ମୁଁ ବର୍ତ୍ତମାନ ଚଢେ ଏଇ କୁକୁଡ଼ା ଭଳିଆ ଛେଳିବ । କୋଉ ବାପ ତୋ' ପିଠିରେ ପଡ଼ିବ ?

କାହିଁକି ଯେ ସେମାନଙ୍କୁ ଦେଖି ମୋର ଏମିତି ଭାବ ହେଲା—ମୁଁ ଜାଣିନି । ମାତ୍ର ମୋ ଭିତରେ ଖୁବ୍ ଉଗ୍ର ରାଗ ଚହଟିଗଲା । ଆଚ୍ଛା – ମୁଁ କଣ ଏଇ ପରିବାରର ଗୋଟାଏ କଣ୍ଟ୍ରିକ୍ତ ସିଦ୍ଧାନ୍ତ ପଣର ନାରକାପୁତା ଦେଖି ବଚକିତ ହୋଇ ପଡ଼ିଥିଲି ? କେଜାଣି— ହୋଇଥିବ । ମଣିଷ କଣ ଏତେ କଣ୍ଟ୍ରିକ୍ତ ହୋଇପାରେ ? ତା ସିଦ୍ଧାନ୍ତରେ ଏତେ ଦୂର ବଢ଼ିଯାଇ ପାଇପାରେ ?

ସେଠି ଠିଆ ହୋଇ ମୁଁ କଣ ଗୋଟେ କରିବାକୁ ଯାଉଛି—ଏଇ ସମୟରେ ଦଳେ ଝିଅ କଚରି ମିଚରି ହୋଇ ସେବାଟେ ଗ୍ଭଲିଗଲେ । ସବା ପଛରେ ପ୍ରୌଢ଼ା ସ୍ତ୍ରୀ ଲୋକଟିଏ ମୋ ପାଖରେ ଅଟକିଗଲା । କହିଲା—ଫେଲିକନ୍ ! କଣ କରୁଛ ?

ମୁଁ ତାକୁ ଗ୍ଭହିଁଲି । ସେ ଥିଲା ଏଇ ମିସେସ୍ ମିଭିଆ । ତା' ସାଙ୍ଗରେ ମୋର ଆଗରୁ ଘନିଷ୍ଠ ସମ୍ପର୍କ ଥିଲା । ମିସେସ୍ ମିଭିଆ ଖାସା ସ୍ତ୍ରୀ ଲୋକ । ହୁଁ ଚଁ ନାହିଁ—ଏତ ଉତ ନାହିଁ । ଗୁଁ ପୁଁ ନାହିଁ—କଚରି ମିଚରି ନାହିଁ—ବକର ମକର ନାହିଁ – ଆଗପଛ ନାହିଁ । ମିସେସ୍ ମିଭିଆ କେବଳ ସୁଖ । ସେ ସଂପୃକ୍ତ ହେବାକୁ ଗ୍ଭହେଁ ନା – କେବଳ ସଂଯୁକ୍ତ ହେବାକୁ ଗ୍ଭହେଁ । ସଂଯୁକ୍ତ ହୋଇ ସାରିଲା ପରେ ବିଯୁକ୍ତିର ଯନ୍ତ୍ରଣା ତାର ଭିଲାର୍ଦ୍ଧେ ବି ନାହିଁ । କୁଗ୍ଭକୁତିଙ୍କର ଅଛି । ମାତ୍ର ମିସେସ୍ ମିଭିଆଙ୍କର ନାହିଁ । ମୁଁ କାରବାର ଲାଗି ମିସେସ୍ ମିଭିଆଙ୍କ ଭଳି ସ୍ତ୍ରୀ ଲୋକ ପସନ୍ଦ କରେ । ମିସେସ୍ ମିଭିଆ କହେ – ହସିହସି କହେ—ଏମିତି ଏମିତି ତ ଏତେ ଦିନ ମାରି ଦେଲିଣି – ଆଉ କେଇଟା ଦିନ ବା ! ମୁଁ ଯାହା ଉପରେ ଆଉଜି ପଡ଼େ ତା' ଉପରେ ଭାର ଦିଏ ନାହିଁ । ସେ ମୋ ଉପରକୁ ଆଉଜି ପଡ଼େ, ମୁଁ ବି ତା' ଭାର ନିଏ ନାହିଁ । ଏଇ ଭଲ ଫେଲିକନ୍ ! ନୁହେଁ ?

ମୁଁ କହିଲି—ହୋଇଥିବ, ହୋଇଥିବ – କଏ ଜାଣେ ? ଭଲ କଣ ?

ସେଇ ମିସେସ୍ ମିତ୍ରଆ ମତେ ପଚାରିଲେ—ଯିବ ମୋ ସଙ୍ଗେ ଫେଲ୍‌କନ୍ ?

ମୁଁ କହିଲି – ସ୍ୱଳ୍ପ ମୋ ଭିତରୁ କିଛି ଖଲାସ ହେବା ସ୍ୱପ୍ନ ।

ସେ ହସି ହସି ସମ୍ମତ ହେଲେ । ଯାର ଅର୍ଥ-ମୁଁ ଜାଣେ-ମୁଁ ଜାଣେ । ମୁଁ ଖଲାସ କର ଜାଣେ । ଖଲାସ କର ପୁଣି କିଛି ଲାଭ ହଏ ନାହିଁ ଯାହା ଅନ୍ୟ ସ୍ତ୍ରୀ ଲୋକେ କରନ୍ତି ।

ତା' ପରେ ଆମେ ପାହାଡ଼ ଉପରକୁ ଉଠିଲୁ । ଆମ ବାଗରେ ପାହାଡ଼ ଉପରେ ଚଢ଼ିଲୁ । ତା' ପରେ ଘୋର ବୃଷ୍ଟି ଆସିଲା ଘଡ଼ଘଡ଼ି ଓ ବଜ୍ରର ଚଡ଼ଚଡ଼ି ସହ ପ୍ରବଳ ବର୍ଷା । ମିତ୍ରଆଙ୍କ ସ୍ତ୍ରୀମାନେ ତଳକୁ ପଳାଇଲେ ବସ୍ ଭିତରକୁ । ମିତ୍ରଆ ଆଉ ମୁଁ ସଣୀଗୁମ୍ଫା ଭିତରକୁ ପଶିଗଲୁ । ବାହାରେ ଘଣ୍ଟାଏ କାଳ ଭୁମୂଳ ବର୍ଷା ହେଉଥିଲା । ଘନ ପବନ ବହୁଥିଲା – ଘଡ଼ଘଡ଼ି ଆଉ ଚଡ଼ଚଡ଼ିରେ ବାହାର କମ୍ପୁଥିଲା । ଝର ଝର ହୋଇ ପାଣି ସ୍ରୋତ ଆମ ଗୁମ୍ଫାର ଦୁଇକଡ଼େ ଉପରୁ ତଳକୁ ବହି ଗଲୁଥିଲା । ତା' ପରେ ଆମେ ତା' ଭିତରେ ଖଲାସ କଲୁ – ଖଲାସ ହେଲୁ ।

ମିତ୍ରଆ ଗଲାଗଲା । ତା'ର ସ୍ତ୍ରୀମାନଙ୍କ ସଙ୍ଗେ ବସ୍‌ରେ ବସି । ଆମେ କେମିତ ବଦାଯ୍ ନେଲୁ ଛଡ଼ାଛଡ଼ି ହେଲୁ ତା'ତ କହିସାରିଛି ଆଗରୁ ମାତ୍ର ଖଲାସ କଲା ପରେ ଆଶ୍ଚର୍ଯ୍ୟ କଥା ମୁଁ ଫେର ଗୋଟାଏ ପ୍ରକାର ଅବସନ୍ନତା ଅନୁଭବ କଲି । ଫେର ବଷର୍ଣ୍ଣ ହୋଇଗଲି । ଏକୁଟିଆ ହୋଇଗଲି । ଏଣିକ ମାଳା ଜପିବା – ସିଦ୍ଧଗୁମ୍ଫା ଖୋଜିବା । ସିଦ୍ଧଗୁମ୍ଫା— ଯାହା ଦ୍ୱାରରେ କଂକାଳୀ ବାବାର ମୂର୍ତ୍ତି ରହିଛି ଓ ତାକୁ ଆଉଜି ପଡ଼ିଛି ଗୋଟାଏ ବଙ୍କା ବରୁଣଗଛ । ଆଗ୍ର ମୋର ଏହି ବର୍ତ୍ତମାନର ବଷର୍ଣ୍ଣତା କଣ ଅସଲ ଗୋଟାଏ ଯନ୍ତ୍ରଣା ? ଆଗ୍ର ଯଦ ଏ ନ ରହିବ ତା' ହେଲେ କଣ ମୁଁ ଅଧିକ ସୁଖୀ ହେବ ? ଆନନ୍ଦ ହେବ ? ମୁଁ ତ କିଛି ହେବ ନାହିଁ । କିଛି ହେବାର ଉଚ୍ଚାକାଂକ୍ଷା କରେନ ନାହିଁ । ତା' ହେଲେ ଏ ଯନ୍ତ୍ରଣା କାହିଁକ ? ସାନ ଭାଇ ଲାଗି ? ସେ ମୋର କଏ କି ? ସେ ତ ମୋତେ ଆଜ ଛଡ଼ ଦେଲା – କହିଲା—ସମ୍ପର୍କ ରଖିବ ନାହିଁ । ମୁଁ ତ ତାକୁ କହି

ଦେଇ ଆସିଛୁ – ସେ ସବୁ ମିଛକଥା । ତୁ ମୋ ପାଇଁ ଝୁରି ଝୁରି ମରିବୁ । ବର୍ତ୍ତମାନ ବାସ୍ତବରେ ଝୁରି ଝୁରି ମରୁଛୁ କିଏ – ମୁଁ ନୁହେଁ କି ? ଅଚ୍ଛା ସତରେ କଣ ମୁଁ ମୋ ସାନଭାଇ ପାଇଁ ଝୁରି ଝୁରି ମରୁଛୁ—ନା' ମୋ ଭିତରେ ଗୋଟେ ନିଃସଙ୍ଗ ଆଉଟବାଇଆ ଭୂତ ମୋତେ ଏତେ କଦର୍ଥନା ଦେଉଛୁ ? ନା-ମୋ ଭିତରେ ଝୁରି ହେଉଥିବା କପୋତଟିଏ ଅଛୁ ? ଅନ୍ଧାର ଭିତରେ କାହାକୁ କିଛୁ ଦେଖି ଅସ୍ୱସ୍ତି ବୋଧ କରୁଥିବା ଭଳି କୁହାଏ ଯେ ଯେଉଁ ସେ କଣ ଆଜି ମୋ ଭିତରେ ରହି ମତେ ଏତେ ଦହଗଞ୍ଜ କରି ମାରୁଛୁ ?

ନା ମତେ ସିଦ୍ଧଗୁମ୍ଫାଟା ଖୋଜି ବାହାର କରିବାକୁ ହେବ । ଚିହ୍ନଟ କରିବାକୁ ହେବ କଂକାଳୀ ବାବାର ମୂର୍ତ୍ତିଟାକୁ ଆଉ ବଙ୍କା ବରୁଣ ଗଛଟାକୁ । ଅଥଚ ମୁଁ ଯୋଗୀ ହେବାର ସିଦ୍ଧାନ୍ତ କରି ନାହିଁ । କିଛି ହେବା ପାଇଁ ସିଦ୍ଧାନ୍ତ କରିନାହିଁ । ଏଇ ରୁଦ୍ରାକ୍ଷ ମାଳାଟାକୁ ଏଇଠି ଫୋପାଡ଼ି ଦେଲେ ବି ମୋର ଆଉ ଏଥିରୁ ମୁକ୍ତି ନାହିଁ । ଶିଳମଟାକୁ ଫୋପାଡ଼ି ଦେଇଥିଲି ଦୀକ୍ଷା ନେବନି ବୋଲି । ମାତ୍ର ଯଦି ଏହି ମାଳାଟାକୁ ମୁଁ ଏଠି ସେହି କାରଣରୁ ଫିଙ୍ଗି ଦିଏ—ତେବେ ମାଳାଟା ସିନା ଯିବ – ମାତ୍ର ମୁଁ ବର୍ତ୍ତମାନ ଏହି ପାହାଡ଼ଟାରୁ ଆଉ ତଳକୁ ଓହ୍ଲାଇ ଯାଇପାରିବ କି ? ଓହ୍ଲାଇଲେ ବି କୁଆଡ଼େ ଯିବ ? ନା-ମତେ ଏହି ସହସ୍ରାଧିକ ଗୁମ୍ଫା ଭିତରୁ ସିଦ୍ଧଗୁମ୍ଫାଟାକୁ ଖୋଜି ବାହାର କରିବାକୁ ପଡ଼ିବ । ଏଇତ ରାତି ଘୋଟି ଆସିଲାଣି । ସବୁଆଡ଼ ନିର୍ଜନ । ମୋତେ ଏକ ନିର୍ଜନ ବିଷର୍ଣ୍ଣତା ଅନ୍ଧାର ଭଳି ଘେରିଗଲାଣି । ସାନଭାଇ ଝାଡ଼ମଙ୍ଗଲି ମତେ ବିଷର୍ଣ୍ଣ କରି ଦେଇଥିଲା । ମିସେସ୍ ମିଶ୍ରିଆ ମତେ ଅବସନ୍ନ କରି ଦେଇଗଲେ—ଆତୁର ଏକୁଟିଆ କରି ଦେଇଗଲେ । ମୁଁ ଭାବିଥିଲି—କିଛି ଗୋଟାଏ ଖଲାସ ହୋଇଗଲେ ବୋଧେ ମୁଁ ମୁକ୍ତି ପାଇବି । ଆତ୍ମହତ୍ୟା ଲାଗି ଗୋଟାଏ ପ୍ରଶାନ୍ତ ଧୀର ସୁଯୋଗ ଆସିଯିବ । କିଛି ଅବଶ୍ୟ ଖଲାସ ହେଲା । ମାତ୍ର ସ୍ୱପ୍ନମାନେ ପୁଣି ଦୁଇଗୁଣ ଟାଣକେଇ ଉଠିଲେଣି । ପାକସ୍ଥଳୀରେ ପୁଣି ଯନ୍ତ୍ରଣା ଆରମ୍ଭ ହୋଇଗଲାଣି । ମୁଁ ବିଷର୍ଣ୍ଣ – ମୁଁ ଏକୁଟିଆ—ମୁଁ ସିଦ୍ଧଗୁମ୍ଫା ଖୋଜୁଛୁ । ମୁଁ ଯଦି ଦେଖିଲିଣି—ମୋତେ ଆଜି ରାତିଟାଯାକ ସିଦ୍ଧଗୁମ୍ଫା ଖୋଜିବାକୁ

ପଡ଼ବ ।...ଆଗ୍ର ଯଦ ସେଇଟା ପାଇଯାଏ – ତେବେ କଣ ହେବ ? ମୁଁ କଣ ତା' ଭିତରେ ମୋ ବାପାଙ୍କୁ ପାଇବ ? ସତରେ ତେବେ କଣ ମୁଁ ଆଜଯାଏ ମୁଁ ମୋ ବାପାଙ୍କୁ ହିଁ ଖୋଜୁଛୁ ? ମୋର ପ୍ରକୃତ ବାପାଙ୍କୁ ! ମୋର ସେ ଗୁରୁଦେବ ତାଙ୍କୁ ? ମୋର ପ୍ରକୃତ ଧର୍ମକୁ ? ମୋର ପ୍ରକୃତ ତପଃକୁ—ମୋର ସ୍ୱର୍ଗକୁ ? ଏକ କଥାରେ ମୋର ଯଥାର୍ଥ ପିତୃଦେବ ?

ମୋର ଏହି ଏକବାଗିଆ ଢ଼ଙ୍ଗ – ମୋର ଏହି ଖିଆଲି ପ୍ରବଣତା— ମୋର ଏହି ନିଃସଙ୍ଗ ବିଷନ୍ନତା—ମୋର ଏହି କିଛି ନ ହେବାର ଇଚ୍ଛା— ମୋର ସେଇ ସାନ ଭଉଣୀର ପାଗଳାମି ହୀନ ସୁସ୍ଥ ମସ୍ତିଷ୍କତା ଲାଗି ମୋର ଦୁଃଖ – ମୋର ସେହି ଭଉଣୀଟାର ବେଦନା—ମୋର ସେହି କୁମାରୀ ଜୁଲି ମିଶ୍ର ସଂପର୍କଜନିତ ଦାମ୍ପତ୍ୟହୀନତା—ମୋର ସେହି ସୁଜାଆ, ସୋଲେମନ ଆଜି ପାନା ହେଉକାଙ୍କ ପାଇଁ କାନ୍ଦଣା – ଆଜି ମୋର ସେହି ମିସେସ ମିତ୍ରଙ୍କ ସଂପର୍କଜନିତ ଖଳ୍ପସକରିବା ପରର ଅବସନ୍ନତା— ଏସବୁ କଣ ଯଥାର୍ଥରେ ଗୋଟିଏ ପିତୃଗୋଷ ପରିଚୟ ହୀନ ଅନାଥ ବାଳକର ? ଆଚ୍ଛା ତାହା ଯଦି ହୁଏ—ତେବେ ମୋର ଯଥାର୍ଥ ପିତା ଯେ ସେ କଣ ଏଇ ଅନ୍ଧାର ରାତିରେ ଏହିଁ ଅପନ୍ତରା ସହସ୍ର ଗୁମ୍ଫା ଘେରା ପାହାଡ଼ଟାରେ ଏକୁଟିଆ ପଡ଼ିଯାଇଥିବା ମୋତେ ଖୋଜୁନାହାନ୍ତି ? ଖୋଜୁନାହାନ୍ତି ଏହି ଅବଶୋ ଗବଣଗୁଲ୍ଲ ଅନାଥ ଅଶିକ୍ଷିତ ଆଡ଼ପାଗଳା ସନ୍ତାନଟିକୁ ? ଏହି ନଷ୍ଟ ହୋଇ ହୋଇ ଯାଉଥିବା ସନ୍ତାନଟିର ପିତା କଏ କୋଉଠି ଅଛି ? ଆସ – ଆସ— ତକ୍ଷଣ ଆସି ଦେଖିଯାଅ ତୁମ ଆତ୍ମଜ ସନ୍ତାନଟିର ଏଇ ଦୁରବସ୍ଥା ? ମୁଁ ଯେତେଦୂର ପାରେ ପାହାଡ଼ ଉପରୁ ଚିତ୍କାର କରି ଉଠିଲି—ବାପା ?

ହୋ ବାପା ?

ବାପା ?

ସଙ୍ଗେ ସଙ୍ଗେ ପାହାଡ଼ର ଶତଶତ ଗୁମ୍ଫା ଭିତରୁ ପ୍ରତିଧ୍ୱନିତ ହୋଇଉଠିଲା—ବାପାଙ୍କର ଆଶା ବାଢ଼ଭଳ ସେହି ଆଶ୍ୱାସନାଦାୟୀ ଆକାର ଧ୍ୱନିଟି—ଆ ଆ ଆ ।

ମୋର ଘନଘନ ବାପା ବାପା ଡ଼ାକ ଓ ତାର ଘନଘନ ଆ ଆ ପ୍ରତିଧ୍ୱନିରେ ମୁଁ ଖୁବ୍‌ଶ ଉତ୍ତେଜିତ ହୋଇଉଠିଲି । ତା'ପରେ—ତା'ପରେ

ମୁଁ ବୋଧେ ମୂର୍ଚ୍ଛିତ ହୋଇ ସେଇଠି କମ୍ବଳ ହୋଇପଡ଼ିଲି ।.........
ତା'ପରେ.........

ମୋର ମୂର୍ଚ୍ଛା ମଧ୍ୟ କେତେବେଳେ ଆଉ ଭାଙ୍ଗିଥିଲା କି ନାହିଁ ମୁଁ ଜାଣେନା । ବର୍ତ୍ତମାନ ମଧ୍ୟ ମୁଁ ମୂର୍ଚ୍ଛିତ ଅଛି ବୋଧେ । କିନ୍ତୁ ମୋର ମନେ ପଡ଼ୁଛି – ସେହି ଉତ୍ତେଜିତ ଆଚ୍ଛନ୍ନ ଅବସ୍ଥାରେ କିଏ ସଚେତକ ମୋର ମୁଣ୍ଡକୁ ଟେକି ଧରି ତାର ସୁକୋମଳ କୋଳ ଉପରେ ରଖିଲା ! ମୋର ଦେହ ହାତକୁ ଆଉଁସି ଦେଲା । ମୋର ଉତ୍ତପ୍ତ ମଥା ତାର ଶୀତଳ କର ସ୍ପର୍ଶରେ ଥଣ୍ଡା ହୋଇଆସିଲା । ମୁଁ ଧୀରେ ଆଖି ମେଲି ଚାହିଁଲି – ଏ କିଏ ? କି ସୁନ୍ଦର ମୁହଁଟିଏ ! ସେ ଆଖି ଦୁଇଟିରେ ଶାରଦୀୟ ଧାନକ୍ଷେତର ସବୁଜ ନରମ ସ୍ନିଗ୍ଧ ପ୍ରଶାନ୍ତ ଆଶ୍ୱାସନା ଓ ତେଜ ଭରି ରହିଥିଲା । ସେ ହସରେ ଥିଲା "ଧନରେ ତୋତେ ଫେରି ପାଇଛି" ଭଳି ସକୃତଜ୍ଞ ଓ ସମ୍ମୋହିତ ସୁଷମା । ସେ କର ସ୍ପର୍ଶରେ ଥିଲା – ଲାଳ ପୋଛି ଦେଇ ନାକ କାନ୍ଦିଦେଇ କୋଳକୁ ନେଇ କ୍ଷୀର ଖୋଇଦେବାର ଅନୁଭୂତି । ତା' ଆଖି ସଙ୍ଗେ ମୋ ଆଖି ମିଳିଯିବାମାତ୍ରେ ମୁଁ ଲଜ୍ୟାରେ ଖୁସିରେ କାନ୍ଦିବ ବୋଲି ଆଖି ବୁଜିଦେଲି । ମାତ୍ର ସାଙ୍ଗେ ସାଙ୍ଗେ ଆଖି ଖୋଲି ପଚାରିଦେଲି – ତୁ କିଏ ?

ମୁଁ ? ହସି ହସି ସେ କହିଲା । ସଚେତକ ବହୁ ସମୟ ଧରି ମୋର ଶୁଶ୍ରୂଷା କରୁ କରୁ ସେ ମୋ ଠାରୁ ଏଇ ପ୍ରଶ୍ନଟି ଶୁଣିବ ବୋଲି ଅପେକ୍ଷା କରୁଥିଲା ! ହସୁ ହସୁ ତା' ଆଖି ଦୁଇଟି ପବନରେ ପଦ୍ମଫୁଲର ପାଖୁଡ଼ା-ମାନ ଦୋହଲିଲା ଭଳି ଦୋହଲିଲା । ମତେ ଚିହ୍ନି ପାରୁନୁ ? ମୁଁ ପରା ତୋ ମାଆ ?

ମାଆ ।

ହଁ—ତୋ ମାଆ ?

ମୁଁ ତ କିନ୍ତୁ ତୋତେ ଖୋଜୁନଥିଲି ?

ମାତ୍ର ମୁଁ ତ ତତେ ଖୋଜି ବୁଲୁଥିଲିରେ ଧନ !

ମୋର ସମସ୍ତ ଦେହ ଏକ ଅପୂର୍ବ ଆନନ୍ଦ ପୁଲକରେ ଶିହରିତ ହେବାକୁ ଲାଗିଲା । ମୁଁ ପଚାରିଲି—କେମିତି ପାଇଲୁ ମତେ ? କେମିତି ଜାଣିଲୁ ମୋର ଠିକଣା ? ମୁଁ ଏଠି ଅଛୁ ବୋଲି ତୋତେ କଏ କହିଲା ?

ତୋ' ବାପା ରେ ଧନ ।

ବାପା ! କାହାନ୍ତି ସେ ? ବାପା !

ମୁଁ ଉଠି ବସିଲି । ଆବେଗରେ କାନ୍ଦ ଉଠି ପଚାରିଲି—

କାହାନ୍ତି, କାହାନ୍ତି ସେ ? ବାପା ?

ମା' ସେଇଠି ଗୋଡ଼ଲମ୍ବେଇ ବସିଥାଏ । ସେ ହସିହସି ଗୋଟାଏ ଗୁମ୍ଫା ଆଡ଼କୁ ହାତ ବଢ଼େଇଦେଲା—ଯା—ଯ – ସେଇଟା ସିଦ୍ଧ ଗୁମ୍ଫା – । ସେ ସେଇଠି ଅଛନ୍ତି ।

ମୁଁ ଆତୁରରେ ସେଇ ଗୁମ୍ଫା ଆଡ଼କୁ ଦଉଡ଼ିଗଲି ।

ବାପା–ବାପା !

ବାପା ! ବାପା !

ବାପା ଆ ଆ ଆ ଆ !

—୦—

# ବନ୍ଧ୍ୟାରତ୍ନେ

"ଚରିତ୍ର" କ ଜାତି ପଦାର୍ଥ—ସେ ସମ୍ବନ୍ଧେ ସେମିତି କିଛି ଧାରଣା କାହାର ନାହିଁ । ମାତ୍ର କେତେବେଳେ କୋଉବାଟେ କେଉଁ ସୁରାକରେ ସେଇଟା ଖସି ପଳାଇଯାଇ ଅକସ୍ମାତ୍ ନଷ୍ଟ ହୋଇଯାଏ – ସେ କଥା ତ ଆମେ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ବହୁ ଲୋକଙ୍କ ଜୀବନରେ ଦେଖୁଛୁ । ଅବଶ୍ୟ ଆମେ ତାର "ଚରିତ୍ର"ଟିକୁ ଦେଖୁନାହିଁ । କେବଳ ସେହି ଚରିତ୍ରଟି ନଷ୍ଟ ହୋଇଯିବାର ଦେଖୁ ।

ସେଦିନ ଅଧ୍ୟାପକ ରାମଶଙ୍କରବାବୁଙ୍କର ଚରିତ୍ରଟି ବି ସେହିଭଳି ହଠାତ୍ ନଷ୍ଟ ହୋଇଗଲା । ସମସ୍ତେ ଅନ୍ତତଃ ସେଇଆ ଦେଖିଲେ ଓ ସେଇଆ କହିଲେ । ସହକର୍ମୀ ଅଧ୍ୟାପକମାନେ ରାମଶଙ୍କର ବାବୁଙ୍କର ଏହି ଆକସ୍ମିକ ଚରିତ୍ରନଷ୍ଟ ବ୍ୟାପାର ଶୁଣି ଖୁବ୍ ଖୁସି ହୋଇଗଲେ । ଯେଉଁମାନେ ଆଗରୁ ନଷ୍ଟଚରିତ୍ର ବୋଲି ଖ୍ୟାତିଲାଭ କରିଛନ୍ତି, ସେମାନେ ଆନନ୍ଦରେ ନିଜ ନିଜର କାନ ଉପର ବାଳକୁ ଧୀରେ ଧୀରେ ଆଉଁସି କହିଲେ—

ହେଲା ତ ? ହେଲା ଏବେ ? ଏବେ ଦେଖିଲ ତ ? ମର୍ତ୍ତ୍ୟମଣ୍ଡଳରେ ରକ୍ତ ମାଂସର ଦେହ ବହନ କରି ଜନ୍ମ ହେଲେ—ଦେବତା ହେଲେ ମଧ୍ୟ ଏଇ "ଚରିତ୍ର" ପଦାର୍ଥଟିକୁ ରଖିପାରିବା ସାଧ୍ୟାତୀତ । ଦିନେ ନା ଦିନେ ତାହା ନଷ୍ଟ ହେବ । ରାମଶଙ୍କର ବାବୁ ଏମିତି କୋଉ ଇଏକ ?

ଯେଉଁମାନଙ୍କର "ଚରିତ୍ର" ଏବେ ସୁଦ୍ଧା ନଷ୍ଟ ହୋଇ ନାହିଁ ବୋଲି ଏକ ଗ୍ଲାନିକର ଖ୍ୟାତି ରହିଛି—ସେମାନେ ବି ଖୁବ୍ ଖୁସି ହୋଇଗଲେ ରାମଶଙ୍କର ବାବୁଙ୍କର ଏହି ଆକସ୍ମିକ ଅଧଃପତନରେ ! ସେମାନେ ନିଜ ନିଜର ଗୁମ୍ଫକୁ ବାଢ଼େଇଲା ଢଙ୍ଗରେ ଆଉଁସି ଆଉଁସି କହିବାକୁ ଲାଗିଲେ—

"ଚରିତ୍ର" ରକ୍ଷା କରିବା ଯେ କେତେ କଷ୍ଟକର ବ୍ୟାପାର— ଏବେ ବୁଝ । ରାମଶଙ୍କର ବାବୁଙ୍କ ଭଳି ମାତାଦୋରସ୍ତ ଗୃହିନୀକ ଶୁଚିବାୟୁଗ୍ରସ୍ତ ଲୋକ ଯଦି ହଠାତ୍ ବାଟରୁ ଏମିତି ଖସିଯାନ୍ତି—ତେବେ ଏଥିରୁ ବୁଝ—ଆମେ ସବୁ କି କଷ୍ଟରେ ଏହି "ଚରିତ୍ର"ଟିକୁ ରକ୍ଷାକରି ଏଯାଏଁ ବସିଛୁ । ଆମ୍ଭେମାନେ ଯେ ଏସବୁ ବ୍ୟାପାରରେ ଅସାଧାରଣ ଚରିତ୍ରବଳର ଅଧିକାରୀ—ଏଥିରେ ଆଉ ସନ୍ଦେହ କରିବାର କିଛି ଅଛି କି ?

ନାନାଲୋକେ ନାନା କଥା କହିଲେ । କିଏ କହିଲା—ଏସବୁ "ଗର୍ଜନଶୀଳ ଚାଳିଶ" (roaring forty)ର ଲକ୍ଷଣ । ଭଦ୍ରଲୋକଙ୍କର ମୁଣ୍ଡ ବିଗିଡ଼ିଗଲା ।

ଆଉ ଜଣେ କହିଲା—ଭଦ୍ରଲୋକ ବୁଢ଼ା ବୁଢ଼ୀ ପାଣି ପିଅନ୍ତି । ଆଜି ସିନା ଧରା ପଡ଼ିଗଲେ ।

ଖୁସି ହୋଇ ଛାତ୍ରମାନେ କହିଲେ—

ଏହାଦ୍ୱାରା ବରଂ ଭଲ ହେଲା । ରାମଶଙ୍କର ବାବୁଙ୍କୁ ଜବତ୍ କରିବା ଏଣିକି ସହଜ ହେବ । ଏଣିକି କ୍ଲାସରେ ସିନେମା ପତ୍ରିକା ପଢ଼ିଲେ ସେ ଆଉ କିଛି କହିପାରିବେ ନାହିଁ ।

ପିଅନମାନେ କହିଲେ—

ବଡ଼ ମଜା କଥା ହେଲା ! ତାଙ୍କୁ ଏଣିକି ଫାଙ୍କିବା ସହଜ ହେବ ।

କିରାଣୀମାନେ କହିଲେ—

ଏଣିକି ସେ ମୁଣ୍ଡ ତଳକୁ କରି ଅଫିସ ଭିତରକୁ ପଶିବାକୁ ବାଧ୍ୟ ହେବେ । ଅଫିସରୁ ବାହାରିବେ ମଧ୍ୟ ସେମିତି କରି ।

ତାଙ୍କର ଉପରିସ୍ଥ କର୍ତ୍ତା କହିଲେ—ଈଶ୍ୱର ରକ୍ଷା କଲେ । ରାମଶଙ୍କର ବାବୁଙ୍କ ଗୋପନୀୟ ଚରିତ୍ର ରିପୋର୍ଟରେ କ'ଣ ଲେଖିବି ବୋଲି ଗଭୀର ଚିନ୍ତାରେ ବ୍ୟାପୃତ ଥିଲି । ଭଦ୍ରଲୋକ ମୋତେ ସେ ଚିନ୍ତାରୁ ମୁକ୍ତ ଦେଲେ ।

ନିଜସ୍ୱ ସମ୍ବାଦଦାତାମାନେ ଖବର୍ କାଗଜ ଉପରେ ଚିତ୍କାର ଛାଡ଼ିଲେ—

ଏବେ ଦେଖିଲ ତ ? ଆମେ ଆଗରୁ କହୁଥିଲୁ? ଅଧ୍ୟାପକ ରାମଶଙ୍କରଙ୍କ ସ୍ତ୍ରୀ ଯେ ବହୁବାର ଆତ୍ମହତ୍ୟା କରିବାକୁ

ବସିଥିଲେ—ତାର କାରଣ ରାମଶଙ୍କର ବାବୁ ଏହିଭଳି ବହୁ କୁକାର୍ଯ୍ୟରେ ଗୁପ୍ତରେ ବ୍ୟାପୃତ ଥାଇ ନିଜ ଚରିତ୍ରକୁ ତ ନଷ୍ଟ କରିଛନ୍ତି—

ତା ଛଡ଼ା·········

ମୋଟ ଉପରେ ଅଧ୍ୟାପକ ରାମଶଙ୍କର ବାବୁଙ୍କର ଏହି ଆକସ୍ମିକ ପଦସ୍ଖଳନରେ ଓ ଚରିତ୍ରନଷ୍ଟବ୍ୟାପାରରେ ସମସ୍ତେ ଖୁବ୍ ଖୁସି ହୋଇଗଲେ ।

ରାମଶଙ୍କର ବାବୁ କିନ୍ତୁ ଏଇ "ଚରିତ୍ର" ବିଷୟରେ ମୂଳରୁ ଖୁବ୍ ସଚେତନ ଥିଲେ । ଏଥିରେ ସନ୍ଦେହ ନାହିଁ ଯେ—କେବଳ "ଚରିତ୍ର"ଟିକୁ ସୁନ୍ଦର, ସଂଯତ, ପବିତ୍ର ଓ ଶୃଙ୍ଖଳିତ ରଖିବେ ବୋଲି ସେ ଅନ୍ୟପ୍ରକାର ଅର୍ଥ, ସମ୍ମାନ ଓ କ୍ଷମତାଜନକ ବୃତ୍ତି ଛାଡ଼ି ଏଇ ଶିକ୍ଷାବିଭାଗରେ ପଶି-ଥିଲେ । "ଚରିତ୍ର" କଣ ନ ଜାଣି ସେ ତାଙ୍କର ଅଧ୍ୟାପକ ଜୀବନର ପନ୍ଦରଟି ବର୍ଷ କଟାଇଦେଲେଣି । ରାମଶଙ୍କର ବାବୁ ଗଣିତ ଅଧ୍ୟାପକ । ଧର୍ମ ଓ ଦର୍ଶନ କବିତା ଛଡ଼ା ଅନ୍ୟ ପ୍ରକାର କବିତା ପଢ଼ିଲେ ଚରିତ୍ର ଖରାପିବ ବୋଲି ସେ ସେପ୍ରକାର କବିତା, ଗଳ୍ପ ଓ ଉପନ୍ୟାସ, ନାଟକାଦି ପଢ଼ନ୍ତି ନାହିଁ । ସିନେମା ତ ସେ ଦେଖନ୍ତି ନାହିଁ । ଯଦି ବା କେବେ ଯାନ୍ତି; ତେବେ ଛବି ନ ଦେଖି ସେ ପ୍ରେକ୍ଷାଗୃହରେ ଆଖି ବୁଜିଇ ମାର୍କ କରନ୍ତି କେଉଁ ଛାତ୍ର ବା ଛାତ୍ରୀ ପାଠ ନ ପଢ଼ି ଛବି ଦେଖି ଆସିଛି । ବାଡ଼ ପଟ କଲମୀ ଆମ୍ବଗଛରେ ବଉଳ ଭିତରେ ଲୁଚି ରହି କେବେ ଯଦି କୋଇଲି ବୋବାଏ, ତେବେ ତାଙ୍କର ମନ ହୁଏ ଟେକା ପକାଇ ଉଡ଼ାଇଦେଲେ ଯାଏ । ଜହ୍ନ ରାତିରେ ସେ ଘରୁ ବାହାରନ୍ତି ନାହିଁ । ଗୃହକୁ ବିଶ୍ୱାସ ନାହିଁ । ମଳୟ କଥା ଆଉ କାହିଁକି ବା କହିବା ? ରାମଶଙ୍କର ବାବୁ ହୁରୁଳା ପୋଷାକର ମହାବିରୋଧୀ । ହାବାଇକୁ ସେ ସହିପାରନ୍ତି ନାହିଁ । ଦେହରେ ମଳୟ ବାଜିଯିବ ବୋଲି ସେ ସବୁବେଳେ ପୁରା ସୁଟ୍ ପିନ୍ଧି ପଦାକୁ ବାହାରନ୍ତି ।

କ୍ଲାସରେ ଅବଶ୍ୟ ରାମଶଙ୍କର ବାବୁ ଖୁବ୍ ଭଲ ପଢ଼ାନ୍ତି । ଗଣିତଶାସ୍ତ୍ରରେ ତାଙ୍କର ମୌଳିକତା ଅଛି; କିନ୍ତୁ ଛାତ୍ରୀମାନେ ଅନ୍ୟ-ପ୍ରକାର ମତ ଦିଅନ୍ତି । ଯେଉଁ ଅଧ୍ୟାପକ ମୁହଁକୁ ଚାହିଁ ନ ପଢ଼ାଏ—ତାର ଅନ୍ତର ନାହିଁକି ଆନ୍ତରିକତା ବି ନାହିଁ । ଫଳରେ ଛାତ୍ରମାନେ କହିବା

ମଧ୍ୟ ଆଶ୍ଚର୍ଯ୍ୟ ନୁହେ ଯେ—ଶ୍ୟାମଶଙ୍କର ବାବୁ କେବଳ ଜ୍ଞାନପନ୍ଥୀ—ପ୍ରେମୀ ନୁହନ୍ତି ।

କିନ୍ତୁ ଶ୍ୟାମଶଙ୍କର ବାବୁଙ୍କର ଏ ସବୁ ମନ୍ତବ୍ୟରେ ଯାଏ ଆସେନା କିଛି । ସେ ଭଲଭାବରେ ଜାଣିଛନ୍ତି, ବୁଝିଛନ୍ତି ଓ ବିଶ୍ୱାସ କରନ୍ତି ଯେ 'ଶିକ୍ଷକ ହିଁ ସମାଜର ମେରୁଦଣ୍ଡ' । ସମାଜ ତାର ଚରିତ୍ର ପଦାର୍ଥଟିକୁ ଶିକ୍ଷକର ମେରୁଦଣ୍ଡ ଉପରେ ଥୋଇଦେଇ ନିଶ୍ଚିନ୍ତ ନିର୍ଭରରେ ବସିଛି । ଶିକ୍ଷକର କର୍ତ୍ତବ୍ୟ ହେଉଛି– ସମାଜଦତ୍ତ ଏହି ଚରିତ୍ର ରତ୍ନଟିକୁ ସର୍ବତୋଭାବେ ସର୍ବଶକ୍ତି ବିନିଯୋଗ କରି ରକ୍ଷାକରିବା । ଶିକ୍ଷକ ଜାତି ଓ ଦେଶର ମେରୁଦଣ୍ଡ ହୋଇଥିବାରୁ ଜାତି ଓ ଦେଶର ଅନ୍ୟ ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକ ଯେତେ ଇଚ୍ଛା ସେତେ ଆନ୍ଦୋଳିତ ହେଲେ ଯାଏ ଆସେ ନାହିଁ, ମାତ୍ର ମେରୁଦଣ୍ଡ ସର୍ବଦା ସ୍ଥିର ଓ ସରଳ ରହିବା ଉଚିତ ।

ନିଜର ମେରୁଦଣ୍ଡକୁ ମଧ୍ୟ ସର୍ବଦା ସ୍ଥିର ଓ ସରଳ ରଖିଥିଲେ ଶ୍ୟାମଶଙ୍କର ବାବୁ ଆଜକୁ ପନ୍ଦର ବର୍ଷ ଧରି । ଦେହସୁଦ୍ଧା ହୋଇଗଲାଣି ଏହି ମିତସଂଯମ ଆଉ ଶୃଙ୍ଖଳାର ଜୀବନ ।

ଅବଶ୍ୟ ଦେହଟା ଅନେକ କଥା ସହିଯାଏ; କାରଣ "ଦେହ"ର ଦାବୀଟା ଏତେ ବେଶୀ ନୁହେ– ଏବଂ ଯେତେ ବେଶୀ ହେଲେ ବି ତାହା ଶ୍ୟାମଶଙ୍କର ବାବୁଙ୍କ ଭଳି ବ୍ୟକ୍ତିମାନଙ୍କର ଖୁବ୍ ସହଜରେ ଅଳ୍ପକରେ ମେଣ୍ଟିଣ ହୋଇଯାଏ ।

ମାତ୍ର ଦେହ ଭିତରେ ଶ୍ରେଷ୍ଠ ଜଣାଟିଏ ଭଳି କେଉଁଠି ଲୁଚି ରହିଛି 'ମନ' ବୋଲି ଯେଉଁ ପଦାର୍ଥ, ସେ ବେଳେ ବେଳେ ଫୋଡ଼ ହୋଇଯାଏ—ବିଦ୍ରୋହ କଲା ଭଳି ସଁ ସଁ ହୁଏ – ମୁକ୍ତି ଲାଗି ସେ ପାଗଳ ହୋଇ ଉଠେ । ମନର ଏଇ ମୁକ୍ତି-ନିଶା ଶେଷରେ ଆତ୍ମାକୁ ବି ଧରେ ଆଉ ଆଶ୍ଚର୍ଯ୍ୟ ଭାବେ ଉଭୟଙ୍କର ଏହି ସହଯୋଗ ମନର ଓ ଆତ୍ମାର । ସାରଥିର ମୁକ୍ତି-ଉନ୍ମାଦନାରେ ରଥୀର ମୁକ୍ତି-ଉନ୍ମାଦନା ଯେତେବେଳେ ମିଶି ଏକାକାର ହୋଇଯାଏ, ସେତେବେଳେ ରଥ କି ଆଉ ସମ୍ଭଳା ପଡ଼େ ? ପଥର ସୀମାକୁ ଟପି ସେ ଅପଥରେ ଧାଏଁ ।

ରାମଶଙ୍କର ବାବୁଙ୍କ ଭିତରେ ଧାଇଁବାର ବ୍ୟାକୁଳତା ଆସିଛି ଅନେକ ଥର । ଦୁନିଆରେ ସମସ୍ତେ ଧାଇଁଛନ୍ତି – କେବଳ ତାଙ୍କ ଛଡ଼ା ।

ରାସ୍ତାରେ ପରସ୍ପରକୁ ପଛରେ ପକାଇ ଧାଇଁଛନ୍ତି ଗାଡ଼ିମାନେ ।

ଆକାଶରେ ଦୁଇପାଖେ ମହାଶୂନ୍ୟର ବ୍ୟର୍ଥତାକୁ ପକ୍ଷରେ ପିଟି ପିଟି ଉଡ଼ି ଉଡ଼ି ଚାଲିଛନ୍ତି ପକ୍ଷୀମାନେ ।

ନଦୀର ଦୁଇ ତଟସୀମାକୁ ଧକ୍‌କା ମାରି ଖାଇଖାଇ ଧାଇଁ ଚାଲିଛନ୍ତି ସ୍ରୋତମାନେ ।

ସମସ୍ତେ ଧାଇଁଛନ୍ତି—
ପଡ଼ୁଛନ୍ତି –
ଉଠୁଛନ୍ତି—
ପୁଣି ଧାଇଁଛନ୍ତି ।

ମୁକ୍ତିର ଅର୍ଥ ଧାଇଁବାରେ । ଧାଇଁଲେ ଇ ଦେହର ଉତ୍ତାପ ବଢ଼ିଯାଏ—ରକ୍ତର ସ୍ରୋତ ଗତିଶୀଳ ହୋଇଉଠେ—ନିଶ୍ୱାସ ଖର ହୁଏ—ହୃତ୍‌ପିଣ୍ଡର ସ୍ପନ୍ଦନ ବାରି ହୋଇପଡ଼େ ସ୍ପଷ୍ଟ – ହୃତ୍‌ପିଣ୍ଡର ଏଇ ଦ୍ରୁତ ସ୍ପନ୍ଦନ ହିଁ ମୁକ୍ତ ବକ୍ଷପୁରେ ସଜାଗ ପରିଚୟ ଦେଇଥାଏ, ମୁକ୍ତି ନୂଆ । ଧାଇଁବାରେ ସେହି ନୂତନତାର ସ୍ୱାଦ ମିଳିଥାଏ । ନ ଧାଇଁଲେ ନିଜର ଅସ୍ତିତ୍ୱ ବକ୍ଷପୁରେ ବେଳେ ବେଳେ ସନ୍ଦେହ ଉପୁଜେ । ଧାଇଁବା ଭିତରେ ହିଁ ରହିଛି ନୂତନ ଜୀବନର ପ୍ରମୁକ୍ତ ସ୍ୱାଦ ।

ମାତ୍ର ଅଧ୍ୟାପକ ରାମଶଙ୍କର ବାବୁ ଆଦୌ ଧାଇଁ ନ ଥିଲେ । ରାସ୍ତାର ବାମପଟେ ତଳକୁ ମୁହଁ ପୋତିପୋତି ଛତାର ଗୋଡ଼ରେ ଭୂଇଁକୁ ଡ଼ିଆ ମାରି ମାରି ସେ ଘରୁ ବାହାରକୁ ଓ ବାହାରୁ ଘର ଭିତରକୁ ଖୁବ୍ ଧୀରେ ଧୀରେ ଅତି ସନ୍ତର୍ପଣର ସହିତ ଯିବା ଆସିବା କରନ୍ତି ।

ଫଳରେ ଦେହର ଉତ୍ତେଜନା କମି ଆସୁଥିଲା; ମାତ୍ର ମନର ଉତ୍ତେଜନା ବଢ଼ିଯାଉଥିଲା ଭିତରେ ଭିତରେ । ପଦାକୁ ବାହାରିବା ଲାଗି ତାକୁ ବାଟ ନ ମିଳିଲେ—ତାହା ଭିତରକୁ ଫଟାଇଦେଇ ଯେ କୌଣସି ବାଟ ନିଜେ ପ୍ରସ୍ତୁତ କରି ପଦାକୁ ବାହାରି ଆସିବ ଇ ଆସିବ । ଆଜି ନ ହେଲେ ଆସିବ—କାଲି ହେଲେ ଆସିବ ।

ରାମଶଙ୍କର ବାବୁଙ୍କ ଭିତରେ ସେହି ଉତ୍ତେଜନା ବାଟ ଖୋଜୁଥିଲା ।

× × × × ×

କିନ୍ତୁ ଘଟଣାଟି ସେମିତି କିଛି ନାଟକୀୟ ବ୍ୟାପାର ନୁହେଁ । ବିଶେଷତଃ ଘଟଣାଟିର ଆରମ୍ଭରୁ ମନେ ହେଉଥିଲା ଯେ ବିଶେଷ କିଛି ଗୋଟାଏ ଶେଷ ଆଡ଼କୁ ଘଟିଯିବ—ଯାହାକି ବହୁ ସମୟ ଯାଏ ଚାଲିବ ଏବଂ ବହୁ ଉପର ଘଟଣା, ଶାଖା ଘଟଣାରେ ଛନ୍ଦାଛନ୍ଦି ହୋଇ—ବଡ଼ି କମି—ଉଠି ପଡ଼ି—ସେ ଗୋଟାଏ ମହା ହୁଲସ୍ଥୂଲ ବ୍ୟାପାରରେ ପରିଣତ ହୋଇ – ଗୋଟିଏ ବିରାଟ ଉପନ୍ୟାସ ଲାଗି ଖୋରାକ ହୋଇ ମଧ୍ୟ – ଆହୁରି ବେଶୀ ଲାଗ ଘଟଣା ବନି ପଡ଼ିବ ।

ମାତ୍ର ଦୁର୍ଭାଗ୍ୟ । ଗୋଟିଏ ସାଧାରଣ ଆୟତନର ଗଳ୍ପ ଲାଗି ମଧ୍ୟ ରାମଶଙ୍କର ବାବୁ ଘଟଣା ଘଟାଇପାରିଲେ ନାହିଁ । ଶେଷ ଆଡ଼କୁ ଘଟଣାଟା ଏଭଳି ସହଜ, ମାମୁଲି ଆଉ ପାରିବାରିକ ହୋଇଉଠିଲା ଯେ ସେସବୁ କଥା ଯେତେ ଯଥାଯଥ ଭାବେ ବର୍ଣ୍ଣନା କଲେ ମଧ୍ୟ ବିଜ୍ଞ ପାଠକ-ପାଠିକାମାନେ ନିଶ୍ଚୟ ମନେ କରି ପାରନ୍ତି ଯେ, "ଭଦ୍ରଲୋକଙ୍କର ଗଳ୍ପ ଲେଖିବା କ୍ଷମତା ଗଲାଣି—କଳ୍ପନାକୁ ବାଘ ଖାଇଲାଣି । ଏଣିକି ସେ କେବଳ ନିଜର ଉତ୍ତେଜନାହୀନ ମାମୁଲି ପାରିବାରିକ ଜୀବନଟିକୁ ଅତି ଆଭୁରି ଭାବେ ବର୍ଣ୍ଣନା କରି ଚାଲିଛନ୍ତି । ଭଦ୍ରଲୋକଙ୍କର ଏଣିକି କଲମ ଛାଡ଼ିବା ବେଳ ହୋଇ ଗଲାଣି ।"

ମୋର ବିଜ୍ଞ-ପାଠକପାଠିକାମାନଙ୍କର ଆକ୍ଷେପ ବିରୁଦ୍ଧରେ ମୋର ଆଉ କହିବାର କିଛି ନାହିଁ । କିନ୍ତୁ କଅଣ ଆଉ କରାଯାଏ ? ଏହି ତ୍ରୁଟି ଲାଗି ମୁଁ କେବଳ ମନେ ମନେ ଅଧ୍ୟାପକ ରାମଶଙ୍କର ବାବୁଙ୍କୁ ଦାୟୀକରି ସନ୍ତୁଷ୍ଟ ରହିଛି ଓ "ବିଗଳ୍ପ"ର ସୁଯୋଗ୍ୟ ସମ୍ପାଦକଙ୍କ ମୁଣ୍ଡ ଉପରେ ସବୁ ଭାର ଅର୍ପଣ କରି ଏବେ କଥାଟା କହିଦେଉଛି । "ବିଗଳ୍ପ"ର ତତ୍କାଳୀନ ସମ୍ପାଦକ – ପ୍ରଖ୍ୟାତନାମା ଗାଳ୍ପିକ ଶ୍ରୀଯୁକ୍ତ ମନୋଜ ଦାସ ।

× × ×

ମାସଟା ମାଘ ମାସ ।

ସେଦିନ ବ୍ରାହ୍ମମୁହୂର୍ତ୍ତରେ ଉଠି ସବୁଦିନ ପରି ଅଧ୍ୟାପକ ରାମଶଙ୍କର ବିଷ୍ଣୁ ସହସ୍ରନାମ ଓ ଅଷ୍ଟକ ଆଦି ବଡ଼ ପାଟିରେ ଆବୃତ୍ତି କରି ନିତ୍ୟକର୍ମ ଶେଷ କରିଥିଲେ । ତା'ପରେ ଗ୍ଲାସେ ମିଶ୍ରୀ ସର୍ବତ ଖାଇ—ଗରମ ପୋଷାକ ପିନ୍ଧି – ପ୍ରତିଦିନର ସକାଳ ଭଳି ଦୁଇ ତିନି ମାଇଲ ରାସ୍ତା ପ୍ରଭାତ ଭ୍ରମଣରେ ବାହାରିଗଲେ—ସ୍ତ୍ରୀ ସୁମାତି ଦେବୀ ଗାଧୋଇବା ଲାଗି ଷ୍ଟୋଭ୍‌ରେ ପାଣି ଗରମ କରୁ କରୁ କହିଲେ—

ମଫଲରଟା ମୁଣ୍ଡରେ ଭଲକରି ବାନ୍ଧ । ଭାରି କୁହୁଡ଼ି ହୋଇଛି । ସବୁଦିନ ସକାଳେ ଏତିକ ମନେ ନ ପକାଇଦେଲେ ତୁମର ଆଉ ମନେ ପଡ଼ିବନି ;

ରାମଶଙ୍କର ବାବୁଙ୍କୁ ଆଜି ସ୍ତ୍ରୀଙ୍କର ଏହି କାରୁଣ୍ୟସମ୍ପୃକ୍ତ ଉପଦେଶ ବାଣୀ ସକାଳଟାରୁ ସେତେ ଭଲ ଲାଗିଲା ନାହିଁ । ଏଇ ସକାଳଟା ହି ମୁକ୍ତିର ସର୍ବଶ୍ରେଷ୍ଠ ପ୍ରତୀକ । ମାତ୍ର ସ୍ତ୍ରୀଙ୍କର ଶୃଙ୍ଖଳିତ ଉପଦେଶ ଭିତରେ ମଫଲରଟା କେବଳ ମୁଣ୍ଡକୁ ବାନ୍ଧେ ନାହିଁ—ମନଟାକୁ ବି ବାନ୍ଧି ପକାଏ ।

ସୂର୍ଯ୍ୟ ଉଦୟ ହୋଇ ନାହିଁ; କିନ୍ତୁ ଆଲୁଅ ପଡ଼ି ଆସିଲାଣି । ମାଘ ଶେଷର କୁହୁଡ଼ିଆ ସକାଳ । ବାଡ଼ି କଲମୀ ଆମ୍ବ ଗଛରେ କୋଇଲିଟିଏ ବୋବାଇବାରେ ଲାଗିଛି । ସକାଳର ଏଇ ପବନଟା ଶୀତଳ; କିନ୍ତୁ ଜଡ଼ ନୁହେଁ । ଏଥିରେ ମୁକ୍ତିର ପ୍ରେରଣା ଭରି ରହିଛି । କିନ୍ତୁ ସ୍ତ୍ରୀଙ୍କର ଏଇ ସବୁଦିନଆ କାରୁଣ୍ୟ ସମ୍ପୃକ୍ତ ଉପଦେଶର ଶୃଙ୍ଖଳା ଆଜି ହଠାତ୍ ତାଙ୍କୁ କାହିଁକି ଟିକେ ବିରକ୍ତ ଲାଗିଲା ।

ତେବେ ସେ ଯାହା ହେଉ—ରାମଶଙ୍କର ବାବୁ ନୀରବରେ ଆପାଦମସ୍ତକ ଆବୃତ କରି ପ୍ରଭାତ ଭ୍ରମଣରେ ବାହାରିଗଲେ । କିଛି ସମୟ ବିଶୁଦ୍ଧ ଅମ୍ଳଜାନ ସେବନ—ଅଲଟ୍ରାଭାଓଲେଟ୍‌ରଶ୍ମି ଉପଭୋଗ ଓ ଭ୍ରମଣ ବ୍ୟାୟାମ ଶେଷ କରି ସାତଟାବେଳକୁ ଘରକୁ ଫେରିଆସିଲେ । ସଙ୍ଗେ ସଙ୍ଗେ ସ୍ତ୍ରୀ ଗୁଡ଼ା ଜଳଖିଆ ଥୋଇଦେଇ କହିଲେ—ଏଥର ପଢ଼ ।

ରାମଶଙ୍କର ବାବୁ କିଛି ସମୟ ପଢ଼ିଲେ । ତା'ପରେ ସାଢ଼େ ଅଠଟାବେଳେ ସୁମାତି ଦେବୀ ବ୍ୟାଗ୍‌ଟି ଆଣି ଆଗରେ ଥୋଇଦେଇ କହିଲେ—

ବାଇଗଣ କଲେ—ଆଳୁ ୧ କଲେ—ଶୀମ ପାଏ—କୋବି ୨ଟା —ମାଛ ।

ବଜାରରୁ ଫେରି ସେ ସ୍ନାନ ମାଜଣା ସାରି ଠାକୁରପୂଜା କଲେ ଏବଂ ଖାଇସାରି ପୋଷାକ ପିନ୍ଧିବାକୁ ଯାଉଛନ୍ତି—ସ୍ତ୍ରୀ କହିଲେ—

ଏମିତି ତରତର କାହିଁକି ? କ୍ଲାସ ତ ଏଗାରଟା ବେଳେ । ବହୁତ ସମୟ ଅଛି । ପନ୍ଦର ମିନଟ୍ ବିଛଣାରେ ପଡ଼ିଯାଅ । ଖବର କାଗଜଟା ଆଣି ବାପାଙ୍କୁ ଦେଏଲେ ମାନୁ ! ଖାଇସାରି ସଙ୍ଗେ ସଙ୍ଗେ ଯାଅ ନାହିଁ ବୋଲି ସବୁଦିନ କହିଲେ ଯାଇ ହେବ । ଖାଇସାରି ଧାଇଁ ଧାଇଁ ଯାଇ ଗୁଡ଼ାଏ ବକିଲେ ଡ଼ିସେଣ୍ଟ୍ରି ହେବ ନାହିଁ ତ ଆଉ କ'ଣ ହେବ ?

ରମେଶଙ୍କର ବାବୁ ବାଧ ହୋଇ ପ୍ୟାଣ୍ଟଟି ର୍ୟାକ୍‌ରେ ଥୋଇ ଖବର କାଗଜ ଧରି ବିଛଣାରେ ପଡ଼ିଲେ । ବଡ଼ ବିରକ୍ତିକର ଏ ଜୀବନ !! ଉଃ !

ଖବର କାଗଜର ପ୍ରଥମ ପୃଷ୍ଠାରେ ତାଙ୍କର ଆଖି ପଡ଼ିଲା ମାତ୍ରେ ସେ ପ୍ରଥମେ ଦେଖିଲେ "ବେଦନାନିଗ୍ରହ ରସ"—ଶୂଳ, ଅମ୍ଳପିତ୍ତ, ବମନ, ଖଟା ହାକୁଟି, ଆମାଶୟ ଇତ୍ୟାଦି...

ରମେଶଙ୍କର ବାବୁଙ୍କୁ ମହା ବିରକ୍ତ ଲାଗିଲା । ଅବଶ୍ୟ ତା' ତଳକୁ ଆନ୍ତର୍ଜାତିକ ରାଜନୀତି କ୍ଷେତ୍ରରେ ଏକ ଚମକପ୍ରଦ ଘଟଣା ବଡ଼ ଅକ୍ଷରରେ ଲେଖା ଯାଇଥିଲା । ମାତ୍ର ତାଙ୍କୁ ବୋଧ ହେଲା—ଏହି ଚମକପ୍ରଦ ଘଟଣାଗୁଡ଼ିକ ବି ନିତାନ୍ତ ଗତାନୁଗତିକ—ସ୍ତ୍ରୀଙ୍କର ଉପଦେଶ ଭଳି ।

ଖବର କାଗଜଟି ଥୋଇ ସେ ଘଣ୍ଟା ଦେଖୁଛନ୍ତି, ବଡ଼ଝିଅ ମାନୁ ଆସି କହିଲା—

"ବାପା, ଟାଇମ୍ ହେଲାଣି – ପୋଷାକ ପିନ୍ଧ ।"

.........ତା'ପରେ କଲେଜରେ ପାଞ୍ଚଟି ଘଣ୍ଟା କାର୍ଯ୍ୟ । ଲଗ୍ ଲଗ୍ ତିନୋଟି ଘଣ୍ଟା ସେ ତିନୋଟି ଟ୍ୟୁଟୋରିଆଲ କ୍ଲାସରେ ସେଇ ଗୋଟିଏ ଅଙ୍କକୁ ତିନିଥର ବୁଝାଇଲେ । ଶେଷବେଳକୁ ତାଙ୍କର ଧୈର୍ଯ୍ୟଚ୍ୟୁତ ହୋଇଥିଲା । ଏ ଜୀବନ ଆଉ ଏ କାର୍ଯ୍ୟ ନିତାନ୍ତ ଗତାନୁଗତିକ,

ଦେହଘଷିଆ ଆଜ ଉତ୍ତେଜନାହୀନ ହୋଇ ପଡ଼ିଲାଣି । କଲେଜର ଘଣ୍ଟା ସେମିତି ବାଜୁଛି ସବୁଦିନ ଭଳି, ସେଥିରେ ନୂତନତା ନାହିଁ । ଅବଶ୍ୟ ପ୍ରତିବର୍ଷ କଲେଜରେ ନୂଆ ନୂଆ ଛାତ୍ରଙ୍କ ସଙ୍ଗେ ପରିଚୟ ହୁଏ । ମାତ୍ର ଏ ପରିଚୟଟା ବି ସେଇ ଗତାନୁଗତିକ ପରିଚୟ । ସେମାନଙ୍କ ସଙ୍ଗେ ସମ୍ପର୍କଟା ବି ସେହିଭଳି ଗତାନୁଗତିକ । ପାତ୍ର ନୂଆ— କିନ୍ତୁ ଜଳ ସେଇ ଏକ ପ୍ରକାର ।

ନାଃ—ବଡ଼ ବିରକ୍ତିକର ଏ ଜୀବନ ।

ହଠାତ୍ ତାଙ୍କୁ ଲାଗିଲା—କେବଳ ନିଜର ଜୀବନ ନୁହେଁ—ଏ ଦୁନିଆଟା ବି ଖୁବ୍ ଗତାନୁଗତିକ ହୋଇ ଉଠିଲାଣି । ଏଥିରେ ଆଉ ନୂତନତାର ଉନ୍ମାଦନା ନାହିଁ । ଏଥିରୁ ମୁକ୍ତି ଦରକାର ।

ମୁକ୍ତି ଏକାନ୍ତ କାମ୍ୟ ।

ଏ ସାଞ୍ଜ୍ ଦେହକୁ ଭାରି କାଟିଲାଣି ।

ତା' ପରେ ଘରକୁ ଫେରିବା କଥା । ସାଢ଼େ ଛଅଟା ବାଜିଲାଣି ।

ଘରେ ପଶୁ ପଶୁ ସବୁଦିନ ଭଳି ତାଙ୍କର ପୋଷା ଧଳା ଶର୍ଗା ବିଲେଇଟା ଲାଞ୍ଜ ଫୁଲାଇ ମିଆଉଁ ମିଆଉଁ କରି ତାଙ୍କ ଗୋଡ଼ରେ ଘଷିହୋଇ ଏପଟ ସେପଟ ବୁଲିଲା । ଏତିକିବେଳେ ରାମଶଙ୍କର ବାବୁଙ୍କର ମନଟା ହଠାତ୍ ଚିଡ଼ଚିଡ଼ା ହୋଇ ଉଠିଲା । ସବୁଦିନ କଲେଜ ବାହୁଡ଼ାଣି ଘରେ ପାଦ ଦେଲା ମାତ୍ରେ ଏ ବିଲେଇଟା ଏମିତି ହେବ । ତା'ପରେ ସେ ଡ୍ରଇଁ ରୁମ୍‌ରେ ବସୁ ବସୁ—ପାଞ୍ଚ ମିନିଟ୍ ଭିତରେ ଚାହା ଆସିବ — ସେ ଚାହା ଖାଇବେ – ବିଲେଇଟା ସେମିତି ମିଆଉଁ ମିଆଉଁ ହୋଇ ଚକ୍‌କରି ଦେଉଥିବ ତାଙ୍କ ଚାରିପଟେ ଏବଂ ଚାହା କପ୍‌ରୁ ଶେଷ କେତେ ଟୋପା ସେ ତଳେ ଢାଳିଦେବେ—ସେତିକି ସେ ଚାଟି ଦେଇ ପୁଣି ତାର ଗନ୍ତବ୍ୟ ପଥରେ ଚାଲିଯିବ ।

ଜୀବନଟା ଏମିତି ଗୋଟେ ଧରାବନ୍ଧା ଗତିରେ ପଡ଼ିଗଲାଣି । ଠିକ ଆଜ ସଂସାରର ଦୁଇଟା ଲୁହାଧାରଣା ଉପରେ ମାଲଗାଡ଼ି ଭଳି ହିଁ ତାଙ୍କୁ ଚାଲିବାକୁ ପଡ଼ିଲାଣି ପନ୍ଦର ବର୍ଷ ଧରି । ଏ ଜୀବନରେ ଚାଞ୍ଚଲ୍ୟ ନାହିଁ—ଉନ୍ମାଦନା ନାହିଁ—ଉତ୍ତେଜନା ନାହିଁ । ସାଧାରଣ ଷ୍ଟେସନରେ

ଯେତିକି କୋଳାହଳ ମୁଖରତା ଓ ଜଠିବାର ଓହ୍ଲାଇବାର ସ୍ନାୟୁବିକ ଉତ୍ତପ୍ତ ଆବେଗପୂର୍ଣ୍ଣ ସନ୍ଧିଗ୍ଧତା--ସେତିକି ମଧ୍ୟ ନାହିଁ । ଏ କେବଳ ଲୁହାଧାରଣା ଉପରେ ମାଲଗାଡ଼ିର ନିଷ୍ପ୍ରାଣ ଜଡ଼ ଘଣ୍ଟାବିହୀନ ନୀରବ ଧୀର ମନ୍ଥର ଗତି । ଏଥିରେ ଦୁର୍ଘଟ 'ଚାନସ'ଟା ରହିଛି ଅକ୍ଷତ ହୋଇ – ମାତ୍ର ଯେତିକି କ୍ଷତି ଓ କ୍ଷତ ଭିତରେ ଆମ୍ଭ ଜୀବନର ଉତ୍ତାପ ଉତ୍ତେଜନାରେ ସଚେତ ହୋଇଉଠେ – ପୁଲକିତ ହୋଇଉଠେ— ସେତିକି କ୍ଷତି ବା କ୍ଷତ ଏଥିରେ ମିଳେ ନାହିଁ ।

ଏ ଜୀବନର ଗତି ଅଛି—ମାତ୍ର ସ୍ପିଡ଼ ନାହିଁ । ତା' ଅପେକ୍ଷା ବରଂ ଦୁର୍ଘଟଣା ଭଲ । ବନ୍ଧା ଧାରଣା ଉପରୁ ତଳକୁ ଖସିପଡ଼ ଭାଙ୍ଗିଯାଇ— ଛୁଟିକି ପଡ଼ – ଏଣେ ତେଣେ ଛିଟିକି ପଡ଼ିବାରେ ବରଂ ଜୀବନକୁ ବେଶ୍ ଅନୁଭବ କରିହୁଏ ।

ବିଲେଇଟା ତଥାପି ମିଆଉଁ ମିଆଉଁ ହୋଇ ଗୋଡ଼ରେ ଘଷି ହେଉଛି । ରାମଶଙ୍କର ବାବୁ ହଠାତ୍ କେମିତି ଗୋଟେ ପ୍ରକାର ହୋଇଗଲେ । ଚଉକି ଉପରେ ବସିରହି ସେ ଏକପ୍ରକାର ନାଟକୀୟ ଭାବରେ କଟମଟ କରି ବିଲେଇଟି ଆଡ଼କୁ ଚାହିଁରହିଲେ ।

ସବୁ ବିଲେଇଗୁଡ଼ାକ ପ୍ରାୟ ସମାନ । ଏମିତି ଲାଞ୍ଜ ଫୁଲେଇବେ । ମିଆଉଁ—ମିଆଉଁ ହେବେ । ଗୋଡ଼ରେ ଘଷି ହେବେ । ଶେଷରେ ଚୁଟିଚୁଟି ଦେଇ କାଉ ବୁଲାଇ ପାଖ ଚୁଡ଼ ଚାଲିଯିବେ ଆଉଆଡ଼େ ।

ବିଲେଇଟା ଅର୍ଥପୂର୍ଣ୍ଣ ଆଖିରେ ତାଙ୍କ ଆଡ଼କୁ ଅନାଇ ମିଆଉଁ ମିଆଉଁ ହେଲା ।

ରାମଶଙ୍କର ବାବୁ ନାଟକୀୟଭାବେ ଗୋଟାଏ ହସ ହସିଦେଇ ମାର୍ଜାର ନିକଟରେ ଗୋଟିଏ ବକ୍ତୃତା ଝାଡ଼ିଲେ –

ବୁଝୁଛି – ବୁଝୁଛି । ତୁମକୁ ମୁଁ ଆଜ ଦେଖୁ ନାହିଁ କେବଳ – ବୁଝିଲ ? ପିଲାଦିନୁ ଦେଖିଆସୁଛି – ତୁମେ ସବୁ ଏକା ଭଳି । ଜଗତରେ ଯେତେ ଧଳା ପୁସି – ସମସ୍ତେ ହିଁ ଠିକ୍ ତୁମରି ଭଳି । କିଛି ପାର୍ଥକ୍ୟ ନାହିଁ ଏମିତି । କଟକଟ ନାଲ ଆଖି ଦୁଇଟା—ଏମିତି ଅବିକଳ ଛଡ଼ା ଛଡ଼ା

ଢେଙ୍ଗା ନଣ – ଏମିତ ଫୁଲୁଣିଆ ଲାଞ୍ଜ – ଆଉ ଶେଷରେ – ଶେଷରେ ଏଇ ମ୍ୟାଉଁ ମ୍ୟାଉଁ......

ଅବିକଳ ସେଇ ଗୋଟିଏ ସ୍ୱର –

ମ୍ୟାଉଁ ମ୍ୟାଉଁ ।

କିଛି ନୂଆପଣିଆ ନାହିଁ ।

ତୁମ ସମସ୍ତଙ୍କ କଣ୍ଠସ୍ୱର ସ୍ୱାଲୁ ଏକାଭଳିଆ ।

ଏଇ ତାଙ୍କ ସ୍ତ୍ରୀଙ୍କ କଣ୍ଠସ୍ୱରଟା ଏବେ କଅଣ ? ଅବିକଳ ତାଙ୍କ ଶାଶୁଙ୍କ କଣ୍ଠ ଭଳି । କିଛି ଫରକ ନାହିଁ ।

ପୁଷିଟା ଫେର୍ ମ୍ୟାଉଁ ମ୍ୟାଉଁ ହେଲା –

ରାମଶଙ୍କର ବାବୁଙ୍କ ମନରେ ପିଲାଦିନର ଗୋଟିଏ ପୁଷି ସମ୍ପର୍କୀୟ ଇଂରେଜୀ କବିତା ପଡ଼ିଗଲା –

"ଡିଙ୍ଗ୍ ଡ଼ାଙ୍ଗ୍ ବେଲ୍

ପୁଷି ଇନ୍ ଦ ୱେଲ୍ ।

ହୁ ପୁଟ୍ ହର୍ ଇନ୍ ?

ଲିଟିଲ୍ ଟମୀ ଥିନ ।

ହୁ ପଟ୍ ହର୍ ଆଉଟ୍ ।

ଲିଟିଲ୍ ଟମୀ ଷ୍ଟାଉଟ୍ ।"

ଏ କବିତାଟିକୁ ଏବେ ବି ତାଙ୍କ ପୁଅ ଶିଖିଯାଇଛି । ମାଆ ତାର ଏଥିକରେ ଭାରି ଖୁସି – ପୁଅ ମନେ ରଖି ପାରିଲାଣି ।

ଗାଇଲୁରେ ଫକୁ ! ଗାଇଲୁ ଦେଖି – ବାପା ଶୁଣିବେ । ହଁ – ଗାଆ ତ ଗାଆ ତ......ଫକୁ ଉତ୍ସାହିତ ହୋଇ ଗାଇ ଚାଲେ—

"ଡିଙ୍ଗ୍ ଡାଙ୍ଗ୍ ବେଲ୍

ପୁସି ଇନ୍ ଦ.."

ରାମଶଙ୍କର ବାବୁଙ୍କୁ ବିରକ୍ତ ଲାଗିଲା ଆଜି ସେ କଥା ମନେପଡ଼ି । ଏଇ ଗୀତଟାକୁ ବି ସେ ଗାଉଥିଲେ ପିଲାଦିନେ ତାଙ୍କ ବାପାଙ୍କ ଆଗରେ ।

ଇଡ଼ିଅଟିକ୍ ! !

ପୁସିଟା କ'ଣ ଆଜିକୁ ପଚାଶ ବର୍ଷ ଧରି ସେଇ କୂଅ ଭିତରେ ପଡ଼ିଛି, ଆଉ ପୁଣି ବାହାରୁଛି ।

ନନ୍‌ସେନ୍‌ସ ! !

କ୍ୱାଏଟ୍ ନନ୍ ସେନ୍ସ ।

ପୁସିଟା ବିଶୁ କଣ୍ଟ୍ରାକ୍ଟରର ଟ୍ରକ ତଳେ ଗୁଡା ପଡ଼ିବ ନାହିଁ କାହିଁ କମ୍ପା ଟ୍ରକ ତଳେ ଗୁଡା ପଡ଼ୁ ପଡ଼ୁ ହଠାତ୍ ଦୁଇପଟର ଚକତଳେ ଅକସ୍ମାତ୍ ରହିଯାଇ—ଟ୍ରକ ଗ୍ଲଲିଗଲା ପରେ ଝାଡ଼ି ଝୁଡ଼ି ହୋଇ ଉଠି ଭଗବାନଙ୍କ କରୁଣା ଲାଭ କରିଥିବା ଯୋଗୁଁ ତାଙ୍କ ନିକଟରେ ପ୍ରାର୍ଥନା କରିବ ନାହିଁ କାହିଁ ?

ନାଃ ।

ପୁସିଗୁଡ଼ାକ ବାବୁ ଏ କଥା କରିପାରିବେ ନାହିଁ । ପୁସି ମାନେଇ ଏହି ଗତାନୁଗତିକତାର ପ୍ରତୀକ । ଘଣ୍ଟା ବାଜିବା କଥା ଏବେ କ'ଣ ?

ବିଶେଷତଃ କଲେଜ ଆଉ ଚର୍ଚ୍ଚର ଘଣ୍ଟା ବାଜିବା ଯେମିତି ଗତାନୁଗତିକ—ପୁସିଗୁଡ଼ିକ ସେମିତି—ଆଉ ତାଙ୍କ ଉପରେ କବିତାଟା ସେମିତି—

କିଛି ନୂତନତା ନାହିଁ ।

ଘରେ ପୁସି ପୋଷିବା ଅପେକ୍ଷା ବରଂ ମୂଷା ପୋଷିବା ଢେର୍ ଭଲ । ମୂଷାଗୁଡ଼ାଙ୍କର ଜୀବନ ଅଛି । ସେମାନେ ଅନ୍ତତଃ ଏଇ ଯୋଷା ପୁସିଟା ଭଳି ଗୋଟିଏ ଗତାନୁଗତିକ ଧାରାରେ ଫୁଲେଇ ହୁଅନ୍ତି ନାହିଁ । ମ୍ୟାଉଁ ମ୍ୟାଉଁ ହୁଅନ୍ତି ନାହିଁ ।

ପୁସି ମାନେଇ ଦେବଦାସିଆ । ତାଙ୍କ ସ୍ତ୍ରୀ ସୁମିତା ଦେବୀଙ୍କ କଥା ଆଉ ଏବେ ଅଧିକା ବା କ'ଣ ।

ସେଇ ଏକା କଥା ।

ଯେ ପୁସି—ସେ ତାଙ୍କ ସ୍ତ୍ରୀ ଏଇ ସୁମିତା ଦେବୀ ।

ଯାଃ—ବଡ଼ ବିରକ୍ତିକର ।

ଗୁଡ଼ା ଆସି ଯାଇଥିଲା । ରମଣଙ୍କର ବାବୁ ଗୁଡ଼ା କପ୍ଟି ପାଟିକି ନେବା ପୂର୍ବରୁ ତଳକୁ ଟିକେ ଢାଳିଦେଲେ । ପୁସି ଚାଟି ଲାଗିଲା ସେତକ । ଗୁଡ଼ା କପ୍ ପାଟିକି ନେଇ ଢୋକେ ପିଇଛନ୍ତି କି ନାହିଁ—ଘରଣୀ ଆଣି ଲୁଙ୍ଗି ଓ ତଉଲିଆଟି ଦେଲେ ।

ଏଥିପାଇଁ ରମଣଙ୍କର ବାବୁ ଝାଡ଼ା ଯିବାର କଥା; ମାତ୍ର ସେ ଖୁବ୍ ନାଟକୀୟ ଢଙ୍ଗରେ କହିଲେ—

ହେ ମାନୁ ? ନେଇଯା ଏ ଲୁଙ୍ଗିଟା ଏଠୁ ।

ପାଇଖାନା ଯିବନି କି ବାପା ?

ଯିବ—ଯିବ । ମାତ୍ର ଆଜ ଏଇ ପ୍ୟାଣ୍ଟରେ ଇ ଯିବ ପାଇଖାନା । ଉଠା ଏ ଲୁଙ୍ଗି ।

ସବୁ ଲୁଙ୍ଗିଗୁଡ଼ାକ ଯୁାଲୁ ନେଇଆ ।

ରୋଷେଇଘରୁ ଘରଣୀ ଆସି କହିଲେ, ପ୍ୟାଣ୍ଟ ପିନ୍ଧି କ'ଣ ପାଇ-ଖାନା ଯିବ ?

ଉଠ, ବାହ ଗୁଡ଼ ।

କଅଣ ମୁଣ୍ଡକୁ ଭୂତ ଚଢ଼ିଲାଣି କି ?

ମୁଁ ଭୂତ ବିଶ୍ୱାସ କରେ ନାହିଁ ।

ତା ହେଲେ ଲୁଙ୍ଗି ପିନ୍ଧି ପାଇଖାନା ଯାଅ ।

ମୁଁ ପାଇଖାନା ନ ଯାଇ ବି ପାରେ ।

ତେବେ ଜଳଖିଆ ଆଣୁଛି, ସେଠି ବସି ଖାଅ ।

ନା—ନା, ଜଳଖିଆ ବି ଆଜ ବନ୍ଦ । ଏମିତି କ'ଣ ଗୋଟେ ମାନେ ଅଛି ଯେ ମୁଁ ଘରକୁ ଫେରିବା ମାତ୍ରେଇ ତୁମର ବଳେଇଟା ଆସି ମୋ ଗୋଡ଼ରେ ଘସିହେବ—ମୋ ମୁହଁକୁ ଚାହିଁ ଗୁଡ଼ାଏ ମ୍ୟାଉଁ ମ୍ୟାଉଁ ହେବ—ତାପରେ ମୁଁ ଚାହା ଖାଇବି ଓ ତାପରେ ଲୁଙ୍ଗି ପିନ୍ଧି ପାଇଖାନା ଯିବି ଓ ପାଇଖାନାରୁ ଆସି ଜଳଖିଆ ଖାଇ ଶେଷରେ ସାନ୍ଧ୍ୟଭ୍ରମଣରେ ବାହାରିବି ?

ସୁମାନ୍ତ ଦେଖି ଅସଲ କଥାଟି ବୁଝିଗଲା ଭଳି ଭାବ ବଡ଼ ଝିଅକୁ ପାଟିକରି ଡାକଲେ—

ଆଲୋ ହେ ମନୁ ! ତୁମକୁ ମୁଁ କେତେଥର କହିଲାଣି ଯେ ବାପା ଆସିଲାବେଳକୁ ସେ ବଳେଇଟାକୁ ତୁମେ ଆର ଘରେ କବାଟ ଦେଇ ରଖିବ ବୋଲି ? ସେ ଅଲକ୍ଷଣୀ ବଳେଇଟା ବି ସବୁଦିନେ ଏତିକି ବେଳକୁ······ବଳେଇ ସବୁ ଦିନେ ଲଞ୍ଜ ଘଷିଲେ ଭାଆରି ଖରାପ······

ସାନ ଝିଅ ରେନି ଆସି କହିଲା—ହଁ ମା, ସେ ପୁସିଟା ଭାରି ଦୁଷ୍ଟ ହେଲାଣି, ଆଜ ମୋ ଦୁଧତକ ସବୁ ପିଇଦେଇଛି ।

ସାନ ପୁଅ ବାବୁଲର ମଧ୍ୟ ପୁସି ଉପରେ ରାଗ କମ୍ ନୁହେଁ । ଦେଖ ତ ମାଆ ! ଦେଖ ତ ! ମୋ ହାତକୁ ଦୁଷ୍ଟ ପୁସି କେମିତି ଆଁ ପୁଡ଼ ଦେଇଛି ! ! ଦେଖ ତ—

ବଡ଼ ପୁଅ ଫକୁର ଅଭିଯୋଗ ସବୁଠାରୁ ମାରାତ୍ମକ—ମାଆ, ଆଜି ସେ ବଦମାସ୍ ପୁସିକ ଘରେ ରଖିବାର ନୁହେଁ । ସେ ଆଜ ମୋ ବହି ଉପରେ ମେଞ୍ଚାଏ —ଛି—ଛି—ଥୁଃ—

ସୁମାନ୍ତ ଦେବୀ କହିଲେ—ସମସ୍ତେ ତ ଏତେବେଳକୁ ଆସି ତା ବରୁଦ୍ଧରେ ଗୁହାରି କରୁଛ, ମାତ୍ର ସେ କଅାଁଲଗା ଅଲକ୍ଷଣୀ ପୁସିକୁ ଏ ଘରେ ରଖିଛି କଏ ?

ସମସ୍ତେ ଏକସ୍ୱରରେ କରୁଣ କଣ୍ଠରେ କହିଲେ—

କେଜାଣି ମାଆ ? କେଜାଣି ? ଆମେ ତ କେହି ତାକୁ ରଖିନୁ !

ସୁମାନ୍ତ ଦେବୀ ରାଗ ତମତମ ହୋଇ କହିଲେ—ହଉ—ଆଚ୍ଛା ହଉ । ଆଜ ତାକୁ ମୁଁ ଏଘରୁ ବାହାର କରୁଛି । ରଇଥା, ଆଜ ଆସୁ ଚନ୍ଦନ । ତାକୁ କହିଦେବ—ଅଖା ଭିତରେ ଭର୍ତ୍ତିକରି ତାକୁ ସେ କୁଆଡ଼େ ଛାଡ଼ିଦେଇ ଆସିବ । ହଉ—ତେବେ ବସ, ମୁଁ ଜଳଖିଆ ଆଣୁଛି । ହେ ମାନୁ ! ସେ ପୁସିକ ନେଇ ଯା ତେଣେ । ବାପା ଜଳଖିଆ ଖାଇବେ ।

ରାମଶଙ୍କର ବାବୁ ସ୍ତ୍ରୀଙ୍କ କଥା ଶୁଣି ଆହୁରି ବିରକ୍ତ ହୋଇ-ଉଠିଲେ । ସ୍ୱାମୀର ସମସ୍ୟା ବୁଝିବା ଲାଗି ସବୁ ସ୍ତ୍ରୀମାନଙ୍କର ଏହା ହିଁ ସେଇ ଗତାନୁଗତିକ ରୀତି । ପ୍ରକାଶ୍ୟରେ କହିଲେ—

ତୁମେ ବୁଝିଲ ଛେନାଗୁଡ଼ । ମଣିଷର ଯେ ଗୋଟିଏ ମନ ଅଛି ଆଉ ସେ ମନଟା ଯେ ଲୁହାଧାରଣା ଉପରେ ଧୀରେ ଧୀରେ କରାପଦରେ ଚାଲୁଥିବା ଗୋଟିଏ ମାଲଗାଡ଼ି ନୁହେଁ—ଏକଥା ବୁଝିବାକୁ ତୁମ ମୁଣ୍ଡରେ ମଗଜ ନାହିଁ··· ସ୍ୱାଲୁ ପୁସିଟାର କ ଦୋଷ ? ଏ ପୁସି ଗଲେ ବ ଆଉ ଗୋଟାଏ ପୁସି ଆସିବ—ଆଉ ସେଇଟା ବ ଅବିକଳ ଏହିପରି ପୂରା ପଞ୍ଚ--ଆଉ ବୋବେଇବ ଏଇମିତ ମ୍ୟାଉଁ ମ୍ୟାଉଁ—ଏଇମିତ ମୂଳେଇ ହେବ ଲାଞ୍ଜ ଟେକ--ପୁସିଗୁଡ଼ାକ ସ୍ୱାଲୁ ସବୁ କାଳରେ-ସବୁ

ସ୍ଥାନରେ ଏକାଭଳ·········ତା' ପରେ ଟିକଏ କଅଣ ଭାବଲା ପରି ହୋଇ ସେ ପୁଣି କହିଲେ ଗମ୍ଭୀର ହୋଇ –

ମୁଁ ଦେଖିଲଣି – ଏଣିକି ଆଉ ଚଳିବ ନାହିଁ ।

ସୁମାନ୍ତି ଦେବୀ ଚମକି ପଡ଼ିଲେ । କ'ଣ ଚଳିବ ନାହିଁ ?

ମାନେ – ଏମିତି ଆଉ ଚଳିବ ନାହିଁ । ଅନ୍ୟ ପ୍ରକାର ଚଳିବ ଏଣିକି ।

ତୁମେ କଅଣ କହୁଛ—ମୁଁ ବୁଝିପାରିବ ନାହିଁ ।

ତୁମେ ବୁଝିବ ବୋଲି ମୁଁ ମଧ୍ୟ ଆଶା କରି ନାହିଁ କମ୍ବା ସେଥିଲାଗି ମଧ୍ୟ ମୁଁ କହୁନାହିଁ ।

କ'ଣ କଳ କରିବ ବୋଲି ପ୍ରସ୍ତୁତ ହୋଇ ଆସିଛ ନା କ'ଣ ? ଆସିବଟି ଆସ—ମୋ ଗଣ—ଆସ – ଖାଇନଅ ଜଳଖିଆଟା – ଡାଉ ହେଲା – ମୋର ସବୁ ଦୋଷ ।

ସୁମାନ୍ତି ଦେବୀ ହସି ହସି ଗେହ୍ଲେଇ ହୋଇ ସ୍ୱାମୀଙ୍କର ହାତ ଧରି ଟାଣିଲେ ।

ରାମଣଙ୍କର ବାବୁ ହଠାତ୍ ଲକ୍ଷ୍ୟ କଲେ – ସ୍ତ୍ରୀଙ୍କର ଗୋଟାଏ ଫଟ ଓଠ ହସିଲାବେଳେ ଟିକଏ ଉଠିଯାଉଛି ଉପରକୁ । ଆଉ ଉପର ଧାଡ଼ିର କେଇଟା କଣ ଦାନ୍ତ ଆମୂଳଚୂଳ ପଦାକୁ ବାହାରି ଆସିଛି । ତାଙ୍କୁ ଘୃଣା ବରକ୍ତ ଲାଗିଲା ଏତକ ଲକ୍ଷ୍ୟ କରି ।

ଏମିତି ହସୁଥିଲେ ତାଙ୍କ ଶାଶୁ—ଅର୍ଥାତ୍ ସୁମାନ୍ତି ଦେବୀଙ୍କର ମାଆ । ସେ ଅନେକ ଥର ଲକ୍ଷ୍ୟ କରିଛନ୍ତି—ଶଶୁରଙ୍କୁ ଗେହ୍ଲେଇ ହୋଇ ତୋଷାମୋଦ କଲାବେଳେ ଶାଶୁଙ୍କର ଓଠ ମଧ୍ୟ ଏମିତି ଗୋଟିଏ ଫଟ ଉପରକୁ ଉଠିଯାଏ—ଆଉ କଣ ଫଟର କେଇଟା ଦାନ୍ତ ଏମିତି ପଦାକୁ ବାହାରିପଡ଼େ ।

ଛି ଛି ଛି ।

ଗୋଟିଏ ଅତି ପୁରାତନ ଗତାନୁଗତିକ ଅନୁକୃତ ଭଙ୍ଗୀ ପୁରୁଷାନୁକ୍ରମେ ଏମିତି ବହୁ ଲୋକଙ୍କୁ ଆକୃଷ୍ଟ କରିବାର ପ୍ରତାରଣା କରି ଚାଲିଥିବ । ଏଥିରେ ନୂତନତା କିଛି ନାହିଁ—ନିଜସ୍ୱ ବି କିଛି ନାହିଁ ।

ସୁମୀତ କୁଆଡେ଼ ଅବିକଳ ତା' ମାଆ ଭଳି ବସିଣ ବୋଲି ଗର୍ବ କରେ । ଶାଶୁ ମଧ୍ୟ ସେତେବେଳେ ଖୁବ ଆତ୍ମପ୍ରସାଦ ଅନୁଭବ କରୁଥିଲେ ।... ...ସୁମୀତ ଦେଖିବାକୁ ଅବିକଳ ମୋ'ର ଭଳି ।

ନିର୍ବୋଧତା – ଚରମ ନିର୍ବୋଧତା—
ଜଘନ୍ୟ ପଣ୍ଡ୍ ନିର୍ବୋଧତା –

ଶାଶୁ ଅବଶ୍ୟ ସୁନ୍ଦରୀ ଥିଲେ; କିନ୍ତୁ ତାଙ୍କ ମୁହଁରେ ଏକ ଭଙ୍ଗୀଟା ସୁମନଙ୍କର ବାପୁଙ୍କୁ ଆଦୌ ଭଲ ଲାଗୁ ନ ଥିଲା ।

କିନ୍ତୁ ଆଜି ସୁମୀତଙ୍କ ମୁହଁରେ ସେଇ ପ୍ରବୀଣ ମାତୃଦତ୍ତ ଭଙ୍ଗୀଟା ...ଇସ୍ ସ୍ ସ୍... ...

ସୁମୀତ ଅବିକଳ ବସିଲାଣି ଶାଶୁଙ୍କ ପରି ।
ସୁମୀତଙ୍କୁ ସେହିଭଳି ବସିବାକୁ ଭଲ ଲାଗୁଛି ।

ସେ ତାର ମାଆ ଭଳି କଥା ବି କହୁଛି—ଚାଲୁଛି—ହସୁଛି—ପୂଜା କରୁଛି—ମୁଣ୍ଡରେ ଚନ୍ଦନ ମାରୁଛି – ଶାଢ଼ୀ ପିନ୍ଧୁଛି—ଗେହ୍ଲେଇ ହେଉଛି —ସ୍ୱାମୀ ଉପରେ ଘରଣୀପଣ ଦେଖାଉଛି ।

ମୁଣ୍ଡ ଉପରେ ମଝି ସୀମନ୍ତଟା ବି ସେହିଭଳି ଅବିକଳ ଚଉଡ଼ା ହୋଇ ଆସିଲାଣି ।

ଶାଶୁଙ୍କ ଭଳି ସୁମୀତ ମଧ୍ୟ ଖୁବ୍ ଗୋଟାଏ ବଡ଼ ସିନ୍ଦୂର ଟୋପା ଆଜିକାଲି ଲଗାଇଲାଣି ।

ଶାଶୁଙ୍କ ଭଳି ସୁମୀତ ବୁଢ଼ୀ ହେବାକୁ ଯାଉଛି—ଚେଷ୍ଟା ବି କରୁଛି । ଇସ୍ ସ୍—

ଅସହ୍ୟ ଏହି ଗତାନୁଗତିକ ମାତୃ ପ୍ରତି ନିଷ୍ଠାପର ମୋହାସକ୍ତି ! ଏଥିରେ ନୂତନତା ନାହିଁ – ସୃଷ୍ଟିଲୀଳା ନାହିଁ । ନାହିଁ ମଧ୍ୟ ସ୍ୱକୀୟ କଳ୍ପନା-ଶକ୍ତି—ସୃଜନୀ—ପ୍ରତିଭାର ନବ ନବ ଉନ୍ମେଷ ।

ତେଣୁ ପ୍ରାଣ ନାହିଁ ।
ସ୍ୱାଦ ବି ନାହିଁ ।

ସୁମଣଙ୍କର ବନ୍ଧୁ ସ୍ତ୍ରୀଙ୍କର ହାତ ଛୁଆଁଇ ଦେଇ କହିଲେ—ଗୁଡ଼ —ଟାଡ଼ । ଏସବୁ କିଛି ନୂଆ ନୁହେଁ— । ଆମେ ଏ କଥା ଦେଖିଆସୁଛୁ ଆବହମାନ କାଳରୁ । ଗୋଟାଏ ରାସ୍ତା ତୁମେ ତିଆରି କରିଛ । ନିଜେ ଚାଲିବ ସେହି ରାସ୍ତାରେ – ଆଜି ମୋତେ ବି ଚାଲାଇବ ସେହି ରାସ୍ତାରେ ମାଲଗାଡ଼ି ଭଳି — × × ×

× × ଆଜି ଏସବୁ ଚଳିବ ନାହିଁ ।

× × ଏଣିକି ଅନ୍ୟ ରାସ୍ତା ଧରିବାକୁ ହେବ ।

ସୁମଣଙ୍କରବାବୁ ସ୍ତ୍ରୀଙ୍କଠାରୁ ହାତ ଛଡ଼ାଇଆଣି ବାହାରକୁ ବାହାରିଗଲେ । ସୁମନ୍ତି ଦେବୀ ସ୍ୱାମୀଙ୍କର ଆଜି ହଠାତ୍ ଏପରି ବ୍ୟବହାର ଓ କଥାବାର୍ତ୍ତା ଦେଖି ଆଶ୍ଚର୍ଯ୍ୟ ହୋଇଉଠିଲେ । ପ୍ରମାଦ ମଧ୍ୟ ଗଣିଲେ ।

କଅଣ କଥା ?
କଅଣ ଆଜି ହେଇଗଲା ?

"ଏ ରାସ୍ତାରେ ଆଉ ଚଳିବ ନାହିଁ" ବୋଲି କ'ଣ କହିଲେ ସେ ଆଜି ? କେବେ ତ ସେ ଏମିତି ଦୁଅନ୍ତି ନାହିଁ । ଏମିତି କଥା ବି ସେ କେବେ କରନ୍ତି ନାହିଁ । କେଡ଼େ ଶାନ୍ତ, ସୁଧାର, ବାଧ୍ୟ, ଶୃଙ୍ଖଳିତ ଲୋକଟି ! ସଂସାରର କୋଉ କଥା ବୁଝନ୍ତି ନାହିଁ । କୋଉ କଥାରେ ବି ଅଯଥା କିଛି କରନ୍ତି ନାହିଁ ।

ନା – ନିଶ୍ଚୟ କ'ଣ ଆଜି ବାହାରେ ହେଇଛି ।

ସୁମନ୍ତି ଦେବୀଙ୍କର ଆଜି କୋଉ କଥାରେ ମନ ଲାଗିଲା ନାହିଁ । ସ୍ୱାମୀଙ୍କର ସୁଖ ଲାଗି, ସ୍ୱାଚ୍ଛନ୍ଦ୍ୟ ଲାଗି ସେ ଆଜିକୁ ଷୋଳ ସତର ବର୍ଷ ଧରି ପ୍ରାଣମୂର୍ଚ୍ଛି ପରିଶ୍ରମ କରି ଆସିଛନ୍ତି । ଅଭାବ, ଅସୁବିଧା, ଦୁଃଖ ସୁଖ ଆଦି ଭିତରେ ସେ ଏମିତି ଭାବେ ସଂସାର-ନାବକୁ ଚଳାଇ ଆଣିଛନ୍ତି ଯେ, ସ୍ୱାମୀଙ୍କୁ ହୁଏତ ଧକ୍କା ଲାଗିଛି—ମାତ୍ର ଧକ୍କା କାଟି ନାହିଁ ।

ସେ ମଧ୍ୟ ଆଉମାନଙ୍କ ପରି ନୁହନ୍ତି । ଖାଲି ଜଗିରଖି ସେ ଚଳନ୍ତି । ତାଙ୍କର ଦେହକୁ ବା ମନକୁ କାଟିଲା ପରି କେବେ କୌଣସି କାମ ସେ କରି ନାହାନ୍ତି । କେତେ ଲୋକଙ୍କ ମୁହଁରେ କେତେ କଥା ଶୁଣାଯାଏ ! ମାତ୍ର ସ୍ୱାଙ୍କ ନାଁରେ କିଏ ଏମିତି କହିବ—କାହା ଜିଭରେ ଅଛି ହାଡ ? ସେଇ ଯେ ଲେଡି ଡାକ୍ତରଟା; ଆସିଥିଲା ସେ ବର୍ଷ ଏ ହାସପାତାଳକୁ – କ'ଣ ସେ ନଆଁ ଲଗି ନାହିଁ ତ – ବାହା ନ ହେଇ······

ତାକୁ ନେଇ କେତେ ଲୋକଙ୍କ ନାଁରେ କେତେ କଥା ନ ଉଠିଲା ! ଗସ୍ତବାବୁ କ'ଣ ! ମାହାନ୍ତିବାବୁ କ'ଣ ! ଆଚାର୍ଯ୍ୟବାବୁ କ'ଣ ! ଇନ୍ଦ୍ରମଣି ବାବୁଙ୍କ ସ୍ତ୍ରୀ ତ କୁଆଡେ଼ ଏଇଥିଲାଗି ଆତ୍ମହତ୍ୟା କରିବାକୁ ବସିଥିଲା !

ମାତ୍ର ଏ ମଣିଷଟି ! ! !

କିଏ କହିବ ?

କାହା ନେଡ଼ୀରେ ଉଠିଛି ବାଳ ?

ତଳକୁ ମୁହଁ ପୋତି ପୋତି ସିବେ – ତଳକୁ ମୁହଁ ପୋତି ପୋତି ଆସିବେ । ଆଜଯାଏ ତାଙ୍କର ମୁହଁକୁ ଭଲ ସିଧା ଚାହିଁଛନ୍ତି କେଉଁଜଣ !

ଅଥଚ ସ୍ୱାଙ୍କ ଭଳି ମରଦ କେଇଟା ଅଛନ୍ତି ଏ ଖଣ୍ଡ ମଣ୍ଡଳରେ ?

କେଡ଼େ ଚଉଡ଼ା ଛାତି !!!

କେଡ଼େ ଉଞ୍ଚା କାନ୍ଧ !

ନାକ କେମିତି ! !

ଆଖି କେମିତି ! !

କିନ୍ତୁ ହେଲେ କ'ଣ ହେବ ? ସ୍ୱାଙ୍କ କଥା ନିଆରା । ସାମନ୍ତରାୟ ବାବୁଙ୍କ ସ୍ତ୍ରୀ ଥରେ ଥଟ୍ଟାରେ ଅବଶ୍ୟ କହିଥିଲେ—

"ତମ ବାବୁ ବଡ଼ ତଳମୁହାଁ ! !"

ତଳମୁହାଁ ହୁଅନ୍ତେ ନାହିଁ ତ କ'ଣ ତୁମରି ବାବୁମାନଙ୍କ ଭଳିଆ ଖାଲି ସୁନ୍ଦର ମୁହଁ ଉଣ୍ଡୁଥାନ୍ତେ ! ସେ ସେମିତି ଲୋକ ନୁହନ୍ତି ଗୋ ! ସ୍ୱାଙ୍କ କଥା ନିଆରା । ତା ଛଡ଼ା ଯାହା ଘରେ ସିନା ରହିବା ଅଲଣା

ହେବ – ଦୌଡ଼ବ ଖାଇବକୁ ହୋଟେଲକୁ । ଯାହାର ଘରେ ଖାଇଲେ ମନବୋଧ -- ସେ କିଏଁ ? ?

ସ୍ତ୍ରୀଙ୍କ କଥା ନଥାଉ ।
ଚଳକୁ ମୁହଁ ପୋତି ପୋତି ଯିବେ, ମୁହଁ ପୋତି ପୋତି ଆସିବେ ।

କିନ୍ତୁ ଆଜ କ'ଣ ଏମିତି ହଗିଲା ? କାହିଁକି ସେ ଆଜ ହଠାତ୍ ଘରର ପଶୁ ପଶୁ ଏମିତ ହୋଇଉଠିଲେ ? ସୁମିତ ଦେବୀ ପୁଣି ବାଉଳା ହୋଇଗଲେ ।

ସୁମିତ ଦେବୀଙ୍କ ମସ୍ତିକୁ ପୁଣି କେତେ ପ୍ରକାର ସାପ ଛୁଇଁଲା ।
କେଜାଣି ?
ପୁରୁଷଙ୍କ ମନ ତ ! !
କିଏ ବା ଗଣିବ ଆକାଶେ ତାରା ?
କିଏ ବା ଗଣିବ ବରଷା ଧାରା ?
କିଏ ବା ପାଇବ ପାରିବ ପବନ ?
କିଏ ବା ପାଇବ ପୁରୁଷ ମନ ?

—ଦୁଇ—

ଚଳକୁ ମୁହଁ ପୋତି ପୋତି ଚାଲିଥିଲେ ରାମଶଙ୍କର ବାବୁ ସବୁଦିନ ପରି ।

ଅନ୍ୟ ରାସ୍ତା ଦେଖିବାର ମତଲବରେ ମତୁଆଳ ହୋଇ ସେ ଘରୁ ବାହାରିପଡ଼ିଲେ – ମାତ୍ର ତଳମୁହଁ ଚକ୍ଷୁ ଉଠିଲେ ଯିନା ଅନ୍ୟ ରାସ୍ତା ଦେଖାଯିବ ! !

କିନ୍ତୁ ଅଭ୍ୟାସ ତ ନାହିଁ – ଆଗ ରାସ୍ତାକୁ ଛାଡ଼ି ଅନ୍ୟ ରାସ୍ତାର ଖୋଜ ନେବାକୁ । ମୁହଁ ଉପରକୁ ଟେକିଲେ କିନ୍ତୁ ବିପଦର ସୀମା ନାହିଁ । ସେ ଅଭିଜ୍ଞତା ଯେ ତାଙ୍କର କେତେ ଥର ନ ହୋଇଛି, ତା' ନୁହେଁ । ସେଇ ଛନ୍ଦକା ରାସ୍ତା ଉପରେ ଯେଉଁଠି ବଙ୍କାଇ ଆଉ ରାସ୍ତା ଧରିବା କଥା – ସେଠି ଗୋଟିଏ ବଡ଼ ଦୋମହଲା ନୀଳବର୍ଣ୍ଣର କୋଠା । ରାସ୍ତାରେ

ଏଇ ଚକଟାକୁ ଆସି ରାସ୍ତା ବଦଳ କଲାବେଳେ – ଆଖି ଦୁଇଟା ତଳକୁ ଆସିବା ପୂର୍ବରୁ ସେଥିଏ ଉପରୁ ଘୂରିଆସେ ।

ସବୁଦିନ ସନ୍ଧ୍ୟାବେଳକୁ ସେଇ କୋଠାର ଖୋଲା ବାଲକନୀ ଉପରେ ନୀଳ ଆକାଶକୁ ପଛରେ ରଖି ତିନୋଟି ବଳୟିତ ଚାକିରି ଦାଣ୍ଡ ଆରେ ପଡ଼ିରହିଥାନ୍ତି । ସେମାନେ କେତେ ରଙ୍ଗ ବୁଣନ୍ତି, ଗୁନ୍ଥନ୍ତି । ଆଉ କେତେ ରଙ୍ଗ ପୁଣି ଗୋଟାନ୍ତି ।

ସେଇ ଜାଗାରେ ଉଠିଲାଆଖି ଘୁରେଁ ଘୁରେଁ ପୁଣି ତଳକୁ ନଇଁ ଆସେ । କାରଣ ସେମାନଙ୍କ ରଙ୍ଗକୁ ବିଶ୍ୱାସ ନାହିଁ ।

ସେଇ କୋଠାର ପାଖକୁ ଆସି ଆଜି ମଧ୍ୟ ରାମଶଙ୍କର ବାବୁ ତଳକୁ ମୁହଁ ପୋତି ଆଗକୁ ବାଟ ମୋଡ଼ିଲେ ।

ସେମାନେ ସବୁ ଏକାପରି ।

କିଛି ନୂତନତା ନାହିଁ ।

ତାଙ୍କର କେବଳ ରଙ୍ଗରେ କାରବାର ! !

ରସର ସନ୍ଧାନ ସେମାନେ ଦେଇପାରିବେ ନାହିଁ ।

କେତେ ବାଟ ଗଲା ପରେ—

ଆଗରେ ଶିବ ମନ୍ଦିର । ଏଠି ଲୋକ ଭିଡ଼ ହୁଏ ସନ୍ଧ୍ୟା ପାଞ୍ଚଟା-ଠାରୁ । ମନ୍ଦିରକୁ ଯିବାରେ ତାଙ୍କର ଆକାଂକ୍ଷା ନାହିଁ । ମାତ୍ର କେଉଁଠିକି ଯେ ସେ ଯିବେ ବର୍ତ୍ତମାନ ବା ଯାଉଛନ୍ତି ବର୍ତ୍ତମାନ—ସେ ସମ୍ବନ୍ଧ ମଧ୍ୟ କିଛି ସ୍ପଷ୍ଟ ଧାରଣା ନାହିଁ ।

ଏଇ ମନ୍ଦିରଟାକୁ ଦେଖିଲେ କିଲୁ ବେଶୀ ବିରକ୍ତ ଲାଗୁଛି । ଏଇ ଶିବ ମନ୍ଦିରଟା ଯେପରି ସମସ୍ତ ଗତାନୁଗତିକତାର ଏକ ନିଦାରୁଣ ପ୍ରତୀକ । ମନ୍ଦିର ଆଗରେ ଆଣ୍ଠୁ ମାଡ଼ି ବସିରହିଛି ଅନାଦି କାଳରୁ ସେଇ ଯେଉଁ ବୃଷାଳ ବୃଷଭଟା, ଗତାନୁଗତିକ ଦାସ୍ୟ-ମନୋବୃତ୍ତିର ଏକ ବୀଭତ୍ସ ପ୍ରତୀକ ଛଡ଼ା କ'ଣ ଆଉ ହୋଇପାରେ ସେଇଟା !

ଏଇ ପୁରାତନ ମନ୍ଦିରଟାର ଆକର୍ଷଣ ଯେପରି ରଙ୍ଗ ଓ ରସହୀନ —ଏହାର ଭିତରେ ଦେବତା ବୋଲି ପୂଜା ପାଉଛି ଯେଉଁ ପ୍ରସ୍ତରନିର୍ମିତ

ରୂପକଟି — ସେ ତ ସେଡ଼ିପର ଜୀବନର ସ୍ପନ୍ଦନ-ବର୍ଜିତ ଏକ ଧାରାବାହିକ ଗତାନୁଗତିକ ସ୍ଥୂଳ ଭକ୍ତିମନ୍ତ୍ରର ନିଷ୍ଠୁର ପ୍ରସ୍ତରତା ବ୍ୟତୀତ ଆଉ କିଛି ନୁହେଁ । ଏହା ପଛରେ ଯେତେ ଦର୍ଶନର ଆଧ୍ୟାତ୍ମିକତାର ତାତ୍ତ୍ୱିକ ବ୍ୟାଖ୍ୟାନ ଥାଉନା କାହିଁକି ଏହାର ଏଇ ଆନୁଷ୍ଠାନିକ ପ୍ରକାଶଟା ଇ ଅତି କଠୋର ଭାବରେ ନିତ୍ୟନୈମିତ୍ତିକ ।

ପ୍ରତିଦିନ ଏଠାରେ ବେଲପତ୍ରୀ ଓ ଦୁଦୁରାଫୁଲର ସ୍ତୂପ ଶିବଲିଙ୍ଗ ଉପରେ ଜମିଯାଏ । କଦଳୀରୁ ଖୋପା ଛଡ଼ାଯାଏ—ନଡ଼ିଆ ଭଙ୍ଗାଯାଏ, ଆଉ ସେମାନେ ଏକ ଗତାନୁଗତିକ ଧାରାରେ ଦେବତା ପାଖରେ ନିଜ ନିଜର ଅନୁଯୋଗ ବାଢ଼ିବସନ୍ତି—

ମୋର ପୁଅ ଦେହ ଭଲ ହୋଇଯାଉ ।
ମୋର ବ୍ୟବସାୟରେ ଏଥର ଲାଭ ହେଉ ।
ଅମୁକ ଲୋକର ସର୍ବନାଶ ହେଉ ।
ସେ ମୋର ହେଉ ।
ହେ ଦେବତା ! ମୁଁ ସୁଖରେ ରହେ ।

ହେଲେ—ସେଠି କସି ଅଣ୍ଟାମାଡ଼ି ବାସୁଆବଳଦ ପଛପଟେ ନିର୍ବିରୋଧ ଚାଇଚାଲିଛି ସହରର ବଣିଷ୍ଟ ମହାଜନ—ଜନାର୍ଦ୍ଦନ ଭଗତ । ଆଜି ଆରପଟେ ଠିଆହୋଇ ଖୁବ୍ ପାଟିକରି ଶିବତାଣ୍ଡବ ପଢ଼ିଚାଲିଛନ୍ତି ହାଣ୍ଡିନିଧି ମିଶ୍ରେ । ଦଳ ଦଳ ହୋଇ ସ୍ତ୍ରୀଲୋକ ଭୋଗ ଧରି ମନ୍ଦିରକୁ ଯାଉଛନ୍ତି--ଫେରୁଛନ୍ତି ।

ସେମାନେ କହୁ ଭଲ ନାହାନ୍ତି ନୁଆଁ ।
ସେମାନେ କହୁ ମାଗୁ ନାହାନ୍ତି ନୁଆଁ ।

ସୁଜାତି ମଧ୍ୟ ପ୍ରତି ସୋମବାର ଦିନ ସନ୍ଧ୍ୟାବେଳେ ଏହି ମନ୍ଦିରକୁ ଆସି ନଡ଼ିଆଟିଏ ଭଙ୍ଗି ବେଲପତ୍ରୀ ଓ ଘଷା-ଜଳ ଧରି ମଠାଶାଢ଼ୀର କାନିକୁ ବେକରେ ଗୁଡ଼ାଇ— କପାଳରେ ଚନ୍ଦନ ଆଉ ସିନ୍ଦୂର ଲଗାଇ ଘରକୁ ଫେରନ୍ତି ।

ଅବକଳ ଏମିତ କରୁଥିଲେ ତାଙ୍କର ଶାଶୁ········ ।

ସୁମିତ ଗୋଟାସୁଦ୍ଧା ତାର ମାଆ ଭଳ ହେବାକୁ ସାଧନା କରୁଛି ।

ଧେତ୍ତେରି ! ! !

ଅଧ୍ୟାପକ ରାମଶଙ୍କରଙ୍କ ମନ ଆହୁରି ଚଞ୍ଚଳ ହୋଇଉଠିଲା । ଏଇ ବରଲ୍ଡକର ଗତାନୁଗତିକ ପୁନରାବୃତ୍ତିରୁ ରକ୍ଷା ପାଇବା ଲାଗି ତାଙ୍କର ମନ ଚଞ୍ଚଳ ହୋଇଉଠିଲା । ତାଙ୍କୁ ଲାଗିଲା—ସମଗ୍ର ପୃଥିବୀଟା ଯେପରି ସେଇ ଗୋଟିଏ ପୁରୁଣା ବନ୍ଧା ରାସ୍ତାରେ ହିଁ ଚାଲିଛି । ସେଇ ଗୋଟିଏ ସାଜ ପୋଷାକ ଅନାଦିକାଳରୁ ଦେହରେ ଲାଗିଥାଇ ରହିଛି । ଆଜି ଜଣ ଜଣ ହୋଇ ନଟ ନଟୀ ସେଇ ସାଜ ପୋଷାକ ପିନ୍ଧି ମଞ୍ଚ ଉପରକୁ ବାହାରୁଛନ୍ତି ।

ରାସ୍ତାକଡ଼ରେ ଏଇ ବଣ୍ଟାଖଣ୍ଡଗୁଡ଼ିକ, ଆଉ ବଣ୍ଟାଗୁଡ଼ିକର ଚାରି ପାଖରେ ଏକାଧାରରେ ଅସଂଖ୍ୟ ସାଲୁବାଲୁ ଲୋକ । ରାସ୍ତାର ଏକଡ଼୍ ସେକଡ଼କୁ ଧାଇଁ ବୁଲୁଛନ୍ତି କୁକୁର ମଲ – ଜଳଖିଆ ଦୋକାନ ଭିତରେ ଖୁବ୍ ଉଚ୍ଚ ପରଦାରେ ସଙ୍ଗୀତ ଛଳନାରେ ଅସହ୍ୟ କୋଲାହଳ ସୃଷ୍ଟି-କରି ବାଜୁଛନ୍ତି ରେଡ଼ିଓଗୁଡ଼ାକ । ଝଣ୍ ଝଣ୍ ହୋଇ ଏଠିକି ବ ଶୁଭୁଛି ହୋଟେଲ ଭିତରୁ ବାସନଧୁଆର ଶବ୍ଦ । ସେମାନେ ଦେଇ ପଶୁଛନ୍ତି— ବସୁଛନ୍ତି—ଖାଉଛନ୍ତି—ଗପୁଛନ୍ତି । ହୋଟେଲବାଲା ଦୁଆର ମୁହଁରେ ବସି ସେମିତି ପଇସା ଅସୁଲ କରୁଛି । ସେଠି ହଠାତ୍ ଆଲୁଅ ନ ଲିଭୁଣୁ— ପୋଷାକ ଓ ମନୋହାରୀ ଦୋକାନମାନଙ୍କରେ ଜଳି ଉଠିଲଣି ନାନା ରଙ୍ଗରେ ଆଲୁଅ । ସେଠି ସେମାନେ ଦେହର ରଙ୍ଗ ସଙ୍ଗେ ପୋଷାକର ରଙ୍ଗକୁ ମିଳାଉଛନ୍ତି—ଦେହର ମାପ ସଙ୍ଗେ ପୋଷାକର ମାପକୁ ଜଣ୍ଟ-ଛନ୍ତି । ସେଠି ଟାଉନହଲରେ ଚାଲିଛି କ'ଣ ଗୋଟେ ସଭା । ଉତ୍ତେଜିତ କଣ୍ଠରେ କେହି ଜଣେ କାହା ବିରୁଦ୍ଧରେ ଅନର୍ଗଳ ଗପିଚାଲିଛି । ତାଳି-ମାନରେ ଘର ଫାଟି ପଡ଼ୁଛି । ହେଇ ସେଠି ଚାଲିଛି ଗୋଟେ ପାଣ୍ଡିତ୍ୟସଭା । କୌଣସି ଏକ ମୃତ କବିଙ୍କର ଜୟନ୍ତୀ ଉତ୍ସବ ।

ପଟାସ୍ ପଟାସ୍ ଚାବୁକ ମାରି ହେ ହେ ହେ କରି କରି ଘୋଡ଼ାଗାଡ଼ିବାଲା ପାଟୀ ଘୋଡ଼ା ଷ୍ଟେସନ ଛୁଟିଛି । ରେଳ୍ ସବାଲା ଉଠାଣି ରାସ୍ତାରେ ନଇଁ ନଇଁ ରେକ୍ସାଟାକୁ ଉଠାଉଛି ।

ହେଇଠି ସେମାନେ ଗୁଳଛନ୍ତି ଦଳ ଦଳ ହୋଇ ଶାଢ଼ୀ ଆଉ ଓଢ଼ଣୀର ଫର ଫର ଭିତରେ······। ସିନେମା ଆରମ୍ଭ ହେବାକୁ ଆଉ ଅଳ୍ପ ଡେରି। ସେଠି ସିନେମା ଗୀତ ଭାସିଆସୁଛି—

ମୋହବତ୍ କର୍ଲି ଦେଇ ବ୍ଲଜପାଅନା ହେ ନାଗର —ମୋହବତ୍ ଖୁବ୍ ମଜାର ଚିଜ୍—ମୋର ଦିଲ୍‌ଟା ଖାଲି ଧଡ଼୍ ଧଡ଼୍ ହେଇ ଉଠୁଛି।

ତଥାପି—ନାଃ ! ! !

ରମଣଙ୍କର ବାବୁ ଭାବିଲେ – ଏ ପୃଥିବୀଟା ଖୁବ୍ ପୁରୁଣା ହୋଇଗଲାଣି। ଖୁବ୍ ଗତାନୁଗତିକ ହୋଇ ଉଠିଲାଣି ଏହାର ଛବି ଆଉ ଛଟକ ଆଉ ଏ ପୃଥିବୀ ବାନ୍ଧି ରଖିପାରିବ ନାହିଁ। ତାର ସମସ୍ତ ଆବେଗ ଆଉ ଆକର୍ଷଣ ହୋଇଗଲାଣି ନିହାତି ଦେହଘଷିଆ।

ଏ ପୃଥିବୀ ଯେତେ ଫୁଲେଇ ହୋଇ ଦେହରେ ଘଷିହେଲେ ବି ଦେହର ଲୋମ ଠିକୁରିବ ନାହିଁ। ଗୁଣ୍ଡରେ ତାତି ଜମିବ ନାହିଁ— ଶେଷରେ ମନଟା ଆଉ ମାତିବ ନାହିଁ।

ନୈରାଶ୍ୟରେ ରମଣଙ୍କର ବାବୁ ଦୀର୍ଘଶ୍ୱାସ ପକାଇବାକୁ ଯାଉଛନ୍ତି—ହଠାତ୍ କାହାର ପାଟି ଶୁଣି ସେ ଚମକି ପଡ଼ି ଚାହିଁଲେ। ଜଣେ ଲୋକ ଗୋଟିଏ ଖୁବ୍ ବଡ଼ ରକ୍ତ ଗୋଲାପ ଧରି ତାଙ୍କୁ ଯାଚୁଛି। ଗୋଲାପଟି ଖୁବ୍ ବେଶୀ ଲାଲ୍ ନୁହେଁ—କିନ୍ତୁ ଆକାରରେ ସାଧାରଣ ଗୋଲାପଠାରୁ ବେଶ ବଡ଼। ଗୋଲାପଟିର ରଙ୍ଗ ଆଉ ଆକୃତିରେ ଯଥେଷ୍ଟ ଉଚ୍ଛଳ ଜୀବନର ସ୍ୱାସ୍ଥ୍ୟ, ସମ୍ପଦ ଓ ତେଜସ୍ୱିତା ଭରିରହିଛି।

ଏଥିରେ ସନ୍ଦେହ ନାହିଁ ଯେ ରମଣଙ୍କର ବାବୁଙ୍କ ମନରେ ଫୁଲଟି ହଠାତ୍ ଗୋଟେ ନୂତନ ଉତ୍ତେଜନା ସୃଷ୍ଟି କରିଦେଲା। କେବଳ ଉତ୍ତେଜନା ନୁହେଁ—ଏକପ୍ରକାର ଉନ୍ମାଦ ଖିଆଲରେ ସେ କ୍ଷିପ୍ତ ହୋଇଉଠିଲେ।

ଗୋଲାପ ଫୁଲ ଏ ପୃଥିବୀରେ ନୂଆ ହୋଇ ଫୁଟି ନାହିଁ; କିନ୍ତୁ ରମଣଙ୍କର ବାବୁଙ୍କ ପାଖକୁ ସେ ସଂପୂର୍ଣ୍ଣ ଅପରିଚିତା ନୂତନା ବଧୂଟିଏ

ଭଳ ଅସିଛି । ରାମଶଙ୍କର ବାବୁ କେବଳ ଗୋଲାପ ଫୁଲଟିଏ ଏହି ପାଖରେ ଦେଖି ନାହାନ୍ତି । ବହୁ ଲୋକଙ୍କ ଉଦ୍ୟାନରେ କେତେ ଫୁଲ ତ ଫୁଟେ । କେତେ ରଙ୍ଗ ଆଉ କେତେ ସୌରଭର ବାହାର ଭଳିରେ ଗୋଲାପମାନେ ବ ଫୁଟିଥାଆନ୍ତି । ଦୂରରୁ ସେସବୁ ଦେଖିଛନ୍ତି ରାମଶଙ୍କର ବାବୁ ।

ମାତ୍ର ଏତେ ପାଖରେ ଏତେ ରୂପ ଓ ସ୍ୱାସ୍ଥ୍ୟ ନେଇ ଗୋଲାପ ତାଙ୍କ ଆଗକୁ କେବେ ଆସି ନାହିଁ । ଜୀବନରେ ଏଇ ପ୍ରଥମ ସେ ଆସୁଛି । ଗୋଲାପ ଫୁଲଟିଏ ସେ କାହାକୁ ଯାଚି ନାହାନ୍ତି କି ତାଙ୍କୁ ବ କିଏ ଯାଚି ନାହିଁ କୋଉଦିନ ।

ତାର ସମସ୍ତ କୋମଳ ଆଉ ସତେଜ ପାଖୁଡ଼ା ମେଲାଇ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେବା ଭଙ୍ଗୀରେ ଗୋଲାପ ଫୁଲଟି ମାଳୀର ହାତରୁ ନଇଁପଡ଼ୁଛି ତାଙ୍କରି ଆଡ଼କୁ ।

ରାମଶଙ୍କର ବାବୁଙ୍କ ମନଭିତରେ ହଠାତ୍ "ଗ୍ରହଣ କରିବାର ବାସନା" ଜାଗିଉଠିଲା । ସଙ୍ଗେ ସଙ୍ଗେ ତାଙ୍କ ଭିତରେ ହଠାତ୍ ଏକ ନୂତନତ୍ୱର ଆବେଗ ଚଞ୍ଚଳ ହୋଇଉଠିଲା । ତାଙ୍କୁ ବୋଧହେଲା ସବୁ ଗତାନୁଗତିକତା ଭିତରେ ବ ଏଇ ଗୋଲାପ ଫୁଲଟିର ଆକୁଳ ନମ୍ର ଆକର୍ଷଣ ସମ୍ପୂର୍ଣ୍ଣ ନୂତନ । ଏ ଯେପରି ଏକ ନୂତନ ଅନାସ୍ୱାଦିତ ଜୀବନର ସଫଳ ସଙ୍କେତ ନେଇ ହସିଉଠୁଛି, ଆଉ ମତେଇ ଦେଉଛି । ପୁଣି ସେଇ ମତେଇଦେବାର ଆବେଗାତିଶଯ୍ୟରେ ତାର ସମସ୍ତ ପ୍ରଫୁଲ୍ଲ-ନିଜ ମଳତାର ପାଖୁଡ଼ାଗୁଡ଼ିକ ଫାଟିଲଇ ହୋଇ ଉଠି ତାଙ୍କର ବାହୁପାଶ ଭିତରକୁ ଡେଇଁ ପଡ଼ିବା ଲାଗି ବ୍ୟାକୁଳ ଆଗ୍ରହ ପ୍ରକାଶ କରୁଛି ।

"ଏ ତ ଗୋଲାପ ନୁହେଁ"—ରାମଶଙ୍କର ବାବୁ ଭାବିଲେ – "ଏହା ଏକ ସଂପୂର୍ଣ୍ଣ ନୂତନ ଜୀବନାନୁଭୂତିର ଗୋଲାପୀ ବାସନାର ଏକ ମୃଦୁ ଅଥଚ ପ୍ରମତ୍ତ ପ୍ରସ୍ଫୁଟ ଆକାଂକ୍ଷା !"

ଖୁବ୍ ଉତ୍ତେଜିତ ହୋଇ ସେ ମାଳୀକୁ ପଚାରିଲେ –
କେତେ ପଇସା ନେବ ଏଥିପାଇଁ ?

ମନୀନ୍ଦ୍ର ହିକେ ହସିଦେଇ କହିଲ –

ଫୁଲର କି ଦାମ ମାଗିଛି ଅଜ୍ଞ ! ଫୁଲର କି ଦାମ ଅଛି ?

ରାମଶଙ୍କର ବାବୁ କିନ୍ତୁ ଗୋଲାପଟିକୁ ଏପରି ମାଗଣାରେ ଅଧିକାର କରିବାକୁ ଇଚ୍ଛା କଲେ ନାହିଁ ।

ସୌନ୍ଦର୍ଯ୍ୟ ଯେତେ ସ୍ୱର୍ଗୀୟ ଓ ଅମୂଲ୍ୟ ହେଲେ ମଧ୍ୟ ତାକୁ ମାଗଣାରେ ଗ୍ରହଣ କରିବା ଅତି କୁତ୍ସିତ କାପୁରୁଷତା ଓ ଖାରୁତାର କି ଲକ୍ଷଣ । ଜଗତର ସମସ୍ତ ଅମୂଲ୍ୟ ସୌନ୍ଦର୍ଯ୍ୟକୁ ବୀରମାନେ ଯଥୋଚିତ ମୂଲ୍ୟ ଦେଇ ଗ୍ରହଣ କରି ଯାଇଛନ୍ତି । ସୌନ୍ଦର୍ଯ୍ୟର ମୂଲ୍ୟ ନ ଥାଇପାରେ । ମାତ୍ର ଯେ ସେହି ସୌନ୍ଦର୍ଯ୍ୟକୁ ଅଧିକାର କରିବା ଲାଗି ପ୍ରୟାସୀ ହୁଏ— ତାର ମୂଲ୍ୟବୋଧ ଉପରେ ଏବଂ ତା'ର ମୂଲ୍ୟଦାନର କ୍ଷମତା ଉପରେ ହିଁ ସେହି ଅମୂଲ୍ୟ ସୌନ୍ଦର୍ଯ୍ୟର ମୂଲ୍ୟାଙ୍କନ ହୋଇଯାଏ । ନାରୀର ସୌନ୍ଦର୍ଯ୍ୟକୁ ମୂଲ୍ୟ ଦେଇ କିଣିବା ଲାଗି କେତେ ବୀର ତାଙ୍କର ମଥା ପର୍ଯ୍ୟନ୍ତ ଦାନ କରି ନାହାନ୍ତି ଭଲ ! ଏ ଫୁଲଟି ଗୋଟିଏ ସାଧାରଣ ଲୋକ ପାଖରେ ଦୁଇଟି ମାତ୍ର ପଇସାର ମୂଲ୍ୟ ହୋଇପାରେ; ମାତ୍ର ଜଣେ ଏହାକୁ ଦୁଇ ଲକ୍ଷ ଟଙ୍କା ଦେଇ ମଧ୍ୟ କିଣିନେଇପାରେ ।

ତା ଛଡ଼ା ଏ କ'ଣ ଗୋଟିଏ ସାଧାରଣ ଗୋଲାପ ଫୁଲଟିଏ ମାତ୍ର ହୋଇଛି !

ସୁତରାଂ... .....

ରାମଶଙ୍କର ବାବୁଙ୍କ ମନ ଭିତରେ ଏକ ମଧ୍ୟଯୁଗୀୟ ସୌନ୍ଦର୍ଯ୍ୟ-ଗ୍ରାହୀତାର ବୀରୋଚିତ ପୌରୁଷ ଜାଗିଉଠିଲା । ସତେ ବା ସେ ପୃଥିବୀର ଶ୍ରେଷ୍ଠ ସୁନ୍ଦରୀକୁ କିଣିବାକୁ ବସିଛନ୍ତି କିମ୍ବା ପୃଥିବୀର ସର୍ବଶ୍ରେଷ୍ଠ ଚିତ୍ରଶିଳ୍ପୀର ସର୍ବଶ୍ରେଷ୍ଠ ଚିତ୍ରକଳାର ପରଖ ଦେବାକୁ ଯାଉଛନ୍ତି ! !

ରାମଶଙ୍କର ବାବୁ ଆହୁରି ଉତ୍ତେଜିତ କଣ୍ଠରେ କହିଲେ—

ନା—ନା—ତୁମକୁ ହୋଉ ଦାମ୍ ନେବାକୁ ପଡ଼ିବ । କହ କେତେ ନେବ ?

ଯାହା ହେଉ ବଞ୍ଚିଗଲୁ ଆଜି ! ଯିଏ ଏ ଫୁଲଟି ତିଆରି କରିଛି, ସେ ସିନା ଏହାର ମୂଲ୍ୟ ଜାଣିଥିବ । ଏ ତ ଆଉ କାଗଜ ଫୁଲ ନୁହେଁ କି ଯାହାକୁ ଆମେ ତିଆରି କରିବୁ !

ରମେଶଙ୍କର ବାପୁ ପକେଟ୍ ତରାଶିଲେ । ପକେଟ୍ ଭିତରେ ପ୍ରାୟ ଏକ ଟଙ୍କାର ରେଜା ଥିଲା । ସେତକ ରେଜା ସେ ହାତରେ ଧରିବା ମାତ୍ରେ ଇ ତାଙ୍କୁ ଲାଗିଲା ସେ ବସ୍ତୁ ମୁଦ୍ରା ବିନିମୟରେ ପୃଥିବୀର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ ଏହି ଗୋଲାପଟିକୁ କିଣିବାକୁ ଯାଉଛନ୍ତି । ମାଳୀ ହାତକୁ ସେତକ ରେଜା ମୁଦ୍ରା ଝମ୍ କରି ପକାଇଦେଇ—କେବଳ କିଛି ଅବନତ ଭଙ୍ଗୀରେ— ଯଥେଷ୍ଟ ସମ୍ଭ୍ରମ ଓ ଶାଳୀନତା ସହକାରେ ସେ ଫୁଲଟିକୁ ମାଳୀଠାରୁ ଗ୍ରହଣ କଲେ ।

ଆଶ୍ଚର୍ଯ୍ୟ କଥା, ଫୁଲଟିକୁ ହାତରେ ଧରିବା ମାତ୍ରେ ଇ ତାଙ୍କର ସମଗ୍ର ଦେହରେ ଗୋଟାଏ ଅପୂର୍ବ ପୁଲକାନୁଭୂତି ସଞ୍ଚରିତ ହୋଇଗଲା । ଆଜିକୁ ସତର ଅଠର ବର୍ଷ ତଳେ ବିବାହବେଦୀରେ ପ୍ରଥମ କରି ଯେତେବେଳେ ଗୋଟିଏ କମ୍ପିତ କୋମଳ ହସ୍ତର ପ୍ରସ୍ୱେଦସିକ୍ତ ସ୍ପର୍ଶ ସଙ୍ଗେ ତାଙ୍କ ହାତର ଯୋଗ ହେଲା, ସେତେବେଳେ ସେ ଠିକ୍ ଏହିଭଳି ଏକ ଅଜ୍ଞାତ ପୁଲକର କୁସୁମ-କୋମଳତାକୁ ଅନୁଭବ କରିଥିଲେ । ତା ପରେ ତାଙ୍କ ଦେହରୁ ସେ ପୁଲକ ମରିଯାଇଥିଲା । ଆଜି ଠିକ୍ ସେଦିନର ସେଇ ପୁଲକାନୁଭୂତି ସତେ ବା ଏଇ ଗୋଲାପଟିର ଭିତରେ ପୁଣି ଫେରି ଆସିଛି । ପୁରାତନ—କିନ୍ତୁ ଗତାନୁଗତିକ ନୁହେଁ ।

ରମେଶଙ୍କର ବାପୁ ମାତିଉଠିଲେ, ତାଙ୍କର ଦୁଇପଟ କାନମୂଣ୍ଡାରେ ଏକ ଅପୂର୍ବ ଉତ୍ତେଜନାରେ ଉନ୍ମାଦନା ଜାତ ହେଲା ।

ଏ କି ସାମାନ୍ୟ ଗୋଟେ ଗୋଲାପ ଫୁଲ ମାତ୍ର ନୁହେଁ, ଜୀବନର ନବ ନବ ଉନ୍ମେଷଶାଳୀ ରସାନୁଭୂତିର ଏକ ଗୋପନ ଆକାଂକ୍ଷାର ପ୍ରସ୍ଫୁଟିତ ଉନ୍ମାଦନା ।

ଅନାଘ୍ରାତା ଅଥଚ ନବପ୍ରଣୟାଭିଳାଷିଣୀ ବ୍ରୀଡ଼ାନମ୍ରା ନୂତନ ବଧୂଟିଏ ଭଳି ଲଜ୍ଜାରସରେ ପରିପୂର୍ଣ୍ଣ ହୋଇ ସେ ଯେପରି ରମେଶଙ୍କର ବାପୁଙ୍କ ଆଲିଙ୍ଗନ ଭିତରେ ଆଉଜି ପଡ଼ିଛି ।

ସେ ତାକୁ ହୃଦୟର ଅତି ପାଖରେ ବୁକୁ ଉପରେ ସ୍ଥାନ ଦେବେ। କୋଟ୍‌ରେ ସେ ଫୁଲଟିକୁ ଖୋସିଲେ । ହଠାତ୍ ତାଙ୍କର ମନେ ପଡ଼ିଲା ଅମୂଲ୍ୟ ବାବୁଙ୍କ କଥା । ଅମୂଲ୍ୟ ବାବୁ ଜଣେ ରସିକ କବି ବୋଲି ସ୍ୱରଆଡ଼େ ପରିଚିତ । ସବୁଦିନ କୋଟ୍‌ରେ ଫୁଲଟିଏ ନ ଖୋସିଲେ ସେ ପଦାକୁ ବାହାରନ୍ତି ନାହିଁ ।

ମାତ୍ର ଫୁଲଟିର ମର୍ଯ୍ୟାଦା ଓ ଅଧିକାର କ'ଣ ମାତ୍ର ଏତିକି ? ନିଜ ଦେହର ଏକ ବିଶିଷ୍ଟ ସ୍ଥାନରେ ତାକୁ ନିଶ୍ଚିନ୍ତରେ ଖୋସିଦେଇ ଅନ୍ୟର ଦୃଷ୍ଟି ଆକର୍ଷଣ କରିବାର ବାସନା ସଙ୍ଗେ ଫୁଲର ବାସନାଟାକୁ ଏକତ୍ର ମିଶାଇ ଛୁଡ଼ିଦେଲେ କ'ଣ ଫୁଲଟି ପ୍ରତି ଯଥାର୍ଥ ବିଚାର କରାଗଲା ? ଗୋଟିଏ ଫୁଲର ଦାୟିତ୍ୱରୁ ସହଜରେ ରକ୍ଷା ପାଇବା ଲାଗି ଏହାଠାରୁ ବଳି ଗତାନୁଗତିକ ସ୍ୱାର୍ଥପର ଉପାୟ ଅବଶ୍ୟ ଆଉ ନାହିଁ । ଫୁଲଟି ହୁଏତ ଭାବୁଥିବ ଯେ, ସେ ତାର ପ୍ରେମିକର ବୁକୁ ଉପରେ ଶୋଭା ପାଉଛି; କିନ୍ତୁ ସେ ଯଦି ଜାଣନ୍ତା ଯେ ଏକ ନିଷ୍ଠୁର ସ୍ୱାର୍ଥପର ଛଳନାର ଶିକାର ହୋଇ ସେ କେବଳ ପ୍ରଦର୍ଶନୀର ବିଷୟଟିଏ ହୋଇ-ଯାଇଛି ବୋଲି ?? ଫୁଲଟିକୁ ଛାତି ଉପରେ ରଖି—ଫୁଲର ଛଳନାରେ ଅନ୍ୟକୁ ଛାତି ଉପରକୁ ଟାଣି ଆଣିବାର ଗୋପନ ଆକାଂକ୍ଷା ଟିକକ ଯଦି ବିଚରା ଫୁଲଟି ଜାଣିପାରନ୍ତା ! !

ତା ଛଡ଼ା ଯାହା କିଛି ସୁନ୍ଦର ଓ ମଧୁର, ତାକୁ ସକଳ ଭାବେ ନିଜେ ମାଡ଼ି ବସି ଭୋଗ କରିବାରେ ଏକ ଗତାନୁଗତିକ ଶିଶୁସୁଲଭ ମନୋଭାବ ହିଁ କେବଳ ପ୍ରକାଶ ପାଏ । ସମସ୍ତେ ହୁଏତ ଏହା ହିଁ କରନ୍ତି ।

କିନ୍ତୁ ନାଃ ! !

ଏତେ ବଡ଼ ଛଳନା ସେ ଏଇ ଗୋଲାପ ବଧୂଟି ସଙ୍ଗେ ଖେଳି ପାରିବେ ନାହିଁ । କିନ୍ତୁ ଯାକୁ ନେଇ ସେ କଅଣ କରିବେ ? କଅଣ କଲେ ବିଚରା ଫୁଲଟି ତାଙ୍କର ଖୁସି ହେବ ? ତାର ଜୀବନ ଆକାଂକ୍ଷାର ସାର୍ଥକତାରେ ପରିତୃପ୍ତ ହୋଇଉଠିବ ?

ଫୁଲଟିକୁ ନେଇ ସେ କିପରି ଭାବେ ଉପଯୋଗ କରିପାରିବେ ? ଫୁଲଟି ସତେ ବା ତାଙ୍କର ନିଜର ବୟଃପ୍ରାପ୍ତା ସୁନ୍ଦରୀ କନ୍ୟା ! ପରିପୂର୍ଣ୍ଣ

ଯୌବନ ଓ ରମଣୀୟତାରେ ଚକଣିତ ହୋଇ ପିତାର ଘୃଣ୍ଟ ଉପରକୁ ଆଉଜ ଯାଇଚ୍ଛୁ । କିନ୍ତୁ ଏଇଠାରେ କ'ଣ ତାକୁ ଚିରଦିନ ଆଉଜାଇ ରଖି ତାର ଜୀବନର ବାସନାକୁ ସେ ସାର୍ଥକ କରାଇ ପାରିବେ ? ଉପଯୁକ୍ତ ପାତ୍ରରେ ତାକୁ ଅର୍ପଣ କରିବାକୁ ହିଁ ହେବ ।

ଏଇ ଗୋଲାପ ଫୁଲଟି ତାଙ୍କର କନ୍ୟା—ଆଉ ସେ ବର୍ତ୍ତମାନ କନ୍ୟାଦାୟଗ୍ରସ୍ତ ଗୋଟିଏ ଚିନ୍ତିତ, ବିବ୍ରତ ପିତା ।

ଆଃ ! ଆଃ !

କନ୍ୟାଦାୟ – ମହାଦାୟ ! ! !

ଏଇ କନ୍ୟାରତ୍ନଟି ଲାଗି ଉପଯୁକ୍ତ ପାତ୍ର ଅନ୍ୱେଷଣ କରିବାକୁ ହେବ । ଅବିଳମ୍ବେ କରିବାକୁ ହେବ ।

କିନ୍ତୁ କୋଉଠି ?

କାହାକୁ ?

ପଛରେ ପଡ଼ିଲାଣି ଶିବମନ୍ଦିର । ମନ୍ଦିର ଭିତରକୁ ଗଲେ ଫୁଲଟିର ଦାୟିତ୍ୱରୁ ନିଶ୍ଚିନ୍ତ ମୁକ୍ତି ମିଳନ୍ତା । ମନ୍ଦିରକୁ ଯାଇ ପୂଜକ ହାତରେ ଫୁଲଟିକୁ ଧରାଇଦେଲେ—ସେ ଢାଳେ ପାଣି ଶିବଙ୍କ ଉପରେ ଢାଳିଦେଇ—ସେଠାରେ ଫୁଲଟିକୁ ଥୋଇଦେବେ ।

ବାସ୍ !

ଏତିକିରେ ଫୁଲର ଜଞ୍ଜାଳରୁ ସେ ଚିରଦିନ ଲାଗି ମୁକ୍ତ ହୋଇ ଯିବେ ହୁଏତ ! ଠାକୁରଙ୍କ ଶିର ଉପରେ ବସିଲେ ହିଁ ତାର ଜୀବନ ସାର୍ଥକ ହୋଇଉଠିବ । ଉପଯୁକ୍ତ ପାତ୍ରରେ ହିଁ ଉପଯୁକ୍ତ ଦାନ ।

ରାମଶଙ୍କର ବାବୁ ଫୁଲଟିକୁ ଧରି ମନ୍ଦିର ଭିତରକୁ ପଶିଲେ ।

ମନ୍ଦିର ଭିତରେ ମହା କୋଳାହଳ । ସମସ୍ତେ ଭୋଗଡାଲି ଓ ଫୁଲମାଳ ଧରି ଠାକୁରଙ୍କ ପାଖକୁ ଯିବାକୁ ବ୍ୟଗ୍ର ହୋଇ ପଡୁଛନ୍ତି । ପରସ୍ପରକୁ ଠେଲାପେଲା ସମସ୍ତେ ଆଗ ଯାଇ ଠାକୁରଙ୍କ ଆଗରେ ନିଜର ସମସ୍ତ ଜଞ୍ଜାଳ ଅଜାଡ଼ିଦେଇ ଭାରମୁକ୍ତ ହୋଇ ପୁଣି ଘରକୁ ସହଳ ଫେରିଯିବେ ।

ବହୁ ଲୋକଙ୍କର ବହୁ ଜଞ୍ଜାଳ ।

ବହୁ ଲୋକଙ୍କର ବହୁ ଅନୁଯୋଗ ।

ବହୁ ଅଭିଯୋଗ ।

ବହୁ ମାଗୁଣି !!!

ମହାଦେବଙ୍କ ଉପରେ ବେଲପତ୍ରୀ ଆଉ ଫୁଲ ଗଦା ହୋଇଛି — ଗୋଲାପ, ମଲ୍ଲୀ, ଚମ୍ପା, କାଠଚମ୍ପା, ନାଗେଶ୍ବର । ଖୁବ୍ ସ୍ଥିର ଆଉ ନିର୍ବିକାର ଭାବେ ପ୍ରସ୍ତରୀଭୂତ ନିଷ୍ଠୁରତାରେ ଦେବତା ଏ ଫୁଲସବୁ ବହନ କରୁଛନ୍ତି । ଜଣ ଜଣ ହୋଇ ସମସ୍ତେ ଆଣି ଗଦା କରୁଛନ୍ତି ଠାକୁରଙ୍କ ଉପରେ ଫୁଲ ।

କେତେ ବାଡରେ ଫୁଟୁଛନ୍ତି — ବଉଳ, ଚମ୍ପା, ନାଗେଶ୍ବର, ମଲ୍ଲୀ, ଗୋଲାପ । ଫୁଲ ତ ଫୁଟନ୍ତି, ସେମାନେ ସତେ କଅଣ ଜଞ୍ଜାଳ ? ସେମାନେ ବି ଭାବ ଭାବ ସ୍ଥିର କରିପାରୁ ନାହାନ୍ତି — ଏଇସବୁ ଫୁଲ-ଗୁଡ଼ାକ ନେଇ ସେମାନେ କ'ଣ କରିବେ ? ଜାଣି ନାହାନ୍ତି ସେମାନେ ଫୁଲଗୁଡ଼ିକର ଯଥାର୍ଥ ବ୍ୟବହାର — ପାଇ ନାହାନ୍ତି ଉପଯୁକ୍ତ ଠାବ— ଯେଉଁଠି ସେ ଏଇ ଫୁଲଗୁଡିକୁ ଦାନ କରି ନିଷ୍ଠୁର ଆନନ୍ଦ ଅନୁଭବ କରିବେ । ତେଣୁ ଜୀବନର ବହୁ ଅସହ୍ୟ ଜଞ୍ଜାଳ ଅଭିଯୋଗଗୁଡ଼ାକୁ ଦେବତାର ପଦତଳେ ବାଡ଼ିଦେବା ସଙ୍ଗେ ସଙ୍ଗେ—ସେମାନେ ଏଇ ଫୁଲଗୁଡ଼ିକୁ ମଧ୍ୟ ଗଛରୁ ଛିଣ୍ଡାଇ ଆଣି ଦେବତାର ଉପରେ ଅଜାଡ଼ି ଦେଉଛନ୍ତି ।

ରାମଶଙ୍କର ବାବୁଙ୍କ ମନ କରୁଣାକୋମଳ ହୋଇଉଠିଲା ।

ଆଃ !!

ଏତେ ଜଞ୍ଜାଳ ବୋଲି ଏତେ ଅବହେଳା !

ସତେ କି ଦେବତାର ଏଇ ଗୀତ ଗୋଟାଏ ଅନାଥାଶ୍ରମ । କିନ୍ତୁ କୂଳକନାର ନ ପାଇଲେ ଏଇଠି ଆଣି ଛାଡ଼ିଦେଲେ ସବୁ ଜଞ୍ଜାଳ ଭୁଟିଯିବ ସହଜରେ । ଆଜ୍ଞ ପ୍ରସ୍ତରର ଏଇ ଜଡ଼ୀଭୂତ ପ୍ରତିମା—ଏ ମଧ୍ଯ କ ନର୍ବିକାର ଆଉ ନର୍ଲିପ୍ତ ଭାବେ ନିଷ୍ଠୁର ଉପେକ୍ଷାର ଅବହେଳା ଭିତରେ ଫୁଲଗୁଡ଼ିକର ଏଇ ଭାର ବହନ କରୁଛନ୍ତି !

ନାଃ !

ଦେବ ନାହିଁ । ଏଠି ଏପରି ନିର୍ମମ ଅବହେଳା ଓ ନର୍ଲିପ୍ତ ଚାମ ମର୍ଯ୍ୟାଦା ସେ ତାଙ୍କର ପ୍ରାଣପ୍ରତିମ କନ୍ୟାଟିକୁ ଅଯାଚିତ ଭାବେ ଟେକିଦେଇ ପକାଇଦେଇ ଯାଇପାରିବେ ନାହିଁ । ସେ ଉପଯୁକ୍ତ ପାତ୍ର ଖୋଜିବେ । ରାମଶଙ୍କର ବାବୁ ଦେଉଳ ଭିତରୁ ଗୋଲାପଟିକୁ ହାତରେ ଧରି ଖୁସି ଖୁସି ପଦାକୁ ବାହାରି ଆସିଲେ ।

ରାସ୍ତା ଉପରକୁ ଆସି ରାମଶଙ୍କର ବାବୁ ଭାବିଲେ—ବର୍ତ୍ତମାନ ଉପାୟ କ'ଣ ? ଫୁଲଟିକୁ ସେ ପ୍ରକୃତରେ କ'ଣ କରିବେ ?

ଓଃ ! !

ଅଚ୍ଛା ଜଞ୍ଜାଳରେ ମଣିଷ ପଡ଼ିଲା ! !

ଫୁଲର ଜଞ୍ଜାଳ – ମହା ଜଞ୍ଜାଳ ! !

ଅବଶ୍ୟ ଆଉ ଗୋଟାଏ ଉପାୟ ଅଛି । ଘରକୁ 'ନେଇଯାଇ' ଫୁଲଟିକୁ ସ୍ତ୍ରୀଙ୍କ ଗଣ୍ଠିରେ ଖୋସିଦେଲେ—ଫୁଲର ଜଞ୍ଜାଳ ତ ଯାଆନ୍ତା —ସ୍ତ୍ରୀ ମଧ୍ୟ ଖୁସି ହୋଇଯାନ୍ତେ ।······ଖବୁ ସ୍ୱାମୀର ଏପରି ବ୍ୟବହାରରେ ଖୁସି ହୋଇଯାନ୍ତି ।

ରମଶଙ୍କର ବାବୁ ଫୁଲଟିକୁ ଶୁଙ୍ଘିଲେ । ତା'ପରେ ହଠାତ୍ ସେ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ ।

ହାୟ ! ଓହୋ ! ଏତିକରେ ଏତେବଡ଼ ଜଞ୍ଜାଳରୁ ମୁକ୍ତି ମିଳିଯିବ ? ଏତେବଡ଼ ଅନୁଭୂତିର ହାପୁ ରୁ ଏତିକରେ ଛୁଟିଯିବ ?

ସ୍ତ୍ରୀ ଅବଶ୍ୟ ଖୁସି ହେବେ ।

କିନ୍ତୁ ତା ପରେ କ'ଣ ହେବ ?

ଗୋଟିଏ ଗ୍ରନ୍ଥିର ଗତାନୁଗତିକ ବିଳାସ-ପ୍ରମତ୍ତତାର ଅଗ୍ନିଦାହରେ ଉତ୍ତପ୍ତ ହୋଇ ଝଲସିଯିବ ଫୁଲଟିର ଏଇ ମୃଦୁ କୋମଳ ଗୋଲାପୀ ପାଖୁଡ଼ାଗୁଡ଼ିକ । ଆଉ ଆଜି ଗ୍ରନ୍ଥିଟା ପାଇଗଲେ·········??

ରମଣଙ୍କର ବାବୁ ଆଉଥରେ ଗୋଲାପଟିକୁ ଚାହିଁଲେ । ବଡ଼ କରୁଣ ଭାବରେ ସତେ କି ତାଙ୍କ ମୁହଁକୁ ଚାହିଁରହିଛି ଗୋଲାପଟି । ସତେ ବା ସେ ଜାଣି ପାରିଲାଣି—ତାକୁ ସଙ୍କର୍ପୀଠରେ ବଳିଦେବା ଲାଗି·····

ଓଃ ! !

ନାଃ ! !

ଏକଥା ପାହା, ବଜାରରୁ ଗଣ୍ଡଶ ମାଛଟିଏ କିଣିନେଇ ତାକୁ ଚୁଲି ନିଆଁରେ ପୋଡ଼ି ଦୁହେଁଯାକ ଚଟଣି କରି ପଖାଳ ଖାଇବା—ଏକା କଥା ।

ସେ କଥା ହୋଇପାରିବ ନାହିଁ ।

କେବେ ହୋଇପାରିବ ନାହିଁ ।

ଏଇ ଗତାନୁଗତିକତା ଭିତରେ ସେ ଆଉ ପଶିବେ ନାହିଁ ।

ରମଣଙ୍କର ବାବୁ ଫୁଲଟିକୁ ଧରି ଆଗକୁ ଚାଲିଲେ । ଠିକ୍ ଏ ଆଗରେ ବଡ଼ ରାସ୍ତାରୁ ଆଉ ଗୋଟିଏ ସଙ୍କୀର୍ଣ୍ଣ ରାସ୍ତା ବାହାରି ଭିତରକୁ ଚାଲିଯାଇଛି । ରମଣଙ୍କର ବାବୁ ସେଇ ଆଡ଼କୁ ଚାହିଁଲା ମାତ୍ରେ ଇ ତାଙ୍କର ଆଖି ପଡ଼ିଲା ଗୋଟିଏ ଝିଅ ଉପରେ । ସେ ତାଙ୍କ ଆଡ଼କୁ ପଛ କରି କାହା ସଙ୍ଗେ କଥାବାର୍ତ୍ତା କରୁଥିଲା ।

ଝିଅଟି ଡେଙ୍ଗା ଡେଙ୍ଗା ମନେହେଲା ତାଙ୍କର । ତାଙ୍କଠାରୁ ୩୨-୪୦ ଫୁଟ ଦୂରରେ ସେ ଠିଆ ହୋଇଛି । ପଛ ପଟୁ ଦେଖିଲେ ପୂରା ଜାଣି

ହେଉ ନାହିଁ; ତଥାପି ହୋଇପାରେ ସେ ଗୋଟିଏ ସ୍ମୃତି କଲ୍ପକର । ଉଲ୍‌କଣ୍ଠ ଦେଖିବାର ବା ଚାହିଁବାର ଉପାୟ ନାହିଁ ।

କନୁ ଝିଅଟିକୁ ଚାହିଁବା ଲାଗି ବା ଦେଖିବା ଲାଗି ଗ୍ରମଶଙ୍କର ବାବୁଙ୍କର ସ୍ପୃହା ନ ଥିଲା । ଝିଅଟି ତାଙ୍କ ଆଡ଼କୁ ପଛ କରି ଠିଆ ହୋଇଛି । ତାଙ୍କର ଦୃଷ୍ଟି ପଡ଼ିଲା ତାର ସୁନ୍ଦର କୋମଳ କୃଷ୍ଣ ବିପୁଳ ଗଣ୍ଠି ଉପରେ । ଏପରି ସୁନ୍ଦର ବିପୁଳ କେଶପରିପାଟୀ ସେ କେବେ ସଜ୍ଞାଗ ଚିତ୍ତରେ ଦେଖି ନାହାନ୍ତି । ଏତେ କେଶ ! ଏତେ କୃଷ୍ଣ ! ପୁଣି ତାର ଏତେ ଉଚ୍ଛ୍ୱାସପରିପୂର୍ଣ୍ଣ ପରିପାଟୀମୟ ବିପୁଳତା !! ଏ ତ କେଶପାଶ ନୁହେଁ—ଏ ଯେପରି ଅନାଦି କାଳର ତମିସ୍ରପ୍ଲିତ ରହସ୍ୟସ୍ରୋତାଙ୍କର ଘନୀଭୂତ ମାୟା !! କମ୍ବା ଏ ଯେପରି ଅଶେଷ ବୃଷ୍ଟିଜଳଗର୍ଭନ୍ୟତା ଘନଘୋର ଆଷାଢ଼ ମେଘର ପୁଞ୍ଜୀକୃତ ଅଞ୍ଜନବର୍ଣ୍ଣ ! ! ଏଇ କେଶଗୁଚ୍ଛର ପ୍ରତିଟି ମୋଡ଼ ଭିତରେ ଯେପରି ରହିଛି ଗହନବନର ନିବିଡ଼ ଛାୟା ! କମ୍ବା ତାର ଏଇ ଶଙ୍ଖ—ଧବଳ—ଗ୍ରୀବା ଉପରେ ଅଶେଷ ଧୈର୍ଯ୍ୟ ଓ ଅଶେଷ ଅସ୍ଥିରତାର ମୂର୍ତ୍ତିମନ୍ତ ଅବତାର ରୂପେ ଫେଣା ମାଡ଼ି ଶୋଇରହିଛି ଶେଷନାଗ—ବାସୁକୀ ।

ଆକାଶର ଅନନ୍ତ ନୀଳିମା ଯେପରି ବନ୍ଦୀ ହୋଇ ରହିଛି ଏହି ବିପୁଳ ପୁଞ୍ଜୀକୃତ କେଶରାଶିର ଅପୂର୍ବ ପରିପାଟୀ ମଧ୍ୟରେ !! ଅସୀମ ସାଗରର ଅସଂଖ୍ୟ ଚଳମାନ ତେଜ ଯେପରି ଅଳସରେ ଏହାରି ଭିତରେ ଇ ଘୂମେଇ ପଡ଼ିଛନ୍ତି !!

ଗ୍ରମଶଙ୍କର ବାବୁଙ୍କ ମନ ଭିତରେ ଏଇ କେଶସମ୍ଭାର ଏକି ଅପୂର୍ବ କବିତ୍ୱପୂର୍ଣ୍ଣ ଉନ୍ମାଦନା ଜଗାଇଦେଲା ।

ଊଷତ୍ୟରେ ବିପୁଳା ,ପୁଣି ବନପୁରେ ଊର୍ମିଳୀ ଏହି ଅପୂର୍ବ କେଶସମ୍ଭାର ଆଡ଼ୁ ଆଉ ଆଖି ଫେରାଇ ଆଣିପାରିଲେ ନାହିଁ ଗ୍ରମଶଙ୍କର ବାବୁ । ଏହି ଘନକୃଷ୍ଣ କେଶପାଶର ପରିପାଟୀମୟ ବିପୁଳ ଆଲିଙ୍ଗନ ଯେପରି ଅପେକ୍ଷା କରି ରହିଛି ବିପୁଳ ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ ଓ ସୌରଭରେ ପରିପୂର୍ଣ୍ଣ । ଏହି ଗୋଲାପ ଫୁଲଟିର !!

ଠିକ୍ କଥା ।

ରାମଶଙ୍କର ବାବୁ ଚଞ୍ଚଳ ହୋଇଉଠିଲେ । ଗୋଲାପ ଫୁଲଟିକୁ ତ ର ଯଥାଯୋଗ୍ୟ ସ୍ଥାନରେ ରଖିଦେଇ ସେ ନିଶ୍ଚିନ୍ତ ମନରେ ଘରକୁ ଫେରିଯିବେ ।

ଫୁଲଟିକୁ ଧରି ପରମ ଆଗ୍ରହରେ ସେ ଝିଅଟିର ପାଖକୁ ଗତି କଲେ । ମାତ୍ର ଝିଅଟିର ପାଖରେ ପହଞ୍ଚିଲା ମାତ୍ରେ ହିଁ ସେ ତାର ବନ୍ଧୁକୁ ଶେଷ କଥାଟି କହିଦେଇ ଏକ ଗଳି ରାସ୍ତା ଆଡ଼କୁ ମୋଡ଼ିଲା । ରାମଶଙ୍କର ବାବୁ ମଧ୍ୟ ଚଞ୍ଚଳ ପଦକ୍ଷେପରେ ତାର ପିଚ୍ଛା ଧରିଲେ । ତାଙ୍କର ଦୃଷ୍ଟି ଓ ଲକ୍ଷ୍ୟ ସ୍ଥିରଭାବେ ଝିଅଟିର କେବଳ ସେଇ ପରିପାଟୀମଣ୍ଡ ଖଣ୍ଡୁଲ ଗଣ୍ଡ ଉପରେ ହିଁ ରହିଛି । ଝିଅଟିର ବେଶ୍ ପାଖକୁ ଲାଗିଆସି ରାମଶଙ୍କର ବାବୁ ଡାକିଲେ –

ଶୁଣ ! !

ଝିଅଟି ହଠାତ୍ ଚମକିପଡ଼ି ପଛକୁ ମୁହଁ ବୁଲାଇ ଚାହିଁଲା ।

ରାମଶଙ୍କର ବାବୁ ଆହୁରି ବେଶୀ ଉତ୍ସାହିତ ହୋଇ ହାତରେ ଧରିଥିବା ଗୋଲାପଟିକୁ ତା' ଆଡ଼କୁ ବଢ଼ାଇଦେଇ କହିଲେ—

ଶୁଣ ! ! !

ଝିଅଟି ଭ୍ରୂକୁଞ୍ଚିତ କରି ଓଠକୋଣରୁ ଟେକାଏ ଓଠ କାମୁଡ଼ି ଖୁବ୍ ଗମ୍ଭୀର ଏବଂ ଗାମ୍ଭୀର୍ଯ୍ୟକ୍ ଭାବେ ଚାହିଁ ପଚାରିଲା –

କ'ଣ ମୋତେ ଡାକୁଛନ୍ତି ?

ରାମଶଙ୍କର ବାବୁ ଟିକେ ସ୍ମିତ ହାସ୍ୟରେ ବ୍ୟାକୁଳ ଭାବେ କହିଲେ –

ହିଁ ହିଁ ତୁମକୁ ।

କଅଣ ଚାହାନ୍ତି ଆପଣ ?

ଏଇ ଗୋଲାପ ଫୁଲଟି ଗ୍ରହଣ କରି ମୋତେ ବଞ୍ଚାଅ ।

ମାନେ ? ? ?

ମାନେ ମୋତେ ଏହାର ପୀଡ଼ାରୁ ରକ୍ଷା କର ।

ଏଇ ସୁସ୍ଥ ସତେଜ ସୁନ୍ଦର ଗୋଲାପଟି ଲାଗେ ଯେପରି ତୁମର ଏଇ ପରିପାଟୀମୟ ବପୁଳ କେଶରାଶିର ଆଲିଙ୍ଗନ ଅପେକ୍ଷା କରି ରହିଛି ! ଏଇଟିକୁ ନେଇ ତୁମେ ଗଣ୍ଡରେ ଖୋସିଦେଲେ ମୁଁ ବଞ୍ଚିଯିବି ।

ଆପଣ କଏ ମୋତେ ଏଇ ଗୋଲାପ ଫୁଲ ଯାଚିବାକୁ ?

ରମଣଙ୍କର ବାଘୁ ଟିକେ ଥତମତ ଖାଇଗଲେ । ତାପରେ ଖୁବ୍ ଧୀର ନରମ ଗଳାରେ କହିଲେ –

ଦେଖ ! ତୁମର ଏ ପ୍ରଶ୍ନର ଉତ୍ତର ମୁଁ ଆଦୌ ଜାଣି ନାହିଁ । ତୁମେ ସେ ବିଷୟରେ ମୁଣ୍ଡ ନ ଖେଳାଇ······ଫୁଲଟିକୁ ନେଇ ଆଗ ତୁମ ଖୋସାରେ ଖୋସିଦିଅ ।

ଆପଣ ମୋତେ କଅଣ କରି ପାଇଲେ କି ?

ତୁମକୁ କୌଣସି ରୂପେ ପାଇବା ମୋ ପକ୍ଷରେ ଉଚିତ ନୁହେଁ— ମୁଁ ଜାଣେ । ଏଇ ଗୋଲାପ ଫୁଲଟିକୁ ତୁମେ ଯେପରି ଗ୍ରହଣ କରିବ ପାଇବା କଥା ପାଅ—ଆଜି ମୋତେ ବଞ୍ଚାଅ ।

ଆପଣଙ୍କର କି ଅଧିକାର ଅଛି ମୋତେ ଏ ଫୁଲ ଯାଚିବାରେ ?

ମୋର ଆଦୌ ଅଧିକାର ନାହିଁ—ଏ କଥା ମୁଁ ମାନୁଛି । ମାତ୍ର ଏ ଫୁଲଟିର ଅଧିକାର ତୁମେ ସ୍ୱୀକାର କରୁ ନାହଁ କାହିଁକି ?

ଝିଅଟି ବୋଧେ ଏଥର ସତକୁ ସତ ରାଗିଗଲା । ସେ ପଣତ କାନକୁ ଅଣ୍ଟାରେ ଗୁଡ଼ାଇଧରି ଖୁବ୍ ତେଜିଯାଇ କହିଲା—ଆପଣ ପାଗଳ ନା ବଜାରି ? ?

—ନା—ନା—

ମୁଁ ? ନା – ନା—ମୁଁ—ମୁଁ ହେଉଛି – ମାନେ – ମୁଁ ହେଉଛି —ଅଧ୍ୟାପକ ରମଣଙ୍କର ମହାପାତ୍ର ।

ଅଧ୍ୟାପକ ? ?

ସହସା ଏକ ନିଦାରୁଣ ଚପେଟାଘାତ ସଙ୍ଗେ ସଙ୍ଗେ ତାଙ୍କ ବାଳକୁ ଧରି ତାଙ୍କ ପଛପଟୁ ଜଣେ ବସ୍ତିବାଲା ଚିଲେଇ ଉଠିଲା – ରଖ୍ ଚୋର ଅଧ୍ୟାପକଗିରି ଶଃ······ବଜାଗା—ଭାଉ ଆ—ସ୍ୱେ କ'ଣ ଦାଗିବସ୍ତି ଅଛି ବେ ଶଃ – ଚୋ ରସିକପଣିଆ ଛଡ଼ାଉଇଲେବ – ଶଃ – ମାର୍ ତା ଗେଲ ମୁଣ୍ଡାକୁ······

ବାସ—ରାମଶଙ୍କର ବାବୁଙ୍କ ପିଠି, ବେକ ଓ ଗାଲରେ ସପାସପ ବସିଲା ବାଧା, ଚଟକଣି ଓ ଢୁସି । ବହୁ ବସ୍ତିବାଲା ଜମି ଯାଇଥିଲେ । ସେମାନେ ସମସ୍ତେ ଝିଅଟିର ଆତ୍ମମର୍ଯ୍ୟାଦା ରକ୍ଷା କରିବା ଲାଗି ରାମଶଙ୍କର ବାବୁଙ୍କୁ ମନଇଚ୍ଛା ପ୍ରହାର କରିଲାଗିଲେ । ରାମଶଙ୍କର ବାବୁ ତଳେ ପଡ଼ିଗଲେ—ତାଙ୍କର ନାକରୁ ରକ୍ତ ବୋହିଲା – ତାଙ୍କ ହାତରୁ ଗୋଲାପ ଫୁଲଟି ଛିଟିକିଯାଇ ନର୍ଦ୍ଦମାରେ ପଡ଼ିଗଲା ଏବଂ ତାଙ୍କର ଚେତା ବୁଡ଼ିଗଲା । ବସ୍ତିବାଲାମାନେ ପଳାଇଗଲେ ।

ତା'ପରେ ଯାହା ହେବାର କଥା ହେଲା । ସଙ୍ଗେ ସଙ୍ଗେ ପୋଲିସ ଆସିଲେ । ବହୁ ଲୋକ ଜମା ହୋଇଗଲେ ।

ସଂଜ୍ଞାହୀନ ରାମଶଙ୍କର ବାବୁଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନା ନିଆଗଲା । ସେଠି ଦେଖାଗଲା—ଆଘାତ ସେମିତି କିଛି ଗୁରୁତର ନୁହେଁ । କିଛି ସମୟ ଚିକିତ୍ସା ଓ ଶୁଶ୍ରୂଷା ପରେ ତାଙ୍କର ପୁଣି ଚେତା ଫେରି-ଆସିଲା ।

ତାଙ୍କ ଚାରିପଟେ ତାଙ୍କର ବହୁ ପରିଚିତ ବ୍ୟକ୍ତି ଜମିଗଲେ । ଡାକ୍ତର, ପୋଲିସ, ନର୍ସ ଓ ସହକର୍ମୀ ବନ୍ଧୁଗଣ । ସେମାନେ ନାନା କଥା ପଚାରି ଲାଗିଲେ ।

ଆପଣ କ'ଣ ସେ ଝିଅଟିକୁ ଆଗରୁ ଜାଣିଥିଲେ ରାମଶଙ୍କର ବାବୁ ? ଅଚ୍ଛା—ଆପଣଙ୍କୁ କିଏ ପ୍ରଥମେ ମାଡ଼ ଦେଲା ? ଆପଣ ସେ ଲୋକଟାକୁ ଚିହ୍ନାଇ ଦେଇପାରିବେ ?

ସେ ଝିଅଟି ନିଶ୍ଚୟ ଆଗରୁ ଆପଣଙ୍କୁ ଗୋଲାପ ଫୁଲଟିଏ ମାଗିଥିଲା, ନାହିଁ ରାମ ବାବୁ ?

...ସେ ବସ୍ତିବାଲାଙ୍କ ସଙ୍ଗେ ଆପଣଙ୍କର ଆଗରୁ ପରିଚୟ ନ ଥିଲା କି ? ଆପଣ ସେମାନଙ୍କର କାଳୀ ଆଉ ମାଧବ୍ ପାଇଁ ଲାଗି ସୁପାରିଶ ଦେଇ ନ ଥିଲେ କି ?

...ଆଚ୍ଛା, ସେ ସାଇର କୌଣସି ଦୁଷ୍ଟ କଲେଜ ଛାତ୍ରକୁ ଆପଣ କ୍ଲାସରେ ଜବତ୍ କରିଥିଲେ କି ?

...ଆମେ ଯାହା ଶୁଣୁଛୁ ଶ୍ୟାମଶଙ୍କର ବାବୁ, ଆପଣ ସେ ଝିଅଟିକୁ ବଳେ ବଳେ ଫେଲ୍ ପାଶ ନାହାନ୍ତି—ସେ ନିଶ୍ଚୟ ଆଗରୁ ଆପଣଙ୍କୁ... ମାନେ—ଅର୍ଥାତ୍—

ଶ୍ୟାମଶଙ୍କର ବାବୁ କେବଳ ଗମ୍ଭୀର ଭାବେ ଶୁଣିଚାଲିଲେ । ତାଙ୍କର ଆଖି ଦୁଇଟା ଖୁବ୍ ଲାଲ ଦିଶୁଥିଲା । ସେ କେବଳ ନୀରବ ହୋଇ ବସି ରହିଲେ ।

ମିଷ୍ଟର ଗ୍ଲାସେ ଖଣ୍ଡେ ଗରମ ଦୁଧ ଆଣି ଦେଇଗଲେ । ସେତିକି ସେ ସୁନା ପିଲାଙ୍କ ପରି ପିଇଦେଇ ପୁଣି ଗମ୍ଭୀର ଭାବେ ଟେକିଆକୁ ଆଉଜି ବସିଲେ । କାହା କଥାର କିଛି ଜବାବ ଦେଲେ ନାହିଁ ।

ଏଣେ ଡାକ୍ତରଖାନାରେ ଲୋକଗହଳ ଖୁବ୍ ବଢ଼ିଗଲା । ସମସ୍ତେ ଶ୍ୟାମଶଙ୍କର ବାବୁଙ୍କ ବନ୍ଧୁ, କିମ୍ବା ପରିଚିତ କିମ୍ବା ଶୁଭାକାଂକ୍ଷୀ । ବସ୍ତିବାଲା ବି ବହୁତ ଜମିଗଲେ ମଜା ଦେଖିବା ଲାଗି । ସମସ୍ତେ ତାଙ୍କୁ ଘେରିଯାଇ ନାନାବିଧ ପ୍ରଶ୍ନ ଓ ସହାନୁଭୂତିପୂର୍ଣ୍ଣ ବାକ୍ୟ ବର୍ଷଣ କରିବାକୁ ଲାଗିଲେ ।......

ବହୁତ ସମୟ ବିତିଗଲା । ଶେଷରେ ଶ୍ୟାମଶଙ୍କର ବାବୁ ପଦଟିଏ କଥା କହିଲେ-- ଆଚ୍ଛା ଡାକ୍ତର ! ଦୟାକରି ବର୍ତ୍ତମାନ ମୋତେ ଘରକୁ ପଠାଇଦେବେ କି ?

ଅବଶ୍ୟ ଏତେ ଶୀଘ୍ର ତାଙ୍କୁ ଘରକୁ ଛାଡ଼ିଦେଲେ ଆଉ ବିଶେଷ କିଛି କ୍ଷତି ହେବ ନାହିଁ—ଆଘାତ ବି ସେମିତି କିଛି ଗୁରୁତର ନୁହେଁ -

କେବଳ ଖୁବ୍ ଉତ୍ତେଜନାଜନକ ଗୋଟିଏ ସକ୍ । ଡାକ୍ତର ଇତସ୍ତତଃ ହୋଇ ଚ୍ଚାରିଆଡ଼କୁ ଚ୍ଚାହୁଁଛନ୍ତି—ହଠାତ୍ ଜନଗହଳ ଭେଦ କରି ଖୁବ୍ କ୍ଷିପ୍ର ଗତିରେ ଜଣେ ଭଦ୍ରମହିଳା ପଶିଆସିଲେ ।

ସମସ୍ତେ ବୁଝିଗଲେ – ଆଗନ୍ତୁକା ହେଉଛନ୍ତି ରାମଶଙ୍କର ବାବୁଙ୍କର ସହଧର୍ମିଣୀ ସୁମାନ୍ତ ଦେବୀ ।

ବହୁ ଲୋକଙ୍କୁ ସେଠାରୁ ବାହାର କରି ଦିଆଗଲା । ଅନ୍ୟମାନେ ଉତ୍ସୁକ ହୋଇ ନୀରବ ରହିଗଲେ ।

ସୁମାନ୍ତ ଦେବୀ ସ୍ୱାମୀଙ୍କୁ ଦେଖି ପ୍ରଥମେ ତାଙ୍କ ଦେହ ଓ ମୁଣ୍ଡରେ ହାତ ବୁଲାଇ ଆଣିଲେ । ତା'ପରେ ନୀରବରେ ସ୍ୱାମୀଙ୍କ ମୁଣ୍ଡରେ ହାତ ବୁଲାଇ ତାଙ୍କ ମୁହଁକୁ ସିଧା ଚ୍ଚାହିଁ ବସିରହିଲେ । ରାମଶଙ୍କର ବାବୁ କିନ୍ତୁ ସେହିପରି ଧ୍ୟାନସ୍ଥ ଓ ଗମ୍ଭୀର ହୋଇ ବସି ରହିଥାଆନ୍ତି । ତାଙ୍କ ମୁହଁରେ କେବଳ କ୍ଲାନ୍ତ ବ୍ୟଥିତ ଆଉ କୌଣସି ପ୍ରତିକ୍ରିୟା ଦେଖାଯାଉ ନ ଥାଏ ।

ଏ ପରିସ୍ଥିତିରେ ବନ୍ଧୁ ଓ ଶୁଭକାଂକ୍ଷୀମାନେ ସେ ଘରୁ ବାହାରି ଯାଇ ବାରଣ୍ଡାରେ ଜମା ହେଲେ ଓ ସେମାନଙ୍କ ମଧ୍ୟରେ ପୁଣି କୋଳାହଳ ଓ ଗୁଞ୍ଜନ ବଢ଼ିଚ୍ଚାଲିଲା । ପୁଣି ଥରେ ଏଇ ଶୋଚନୀୟ ଘଟଣା ସମ୍ବନ୍ଧେ ନାନାଦି ପ୍ରକାର ଆଳାପ, ପ୍ରଶ୍ନ ଓ ସହାନୁଭୂତିପୂର୍ଣ୍ଣ ଆଲୋଚନା ଆରମ୍ଭ ହୋଇଗଲା ।

ସୁମାନ୍ତ ଦେବୀ ସ୍ୱାମୀଙ୍କ ଦେହରେ ସେହିଭଳି ଗମ୍ଭୀର ଭାବେ ଧୀରେ ଧୀରେ ହାତ ବୁଲାଉଥାନ୍ତି ।

ରାମଶଙ୍କର ବାବୁ ମଧ୍ୟ ସେହିଭଳି ଧୀର ଗମ୍ଭୀର ଭାବେ ଶୂନ୍ୟକୁ ଚ୍ଚାହିଁଲା ଭଳି ଆଉଜି ହୋଇ ବସିଥାନ୍ତି ।

କିଛି ସମୟ କଟିଗଲା । ରାମଶଙ୍କର ବାବୁ ପୁଣି ପାଟିଖୋଲିଲେ—

ଡକ୍ଟର କାହାନ୍ତି ?
ଡକ୍ଟର ଆସିଲେ ।

ଡକ୍ଟର, ମୁଁ ସଂପୂର୍ଣ୍ଣ ସୁସ୍ଥବୋଧ କରୁଛି । ଏଥର ମୋତେ ଘରକୁ ଯିବାକୁ ଅନୁମତି ଦିଅନ୍ତୁ ।

ସୁମିତ୍ରା ଦେବୀ ମଧ୍ୟ ଡାକ୍ତରଙ୍କୁ କହିଲେ—
ମୁଁ ତାଙ୍କୁ ଘରକୁ ନେଇଯାଉଛି ।
ଡକ୍ଟର ଦେଖିଲେ, ତାଙ୍କର ଘରକୁ ଯିବାରେ ଆଉ କିଛି ଅସୁବିଧା ନାହିଁ ।

× ×

ବାଟଯାକ ଟାକ୍ସି ମଧ୍ୟରେ ସ୍ୱାମୀ ସ୍ତ୍ରୀ କେହି କାହାକୁ କିଛି କହୁ ନାହାନ୍ତି । ଘରକୁ ଆସି ସୁମିତ୍ରା ଦେବୀ ବନ୍ଦୋବସ୍ତ କରିଦେଲେ । ରାମଶଙ୍କର ବାବୁ କହିଲେ, ମୁଁ ଟିକିଏ ଛାତ ଉପରେ ବସିବି । କେହି ମୋ ପାଖକୁ ବର୍ତ୍ତମାନ ଆସ ନାହିଁ । ଛାତ ଉପରେ ଆରାମଚୌକି ପକାଇ ସୁମିତ୍ରା ଦେବୀ ସ୍ୱାମୀଙ୍କୁ ସେଠି ରେ ବସାଇଦେଲେ । ଛାତ ଉପରେ ସୁନ୍ଦର ଜହ୍ନ ପଡ଼ିଛି । ଥଣ୍ଡା ବି ଲାଗୁଛି ବେଶ୍ ।

ଏକ ଗ୍ଲାସ ଗରମ ଦୁଧରେ କିଛି ଓଭାଲଟିନ୍ ମିଶାଇ ସୁମିତ୍ରା ଦେବୀ ସ୍ୱାମୀଙ୍କ ମୁହଁ ପାଖେ ଧରି କହିଲେ—
ନଅ – ପିଇଦିଅ ।

ରାମଶଙ୍କର ବାବୁ ନୀରବରେ ସେତକ ପିଇଦେଲେ । ତା'ପରେ କିଛି ସମୟ ନୀରବତା । ପିଲାମାନଙ୍କୁ ସୁମିତ୍ରା ଦେବୀ ମନା କରିଦେଇଥିଲେ —କେହି ଯେମିତି ଛାତ ଉପରକୁ ଆସି ବାପାଙ୍କୁ ବିରକ୍ତ ନ କରନ୍ତି । ସେମାନେ ସମସ୍ତେ ତଳେ ଥିଲେ ।

ସୁନ୍ଦର ଜହ୍ନ ପଡ଼ିଛି । ସୁମିତ୍ରା ଦେବୀ ସ୍ୱାମୀଙ୍କର ଖୁବ୍ ପାଖକୁ ଲାଗିଆସି ଚଉକିର ହାତ ଉପରେ ବସିପଡ଼ିଲେ । ଆଜିର ଏଇ ଅସମ୍ଭବ ଘଟଣାରେ ତାଙ୍କ ମନରେ କେତେ ଯେ ପ୍ରତିକ୍ରିୟା, ତା'ର ସୀମା

ନାହିଁ । ତେବେ ଏତିକି ସାନ୍ତ୍ୱନା ଯେ ଏଇ ଧୀରସ୍ଥିର ଗମ୍ଭୀର ଲୋକଟି ପୁଣି ଫେରିଆସିଛୁ ସୁନା ପିଲାଟି ପରି ଘରକୁ । ସୁମାନ୍ତ ଦେବୀ ମନେ ମନେ ଭାବୁଥିଲେ –

ପୁଅଙ୍କର ପ୍ରକୃତିରେ କିଛି ଦୋଷ ନାହିଁ । ଏତେଦିନ ହେଲାଣି ସେ ଘର ସଂସାର କଲେଣି – କୋଉ ଦିନ କାହା ମୁହଁକୁ ବି ସେ ଚାହିଁ ନାହାନ୍ତି । ଘରେ ତ ପିଲାମାନେ ସିନେମା ଷ୍ଟାରଙ୍କ ଫଟୋଟିଏ ଯଦି ଆଣି ଟାଙ୍ଗିବେ, ତା' ହେଲେ ସାଙ୍ଗେ ସାଙ୍ଗେ ସେ ତାକୁ ବରଣ୍ଡାରେ ଛୁଣ୍ଡାଇ ଦେଇ ଖଡଗଡ଼ାରେ ଫୋପାଡ଼ିଦେବେ ।

ଆଜ ଏମିତି ସତେ କ'ଣ ହେଲା ଯେ –
କିଛି ନାହିଁ – ହବ କଅଣ ?

ପୁଅଙ୍କର ପ୍ରକୃତିରେ କିଛି ଦୋଷ ନାହିଁ । ଆଜକାଲି ଏ ଟୋକା ପଞ୍ଝାଙ୍କ ଯାହା ହେଉଛନ୍ତି ନା ! ପୁଅଙ୍କୁ କ'ଣ ଜଣା ଅଛି ଯେ ଏଗୁଡ଼ାକ ମୁଣ୍ଡରେ କେତେ ଟାସେଲ୍ ଆଉ ନକଲି ବାଳ ଗୁଡ଼େଇ ଫୁଲେଇ ଖୋସା ଖୋସିଥାଆନ୍ତି ?

ଫୁଲେଇ ଛତରଖାଇଏ ଭଲ ମଣିଷଙ୍କୁ ବି ଗଣ୍ଡିଆ କରିଦେବେ ।
ରମଣଙ୍କର ବାବୁ ସେହିଭଳି ଧୀର ଗମ୍ଭୀର ଭାବେ ବସିଥାନ୍ତି । ସୁନ୍ଦର ଜହ୍ନ ପଡ଼ିଛି । ବାୟୁମଣ୍ଡଳ ଥଣ୍ଡା ହୋଇ ଆସିଲାଣି ।

ସ୍ୱାମୀଙ୍କ ମୁହଁକୁ ଚାହିଁ ହଠାତ୍ ସୁମାନ୍ତ ଦେବୀଙ୍କର ହୃଦୟ ଚଞ୍ଚଳ ହୋଇଉଠିଲା ।

କେଡେ ଶାନ୍ତଶିଷ୍ଟ ନିରୀହ ମଣିଷଟିଏ ଭଲା !
ଏମିତି ମଣିଷଟିଏ ଭଲା ଏଠି କିଏ ପାଇଛି ?

ଫୁଲଟିଏ ଯାଚିଦେଲେ ବୋଲି ଏମିତି କଅଣ ଦୋଷ ହୋଇଗଲା ? ?
ହେଉ ଶିକ୍ଷକ ତ ! ବାପ ସମାନ !

ତୋତେ ଏତେ ଅପମାନ ହୋଇଗଲା—ଆଜ ଏମିତ ନକଲି ବାଳ ଲଗାଇ ଫୁଲେଇ ହୋଇ ଖୋସା ପାର ବଜାରରେ ବୁଲୁଥିଲୁ କାହିଁକ ?

ଏତକ କଥାରେ ଏ ଲୋକେ ପୁଣି କହିବେ—ଚରିତ୍ର ନଷ୍ଟ ହୋଇଗଲା । ଆରେ ଦେଖିଛୁ କେତେ ଚରିତ୍ର ! ! !

ସଜ ମାଛରେ ପୋକ ପକାଇଦେବେ ସେମାନେ ।

ରାମଶଙ୍କର ବାବୁ ସେହିଭଳି ଗମ୍ଭୀର ହୋଇ ବସିଥାନ୍ତି । ସୁମିତ ଦେବୀ ସ୍ୱାମୀଙ୍କ ଆଡ଼କୁ ପୁଣି ଥରେ ଚାହିଁଲେ । ଜହ୍ନ ଆଲୁଅରେ ମୁହଁଟି ତାଙ୍କର ଆହୁରି କଅଁଳ··· ଅନ୍ଧାର ପିଲାଳିଆ ଦିଶୁଛି । ଠିକ୍ ତାଙ୍କର ବଡ଼ ପୁଅଟିର ମୁହଁ ଭଳି ।

ଭୁଲ୍ କାମଟିଏ କରିଦେଇ ଧରା ପଡ଼ିଗଲେ ବଡ ପୁଅ ଟିପୁ ଠିକ୍ ଏମିତ ଦୋଷୀ ଭଳି ମଉନ ହୋଇ ବସିଯିବ । "ହଁ" ନାହିଁ କି "ଚୁଁ" ନାହିଁ ।

ଅବିକଳ ବାପ ଭଳିଆ । ପୁଅ ବି ଅବିକଳ ଏଇ ବାପ ଭଳିଆ ।

ସୁମିତ ଦେବୀଙ୍କ ଚିତ୍ତ ଭିତରେ ସ୍ୱାମୀଙ୍କ ପ୍ରତି ବାତ୍ସଲ୍ୟ ମମତା ଜାଗିଉଠିଲା ।

ସତେ କି ଶାନ୍ତଶିଷ୍ଟ ପୁଅଟି ! ଦୁଷ୍ଟ ପିଲାଙ୍କ ସାଙ୍ଗରେ ପଡ଼ି ଭୁଲ କାମଟିଏ କରି ପକାଇଥିଲା । ସେ ଯୋଗୁ ବହୁତ ହେଗେସାର ପୁଣି ମାଆ କୋଳକୁ ଧୀର ଶାନ୍ତ ଭାବେ ଫେରିଆସିଛି !

ଆରାମଚୌକିର ବାଡ ଉପରୁ ସ୍ୱାମୀଙ୍କ ଆଡ଼କୁ ପ୍ରାୟ ଆଉଜିପଡ଼ି ତାଙ୍କର ମୁଣ୍ଡକୁ କୋଳ ଆଡ଼କୁ ଟାଣିଆଣି ସେ ବେଶ୍ ବାତ୍ସଲ୍ୟ ମମତା ବିହ୍ୱଳ କଣ୍ଠରେ କହିଲେ –

କିପରି ଲାଗୁଛି ? ଭଲ ଲାଗୁଛି ନା ?

ହଁ , ଖୁବ୍ ଭଲ ଲାଗୁଛି । ବିଶେଷ କିଛି ତ ହୋଇ ନାହିଁ ।

ସୁମାନ୍ତି ଦେବୀ ସ୍ୱାମୀଙ୍କୁ ପ୍ରାୟ ଆଲିଙ୍ଗନ କଲି ଭଳି ଧରି ଘରି ନରମ ଗଳାରେ ଗେହ୍ଲେଇ ହୋଇ କହିଲେ—

ମୁଁ ଗୋଟେ ଜିନିଷ ମାଗିବି ଦେବ ନା ?

କଅଣ ?

କୁହ ଆଗ "ହଁ"—ସତ୍ୟ କର ।

କ'ଣ ? କଥା କ'ଣ କହ ।

ଏଥର ମୋ ପାଇଁ ସବୁଦିନେ ବଜାରରୁ ଷୁରି ପଇସାର ଫୁଲ ଆଣିବ କିଣିକରି । ମୁଁ ପିନ୍ଧିବି ମୁଣ୍ଡରେ । ଆଜି କେଇଟା ଦିନ ମୁଣ୍ଡରେ ଏଇ ବାଳ କେତିକ ରହିବ ଯେ !

ରମାଶଙ୍କର ବାବୁ ସ୍ତ୍ରୀଙ୍କ ଆଡ଼କୁ ଚାହିଁଲେ । ଏଇ ସୁନ୍ଦର ଜହ୍ନର କଅଁଳ ଆଲୁଅରେ ସୁମାନ୍ତି କେତେ କଅଁଳ ଦିଶୁଛି ! ସତେ ଯେମିତି ତାଙ୍କର ବୋକୀ ଆଜି ଗେହ୍ଲୀ ଝିଅଟି ! ସେ ଠିକ୍ ଏମିତି ଅଝଟ ସୁର୍‌ରେ ଆବଦାର୍ କରେ ଗେହ୍ଲେଇ ହୋଇ—

ବାଃ ! ମଦ'ନ୍ତ ବାବୁଙ୍କ ଝିଅ ପ୍ରତିମା ଯେମିତି ଗୋଟାଏ ନାଲି ରିବନ୍ ପିନ୍ଧିଛି, ମୋ ପାଇଁ ସେମିତି ଗୋଟାଏ ରିବନ୍ ଆଣିବ । ମୁଁ ବେଣୀ ବାନ୍ଧିବି ।

ତୁ କୋଉଠି ରିବନ୍ ଦେଇ ବେଣୀ ବାନ୍ଧିବୁ ଲୋ ବୋକୀ ଝିଅ ! ତୋ ମୁଣ୍ଡରେ ବାଳ କାହିଁ ?

ତାଙ୍କର ଜାମା ବୋତାମକୁ ଫିଟାଇ ଫିଟାଇ ସେ ଆହୁରି ଅଝଟ ହୋଇ କହେ ଦୃଢ଼ ସ୍ୱରରେ—

ହଁ ଅଁ—ମୁଁ ପିନ୍ଧିବି !

ସୁମାନ୍ତିର କଣ୍ଠ ଠିକ୍ ସେମିତି ଶୁଭୁଛି । ଅବିକଳ ସେଇମିତି ଅଝଟ ଆବଦାର୍‌ର ସୁର ।

ସୁମାନ୍ତି ଦେବୀ ପୁଣି ଥରେ ସ୍ୱାମୀଙ୍କ ଉପରେ ଆଉଜାଇ ଗେହ୍ଲେଇ ହୋଇ ଆନୁନାସିକ ସ୍ୱରରେ ଲମ୍ୱେଇ କରି କହିଲେ—

କଅଣ କହୁଛ, ଆଣିବ ନା ନାଇଁ ? ଏଥର ସବୁଦିନେ ଘରପଇସାର ଫୁଲ ମୋ ପାଇଁ ନ ଆଣିଲେ ମୁଁ କଥା କହିବି ନାହିଁ ଜାଣିଥା ।

ରମଣଙ୍କର ବାବୁ ମଧ୍ୟ ବାତ୍ସଲ୍ୟବହ୍ୱଳତାରେ ହସିଉଠିଲେ । ଆଜ ସ୍ତ୍ରୀଙ୍କର ଦୁଇ ଗାଲ ଦୁଇ ହାତରେ ଦୁଇ ଥର ଟାଣିକରି ଲମ୍ବେଇ ଦେଇ କହିଲେ—

ଫୁଲ କେଉଁଠି ପିନ୍ଧିବୁ ଲୋ ବୋକୀ ଝିଅ !

ସୁମିତ୍ର ଦେବୀ ସେହିପରି ସ୍ୱାମୀଙ୍କ ଗୁଣ୍ଡରେ ଆଉଜିରହି ଆନୁନାସିକ କଣ୍ଠରେ କାନ୍ଦ କାନ୍ଦ ହୋଇ ଜିଦ୍‌କରି କହିଲେ—

ହଁଅଁ—ମୁଁ ପିନ୍ଧିବି ।

ତା'ପରେ ତାଙ୍କର କାନକୁ ମୋଡ଼ି ରମଣଙ୍କର ବାବୁ ହସି ହସି କହିଲେ – ଦୁର୍—ବୋକୀ ଝିଅଟା ! !



# ଅନନ୍ୟ ରୂପ - ରୂପାନ୍ତର

ନାଃ – ସେ ସବୁ ସକାଳମାନ ଆଉ ମିଳିବ ନାହିଁ । ସେହିସବୁ 'ମଙ୍ଗଳେ ଅଇଲା ଉଷା'ମାନେ – ସେହିସବୁ 'ଚକିତ—ଚାରୁହାସିନୀ' ଉଷାମାନେ– ସେହିସବୁ ଅରୁଣ କଷାୟବାସ ପରିହିତା, କୁସୁମକାନ୍ତ ସମୁଜ୍ଜଳା, ପୂତ ସୌରଭ ବିଚ୍ଛୁରିତା, ଆଶା, ବିଶ୍ୱାସ ଓ ପ୍ରେମପ୍ରଦାୟିନୀ ଯୋଗେଶ୍ୱରୀ ଉଷା ମାନଙ୍କ ସଙ୍ଗେ ଆଉ ଏ ଜୀବନରେ ଦେଖା ନ ହୋଇ ବି ପାରେ । ସେହିସବୁ କୋଇଲି, କଜଳପାତି, ହଳଦୀବସନ୍ତ, ବୁଲ୍‌ବୁଲ୍ ଓ କୁମ୍ଭାଟୁଆମାନଙ୍କ କଳକାକଳିରେ ଗୀତିମୁଖର ଉଷାମାନଙ୍କର ପଦଧ୍ୱନି ଆଉ ଏ ପୀଡ଼ିତ କର୍ଣ୍ଣକୁହରକୁ ନନ୍ଦିତ କରିବ ନାହିଁ । ସେହିସବୁ ପ୍ରାଣପ୍ରଦାୟିନୀ ଉଷାମାନେ ଆଜି ଚିରଦିନ ଲାଗି ଅନ୍ତର୍ହିତା ।

ଏହିଭଳି ଏକ ଶୋଚନାଗ୍ରସ୍ତ ହୃଦୟରେ ଡ଼: ଗୋକୁଳାନନ୍ଦ ପଣ୍ଡାଏ ସେଦିନ ପ୍ରାତଃ ଭ୍ରମଣରେ ଚାଲିଥିଲେ । ଶାରଦୀୟ ପ୍ରଭାତର ସୂର୍ଯ୍ୟ ତଥାପି ଉଦିତ ହୋଇ ନ ଥାନ୍ତି । ମାତ୍ର ଆଉ ବେଶୀକ୍ଷଣ ନାହିଁ । ସବୁଦିନ ଭଳି ନଗର ଆଗ ପୋଲଟା ପାଖେ ପହଞ୍ଚିଲାବେଳକୁ ତାଙ୍କ ଉପରେ ବାଳସୂର୍ଯ୍ୟଙ୍କର ପହିଲି କିରଣ ବର୍ଷିତ ହେବ । ମାତ୍ର ଡକ୍ଟର ଗୋକୁଳାନନ୍ଦଙ୍କର ମନ ପ୍ରତିଦିନର ସକାଳ ଭଳି ଆଜି ମଧ୍ୟ ଖୁବ୍ ବିକ୍ଷୋଭ ଉଠୁଥିଲା ।

ଛି-ଛି-ଛି । ଏକାଳର ଏହିସବୁ ଉତ୍ପୀଡ଼ିତ ବିଭତ୍ସ ସକାଳମାନ— ଯେତେବେଳେ ଅନ୍ତରାତ୍ମା ଚିତ୍କାର କରିଉଠେ – 'ଏଇ ଶରତର ସକାଳ ଉଖାରି ଦେଲି । ସୂର୍ଯ୍ୟ ବୁକୁରେ ପାଉଁଶ ହୋଇଛୁ ଜମା' – । ଏହିସବୁ ଶ୍ୱାସରୋଧକାରୀ ଅଙ୍ଗାରକାମ୍ଳାଚ୍ଛନ୍ନ ସକାଳମାନ—ବ୍ୟସ୍ତ ବିବ୍ରତ ଅନେକ-ସଂଶୟରୁଦ୍ଧ ନଗରପଲ୍ଲୀର ସକାଳମାନ – ଯେତେବେଳେ କେନାଲ ପାଣିରେ ଭାସିଉଠେ ମଲା ଶିଶୁର ମାଛଖିଆ ଶେଥା ଗଳିତ ଶବଟାଏ – ଏଠି ସେଠି ମଲା ମୂଷା ଓ ଚେପଟା ଭାବେ ରାସ୍ତାକାଡ଼ ମେଲାଇ ମରିପଡ଼ିଥିବା ବେଙ୍ଗ —ପୁଣି ଗାଡ଼ିତଳେ ଚାପାପଡ଼ି ଅନ୍ତବୁଜୁଳା ବାହାରି ପଡ଼ିଥିବା ସେହିସବୁ

କଭକାମୁଣ୍ଡ ମର ପଡ଼ିଥିବା ଅର୍ଦ୍ଧମୃତ କୁକୁରଗୁଡ଼ିଏ – ପୁଣି ସକାଳର ସେହିସବୁ ସମ୍ବାଦବହନକାରୀ ଖବରକାଗଜଗୁଡ଼ାକ ଯେଉଁମାନେ ପ୍ରତି ସକାଳରେ ପ୍ରଚାର କରନ୍ତି ମନୁଷ୍ୟକୃତ ଯାବତୀୟ ଅକୀର୍ତ୍ତିକର ଘଟଣାସବୁ – କେଉଁ ନରାଧମ ପୁତ୍ରୁରର କଣ୍ଠସ୍ଥ ସ୍କେଟରେ କେଉଁ ହତଭାଗ୍ୟ ଝିଅର ପ୍ରାଣଗଲା – କେଉଁ ଶାଶୁର ଚକ୍ରାନ୍ତରେ କେଉଁ ବୋହୂ ମାରିଦେଲା— କେଉଁଠି ଦୁର୍ବୃତ୍ତ ଯୁବକମାନଙ୍କର ପାଶବିକ ଅତ୍ୟାଚାର ଫଳରେ ଗର୍ଭବତୀ ନାରୀଟିର ଶୋଚନୀୟ ମୃତ୍ୟୁ - କେଉଁ ମନ୍ଦିର ଭିତରୁ ଚନ୍ଦନର କେଉଁ ଓଜନର ପିତଳ ଦୁର୍ଗା ମୂର୍ତ୍ତି ଚୋରି—କିମ୍ବା ସେହିସବୁ କ୍ଲୁ ଆସେମ୍ବ୍ଲର ଟାଉଟର ଚକ୍ରାନ୍ତର ରାଜନୀତିବାଲାଙ୍କର ଘନଘନ ଦଳବଦଳ ଓ ମାତ୍ର ମାସକର ଗୋଟିଏ ଶିଶୁ-ସରକାରର ପତନ, ମୂର୍ଚ୍ଛା ଓ ମୃତ୍ୟୁର ସମ୍ବାଦମାନ ।

ଇସ୍ । ଡାଃ ଗୋକୁଳାନନ୍ଦଙ୍କୁ ସକାଳର ବାୟୁ ମଧ୍ୟ ପ୍ରଶ୍ୱାସରେ ଶୋଷଣ କରିବାକୁ କଷ୍ଟକର ବୋଧ ହେଲା । ନାଃ—ଏମାନେ ସମସ୍ତେ ସୁନ୍ଦର, ସତେଜ, ପ୍ରାଣଦାୟିନୀ ସେହିସବୁ ପ୍ରାଚୀନ ସକାଳମାନଙ୍କର ହନ୍ତାକ । ଏମାନେ ସମସ୍ତେ ସେହି ପବିତ୍ରଦେହା କଲ୍ୟାଣୀ ଉଷାମାନଙ୍କର ସମ୍ଭ୍ରମ ଅପହରଣକାରୀ !

ଆହା ! କେଡ଼େ ସୁନ୍ଦର ଥିଲା ସେହିସବୁ ସକାଳ । ଠିକ୍ ପାହାନ୍ତା ସାଢ଼େ ଚାରିଟାରେ ଉଠିପଡ଼ନ୍ତି ଡାଃ ଗୋକୁଳାନନ୍ଦ । ଷ୍ଟୋଭ୍ ଲଗାଇ କଫି କରନ୍ତି । ପିଲାମାନେ ଓ ପତ୍ନୀ ଶୋଇଥାନ୍ତି ଗହନ ନିଦରେ । କଫି ଖାଇସାରି ନିତ୍ୟକର୍ମ ସାରି ସେ କିଛି ସମୟ ବିଷ୍ଣୁ ସହସ୍ର ନାମ, ଶିବ ଓ ଦୁର୍ଗା ସ୍ତୁତି ଭଜନ କରନ୍ତି । ତାପରେ ସାଢ଼େ ପାଞ୍ଚଟା ବାଜିଲା ମାତ୍ରେ ସେ ବାଡ଼ିଟି ହାତରେ ଧରି ପ୍ରାତଃଭ୍ରମଣରେ ବାହାରି ପଡ଼ନ୍ତି । ବାହାରକୁ ଯିବା ପୂର୍ବରୁ ସେ ପ୍ରଥମେ କିଛି ସମୟ ଆପଣା ବଗିଚା ଭିତରେ ବୁଲନ୍ତି । ନିଜ ହାତରେ ଲଗାଇଥିବା ଗଛମାନଙ୍କୁ ସ୍ପର୍ଶ କରନ୍ତି । ସେମାନଙ୍କ ଡାଳପତ୍ରକୁ ସାଉଁଳନ୍ତି ଓ ମିଠାବାଣୀରେ ଗେହ୍ଲା କରନ୍ତି । ଆଗୋ ମୁଚକୁନ୍ଦ ! ଗୋଲାପବଧୂଗୋ ! ଆଗୋ ହେନାରାଣୀ ! ଚମ୍ପକଲତା ଆଗୋ ! ସୁକର୍ତ୍ତିତ ଗମ୍ବୁଜାକୃତି କାମିନୀଗଛ ଓ କ୍ରୋଟନ୍ ଗଛଗୁଡ଼ିକୁ ଆଲିଙ୍ଗନ କରିସାରି ସେ ଯାନ୍ତି ତାଙ୍କର ସବୁଠାରୁ ଆଦରର ଫୁଲଗଛଟି

ପର୍ଯ୍ୟାପ୍ତ-ପୁଷ୍ପ-ସ୍ତବକବନମ୍ରା ରକ୍ତକରବୀ ପାଖକୁ । ଗୋକୁଳାନନ୍ଦ ସମସ୍ତଙ୍କୁ କହିଛନ୍ତି ଯେ ସେ ଏହି ସୁନ୍ଦରୀ ରକ୍ତକରବୀର ଗଛକୁ ଉପାଡ଼ କରି ନ ଥିଲେ ବି ସେ ତାଙ୍କର ପରକୀୟାବଧୂ ସୋହାଗିନୀପ୍ରିୟା । ତା' ସଙ୍ଗେ ତାଙ୍କର ପ୍ରୀତି ଗୋପନୀୟ ଓ ଯୁଗଯୁଗାନ୍ତରର । ସତକୁସତ ଗୋକୁଳାନନ୍ଦ କରବୀ ଲତାଟିକୁ ମୁଗ୍ଧ ପ୍ରଣୟସିକ୍ତ ଦୃଷ୍ଟିରେ କିଛି ସମୟ ଚାହିଁ ରହନ୍ତି ଓ କେତେବେଳେ କୋଉ ଛଳକରେ ତାକୁ ଚୁମ୍ବନଟିଏ ଦେଇ ସେ ଫାଟକ ଫିଟାଇ ଘରୁ ବାହାରିଯାନ୍ତି । ସେତେବେଳେ ବଗିଚାକୁ ବିଭିନ୍ନ ଋତୁରେ ବହୁ ଚଢ଼େଇ ମଧ୍ୟ ଆସୁଥିଲେ । ଗେଡ଼ ନଡ଼ିଆ ଗଛମାନଙ୍କରେ ବାଇଚଢ଼େଇମାନେ ବସା ଓହଳାଇ କିଚିରିମିଚିରି ହେଉଥିବେ । କନିଅର, ଖିଷ୍ଟକୋଳୀ, ଗୋଲାପଜାମୁ, ଜାମୁରୋଳ ଓ ଫମ୍ପାକୋଳି ଗଛମାନଙ୍କ ଉପରେ ବସି କୂଜନ କରୁଥିବେ କେତେ ବୁଲ୍‌ବୁଲ୍‌, ଶୁଆ ଶାରୀ, ହଳଦୀବସନ୍ତ ଓ ଭଦଭଦଳିଆ । ସବୁ ଫୁଲଗଛର ସନ୍ଧିରେ ପଶି ଫୁଲମାନଙ୍କରୁ ମହୁ ଶୋଷି ଉନ୍ମତ୍ତ ହୋଇ ଚଳୁଥିବେ ଫୁଲଚୁଇଁମାନେ । କଲମୀ ଆମ୍ବଗଛ ସନ୍ଧି ଡାଳରେ ବସି ବୋବେଇ ଲାଗିଥିବେ କୋଇଲିମାନେ, ଘୋର ବୃଶଠାବେଳକୁ କାହାକୁ ଖତେଇ ହେବା ଭଳି ଢଙ୍ଗରେ ।

ଭଲ ଥିଲା—ଭାରି ଭଲ ଥିଲା ସେହିସବୁ ସକାଳମାନ । କିନ୍ତୁ କଣ ଏପରି ହେଲା ଆଜିକାଲି ? ଆଜିର ଏହି ସକାଳରେ ସେହି ସତେଜ ଶୀତଳତା କୁଆଡ଼େ ଗଲା ? ସେହି ଉଦ୍ବୁଦ୍ଧଦାୟିନୀ ପ୍ରାଣ ପ୍ରାଚୁର୍ଯ୍ୟ କୁଆଡ଼େ ଗଲା ? ନିଦରୁ ଉଠିଲା ମାତ୍ରେ ତାଙ୍କର ମନେ ହେଉଥିଲା ପ୍ରତିଟି ସକାଳ ସତେକି ସୁବାସିତ ନୀଳବର୍ଣ୍ଣର ଲଫାପାରେ ଭର୍ତ୍ତି କେଉଁ କଳ୍ପଲୋକବାସିନୀ ଅଜଣା ମାନସୀଟିର ଖଣ୍ଡିଏ ରହସ୍ୟପୂର୍ଣ୍ଣ ପ୍ରେମପତ୍ର ! ସେ କେବଳ ସେହି ଖାମଟିକୁ ଖୋଲି ଚିଠିଟି ବାହାର କରି ମନେମନେ ପଢ଼ି ଚାଲୁଥିଲେ । ପ୍ରକୃତରେ ବି ସେହିସବୁ ସକାଳ ଥିଲା ସେହିଭଳି ରୋମାଣ୍ଟିକ ଇଙ୍ଗିତରେ ଚମତ୍କାର । ମାତ୍ର ଏବେ ପ୍ରତିଟି ସକାଳ ସତେକି ଫଉଜଦାରୀ କୋର୍ଟରୁ ଜାରି ହୋଇଥିବା ଗୋଟାଏ ଗୋଟାଏ ୱାରେଣ୍ଟ ! ଏତିରେ ବିଛଣା ଉପରୁ ଉଠି ସେ ଶୋଇବା ଘରର ଝରକା ଆରପଟେ ଯାହାକୁ ଦେଖନ୍ତି, ସେ ସତେକି ଗୋଟିଏ ଭୀଷଣ ସ୍ନାୟୁ ବିଦୀର୍ଣ୍ଣକାରୀ ଷଡ଼ଯନ୍ତ୍ରର ଗୁପ୍ତ ଖବର ଦେଇ ଚାଲିଯାଏ ।

ଭଃ—ଡା: ଗୋକୁଳାନନ୍ଦ ବାବୁ ଭାବନ୍ତେ—ନାଃ ଆଜ ମିଳିବ ନାହିଁ—ମିଳିବ ନାହିଁ ସେହିସବୁ ସ୍ୱର୍ଗୀୟ ସକାଳମାନଙ୍କର ପ୍ରାଣବନ୍ତ ସ୍ପର୍ଶ ।......

ସେ ଦିନ ସେ ବାଡ଼ିଟି ଧରି ଚାଲୁକା ଚପଲ ଚଳକି ପିନ୍ଧି ଘର ଭିତରୁ ପଦାକୁ ବାହାରିବା ମାତ୍ରେ ଏହିଭଳି ଏକ ତୀବ୍ର ଦୁଃସହ ପ୍ରତି-କ୍ରିୟାରେ ଭାବନ୍ତେ—ନାଃ ! ଆଜ ଏଣିକି ପ୍ରାତଃଭ୍ରମଣ ଅନାବଶ୍ୟକ । ଧୂଆଁ ଆଉ ଧୂଳି ଭେଦକରି ପ୍ରଭାତ ସୂର୍ଯ୍ୟଙ୍କର ଅଲଟ୍ରାଭାଇଓଲେଟ ରଶ୍ମୀ ବା ବିଶୁଦ୍ଧ ଅମ୍ଳଜାନ ଆଜ ସେ ଉପଭୋଗ କରିପାରିବେ ନାହିଁ ।

ବହୁଦିନ ଧରି ସେ ଏ ସହରଠାରୁ ଦୂରେଇଥିଲେ । କେବଳ ସ୍ଥାନଗତ ଦୂରତ୍ୱ ନୁହେଁ—ଗତ କେତେବର୍ଷ ଧରି ଏକ ବିଶେଷ ରାସାୟନିକ ଗବେଷଣା ସଂକ୍ରାନ୍ତରେ ସେ ନିଜ ଦେଶରୁ ଦୂରରେ ରହିଥିଲେ । ଏହି କେତୋଟି ବର୍ଷ ସେ କେବଳ ନିଜର ଗବେଷଣାର ତତ୍ତ୍ୱଟି ଉପରେ, ତାକୁ ପ୍ରତିଷ୍ଠିତ କରିବା ଲାଗି ତଥ୍ୟଗୁଡ଼ିକ ଉପରେ, ମନର ଅଭିନିବେଶ ରଖିଥିଲେ । କିନ୍ତୁ ଗୋଟାଏ ବଡ଼ କାର୍ଯ୍ୟକରି ଯିବାର ନିଶାରେ—ବଡ଼ ମଣିଷ ହେବାର ଉଚ୍ଚାଭିଳାଷରେ, ଯୁଗଯୁଗକୁ କୀର୍ତ୍ତି ରଖିଯିବାର ଅଭିପ୍ରାୟରେ ସେ ବିଜ୍ଞାନାଗାର ମଧ୍ୟରେ ବୁଡ଼ି ଯାଇଥିଲେ । ଇତିମଧ୍ୟରେ ବହୁ ନବୀନ ଗବେଷକମାନଙ୍କୁ ସେ ପଥ ପ୍ରଦର୍ଶନ କରିଛନ୍ତି । ବହୁ ଗୁଞ୍ଜଳିକର ନୂତନ ତତ୍ତ୍ୱମାନ ଆବିଷ୍କାର କରି ଦେଶ ବିଦେଶରେ ସୁନାମଧନ୍ୟ ହୋଇଛନ୍ତି । ସେ ମଧ୍ୟ ଭାବି ନ ଥିଲେ ଯେ—କର୍ମକ୍ଷେତ୍ରରୁ ଅବସର ନେଲାପରେ ମଧ୍ୟ ତାଙ୍କୁ ପୁଣି ପାଞ୍ଚବର୍ଷ କାଳ ଦୂର ଦେଶରେ ଏକ ରାସାୟନିକ ଗବେଷଣାଗାରରେ ଦିଗ୍‌ଦର୍ଶକ ଭାବେ କାର୍ଯ୍ୟ କରିବାକୁ ପଡ଼ିବ । ଆଜ ତାଙ୍କର ଛୁଟି । ଚିରଦିନ ଲାଗି ଛୁଟି । ଆଜ ଅବସର ବହୁତ—ଜୀବନଟାକୁ ଅନୁଭବ କରିବାକୁ । ଆପଣାର କୀର୍ତ୍ତି ସ୍ତୂପ ଉପରେ ବସି ଚତୁର୍ଦ୍ଦିଗକୁ ସ୍ନେହସ୍ନିଗ୍ଧ ଦୃଷ୍ଟିରେ ଗର୍ବି ମନେ ମନେ କୃତ୍ୟକୃତ୍ୟ ହେବାକୁ ଅବସର ବହୁତ ବର୍ତ୍ତମାନ ।

କିନ୍ତୁ ନାଃ । ଅସମ୍ଭବ । ମନେ ହେଉଛି ସବୁ ଯେପରି ବୃଥା ! ସବୁ ଯେପରି ନିଷ୍ଫଳ—ରସହୀନ । ଜୀବନଯାକ କେବଳ ତପଶ୍ଚର୍ଯ୍ୟା !

ତାଙ୍କର ସ୍ୱସ୍ପୃନକ ଗବେଷଣା ଫଳରେ ସେ ପ୍ରଚୁର ବିତ୍ତ ଅର୍ଥ, ଖ୍ୟାତି ଓ ପଦବୀ ପାଇଛନ୍ତି – ମାତ୍ର ସତ୍ରେକ ପୃଥିବୀର ବା ଦେଶର ଏବଂ ତାଙ୍କ ନିଜର ତଦ୍ୱାରା ବିଶେଷ କିଛି ଉପକାର ହୋଇନାହିଁ । ପୃଥିବୀ ବରଂ ଆଗ ଅପେକ୍ଷା ବେଶୀ ଦୁଃସ୍ଥ—ବେଶୀ ପ୍ରାଣହୀନ ! ଲୋକେ ପୂର୍ବାପେକ୍ଷା ଖୁବ୍ ଚତୁର ହୋଇଛନ୍ତି —ନିଜର ଦାବୀ ଉପରେ ସଚେତନ ହୋଇଛନ୍ତି— ନିଜର ଆତ୍ମସମ୍ମାନ ଉପରେ ବହୁତ ସ୍ପର୍ଶକାତର ହୋଇଛନ୍ତି – ମାତ୍ର ତା ଫଳରେ ସମାଜକୁ ବିଶେଷ କିଛି ଭବିଷ୍ୟତ ଲାଗି ପ୍ରତିଶ୍ରୁତି ମିଳିନାହିଁ । ଲୋକେ ଯାହା ଖୋଜୁଛନ୍ତି ତାହା ସେମାନଙ୍କୁ ମିଳୁନାହିଁ । କାରଣ ପ୍ରତ୍ୟେକେ ପ୍ରତ୍ୟକର କାମ୍ୟବସ୍ତୁକୁ ଅପହରଣ କରି ଛୁଟିଛନ୍ତି । ସେ ନିଜେ ମଧ୍ୟ ସେହି ଅସନ୍ତୁଷ୍ଟ ଧାବମାନ ଗୋଷ୍ଠୀରୁ ଜଣେ ।

ଏହି ପାଞ୍ଚବର୍ଷ ଭିତରେ ସତେ ସବୁ ଯେପରି ଭାଙ୍ଗି ଭୁଙ୍ଗି ଛିନ୍ନଛତର ହୋଇଗଲାଣି । ଏହି ଭଙ୍ଗା ଭୁଙ୍ଗି ଦଉଡ଼ା ଦଉଡ଼ି ଭିତରେ ସତେ ଯେପରି ସେ ଖୁବ୍ ଏକୁଟିଆ । ତାଙ୍କର ପରିବାର ଭିତରେ ସ୍ତ୍ରୀଙ୍କ ବ୍ୟତୀତ ଆଉ କେହି ନାହାନ୍ତି । ଦୁଇଟି ଝିଅ କେଉଁକାଳୁ ବିବାହ କରି ଯେଝା ସଂସାର ପାତି ରହିଲେଣି । ତିନିପୁଅଙ୍କ ଭିତରୁ ବଡ଼ପୁଅ ଅଛି ଗ୍ରାମରେ କୃଷିକାର୍ଯ୍ୟର ଦାୟିତ୍ୱରେ । ତାର ପିଲାପିଲି ମଧ୍ୟ ସେଇଠି । ତା ସଙ୍ଗେ କୌଣସି ପ୍ରକାର ସଂପର୍କ ବର୍ତ୍ତମାନ ନାହିଁ ଗୋକୁଳାନନ୍ଦଙ୍କର । ମଝିଆଁ ପୁଅ ଅଛି ପଞ୍ଜାବରେ । ସାନପୁଅଟି ମଧ୍ୟ ଆଜିକୁ ପାଞ୍ଚବର୍ଷଧରି ଆମେରିକାରେ । ଚିଠିପତ୍ର ବି ଦିଏ ନା । ଶୁଣାଯାଏ ସେ ସେଠି ବିବାହ କରି ବସବାସ କରି ରହିଲାଣି । ଆଉ ଫେରିବ ମଧ୍ୟ ନାହିଁ । ଏ ଦେଶକୁ ତାର ପ୍ରଚଣ୍ଡ ଘୃଣା ।

ସ୍ତ୍ରୀଙ୍କର ଅଣ୍ଟୁ ଗଣ୍ଠି ବାତ । ସେ ବିଛଣାରୁ ଉଠିପାରୁ ନାହାନ୍ତି । ଶଯ୍ୟାରେ ଅଛନ୍ତି । ତ ଛଡ଼ା ବି ସ୍ତ୍ରୀଙ୍କ ସଙ୍ଗେ ତାଙ୍କର ମୂଳରୁ ଭାବାତ୍ମକ ସଂପର୍କ ନାହିଁ । ତାଙ୍କ ଜୀବନର ସମସ୍ତ ସାଧନା ଓ ପ୍ରଚେଷ୍ଟା ପଛରେ ସ୍ତ୍ରୀଙ୍କର କୌଣସି ପ୍ରକାର ପ୍ରେରଣା ତ ନ ଥିଲା – ଏପରିକି ଆନ୍ତରିକ ସମର୍ଥନ ମଧ୍ୟ ନ ଥିଲା । ସ୍ତ୍ରୀ ଭିନ୍ନ ଜଗତର ମଣିଷ । କିନ୍ତୁ ତା ମାନେ ନୁହେଁ ଯେ ସ୍ତ୍ରୀ ଖୁବ୍ ବସ୍ତୁବାଦୀ ଓ ପରିବାର କେନ୍ଦ୍ରିକ । ବରଂ ପରିବାର

ସଙ୍ଗେ ତାଙ୍କର କୌଣସି ସଂପର୍କ ନ ଥାଏ । ବିବାହବନ୍ଧନଠାରୁ ଗୋକୁଳାନନ୍ଦଙ୍କର ଆଶଙ୍କା ହୋଇଛି ଏତେକ ତାଙ୍କୁ ବିବାହ କରି ତାଙ୍କ ସ୍ତ୍ରୀ ସୁଖୀ ହୋଇ ପାରିନାହାନ୍ତି । ମହା ଅଭିମାନୀ ଆତ୍ମମୁଖୀ ବ୍ୟକ୍ତିତ୍ୱ ତାଙ୍କର । ତେଣୁ ବିବାହ ବନ୍ଧନଠାରୁ ସେ ଗୋକୁଳାନନ୍ଦଙ୍କୁ ଯେପରି ତାଙ୍କ ହୃଦୟର ପ୍ରେମ ଦେଇ ନାହାନ୍ତି – ତାଙ୍କଠାରୁ ମଧ୍ୟ ସେହିପରି ପ୍ରେମ ଦାବୀ କରି ନାହାନ୍ତି । ନିଜକୁ ନେଇ ନିଜେ ଥାନ୍ତି ସେ । ସବୁବେଳେ ସଂସାର ପ୍ରତି ଅବିଶ୍ୱାସ, ଅନାସ୍ଥା, ବିରକ୍ତି, ଅସନ୍ତୋଷ ଓ ଘୃଣା ତାଙ୍କର ମୁହଁକୁ ଆବୃତ କରି ରଖିଥାଏ । କଥା କହନ୍ତି ଖୁବ୍ କମ୍ । ଆଗକୁ ଯାଅ ବୋଲି କହନ୍ତି ନାହିଁ – କି ଆଗରେ ଠିଆହୋଇ ବାଧା ବି ଦିଅନ୍ତି ନାହିଁ । ଗୋକୁଳାନନ୍ଦ ସ୍ତ୍ରୀଙ୍କୁ ଘୃଣା କରନ୍ତି ନାହିଁ । ମାତ୍ର ସ୍ତ୍ରୀ ପ୍ରତି ତାଙ୍କର ହୃଦୟ କେବେ ପ୍ରେମ ପ୍ରବଣ ହୋଇନାହିଁ ।

ଠିକ୍ ଅଛି । ଏମିତି ଏମିତି ସମୟ ତ କଟିଗଲାଣି । ଆଉ ବା କେତେଦିନ ? ଦ୍ୱିତୀୟ ଥର ଅବସରଗ୍ରହଣ ପରେ ଭାବିଥିଲେ – ସମୟ କାଟିବେ ସାମାଜିକ କାର୍ଯ୍ୟରେ – ସାହିତ୍ୟ-ଧର୍ମ ଓ ଦର୍ଶନାଦି ବ୍ୟାପାରରେ ଏବଂ ଅବଶିଷ୍ଟ ସମୟ ସେ ପ୍ରକୃତି କୋଳରେ ହିଁ ଆଶ୍ରୟ ନେବେ ।

କିନ୍ତୁ·······ଏ ସହରକୁ ଆସିଲାଦିନୁ ସେ ଅଣନିଃଶ୍ୱାସୀ ହୋଇ ଉଠିଲେଣି । ଏଠି କୌଣସି ସାମାଜିକ ସଂସ୍ଥା ବା କାର୍ଯ୍ୟ ତାଙ୍କୁ ଅପେକ୍ଷା କରିନାହିଁ । ତାଙ୍କର ଆବଶ୍ୟକତା ଥିଲା ଭଳି ମଧ୍ୟ ଏ ସହରରେ କେହି ଆଉ ଅନୁଭବ କରୁ ନାହାନ୍ତି । କ୍ଷମତା ଓ ତାର ସୂତ୍ରରେ ଧନ ଉପାର୍ଜ୍ଜନ କରିବାର ଏକମାତ୍ର ପନ୍ଥା ଯେ ରାଜନୀତି – ତାହା ଏକ ବିଷଧର ସର୍ପ ଭଳି ସବୁ ଅନୁଷ୍ଠାନକୁ ମଧ୍ୟ ଗୁଡ଼େଇ ପୁଡ଼େଇ ଧରି ନେଇଛି । ଆଉ ତାର ପିଷ୍ଟକାରୀ କୁଣ୍ଡଳୀ ଭିତରୁ ଏ ସମାଜର ମୁକ୍ତି ନାହିଁ । ସ୍ୱାର୍ଥପରତା, ମିଥ୍ୟା, ଛଳନାରେ ଭରି ଉଠିଛି ଏ ସହରର ପରିବେଶ ।

ଆଉ ପ୍ରକୃତି ! ଏଠି ପ୍ରକୃତି କାହିଁ ? ଦୁଇ ଦୁଇଟା ନଦୀ ଏ ସହରର ଦୁଇ ପାର୍ଶ୍ୱରେ ବହିଯାଉଛି । ଅଣ୍ଟା ସୂତାଭଳି କେନାଲଟିଏ ସହରର ମଝିରେ ଲମ୍ବି ଯାଇଛି । ମାତ୍ର କି ବିସ୍ମୟ ! ଏଇସବୁ ନଦୀ ଆଉ କେନାଲର ତଟଭୂମି । ସେଠି ବସିବା ତ ଦୂରର କଥା – ବୁଲି ମଧ୍ୟ

ହେବ ନାହିଁ । ନଗ୍ନ ଖାଟରେ ଖାଟରେ ଆବର୍ଜ୍ଜନାମୟ ବସ୍ତି – ରୁଗ୍‌ଣ ଦୁର୍ବଳ ଦରିଦ୍ର ଅଜ୍ଞାନ ବହୁ ସନ୍ତାନବତୀ ଅପରିଚ୍ଛନ୍ନା ସ୍ତ୍ରୀ ଲୋକମାନେ । ଅନାହାର ବୁଭୁକ୍ଷ ଶିଶୁଗଣ । ଖୋଲାଜାଗା ମାନେଇ ମନୁଷ୍ୟପୁରୀଷରେ ପରିପୂର୍ଣ୍ଣ । ପଚାମାଛ-ଦାରଶୁଖା ଶୁଖୁଆ—କଟାଛେଳି ଓ ମେଣ୍ଢାମାନଙ୍କର ଅନ୍ତବୁଜୁଳା ଇତ୍ୟ-କିଏ ଏ ଦେଶକୁ ଉଦ୍ଧାର କରିବ ? କିଏ ଏଇ ଅର୍ଷିତ ସହର-ଟିର ମା' ବାପ ? ଭାଇ ? କକା ? ମାମୁଁ ? ମଉସା ? ଶିକ୍ଷକ ? ନେତା ? ଚିକିତ୍ସକ ? କେହି ନାହିଁ—କେହି ନାହିଁ । ସମଗ୍ର ସହରଟି ସତେକି ମଳପୂର୍ଣ୍ଣ ଗୋଟାଏ କୁଣ୍ଡ । ତାରି ଭିତରେ ସାଲୁବାଲୁ ହୋଇ ଘାଣ୍ଟି ହେଉଛନ୍ତି ଏ ସହରର ସାନଠାରୁ ବଡ଼ ଯାଏ ପ୍ରତିଟି ମଣିଷ । ତା' ଭିତରୁ ବାହାରି ଯିବାର କ୍ଷମତା ସତେକି କାହାର ଆଜି ନାହିଁ । ସେ ଇଚ୍ଛା ମଧ୍ୟ ମରିଗଲାଣି ସଭିଙ୍କ ମନରୁ ।

ଅଥଚ ଏଇ ନଈକୂଳର ଘରମାନଙ୍କର ଆମ୍ବ ବଗିଚାରେ ପୂର୍ବେ କେତେ ଫୁଲ ଫୁଟୁ ନଥିଲା ? ପ୍ରତିଟି ଋତୁର ସକାଳରେ ଭରି ରହୁଥିଲା ସେହି ଋତୁଟିର ନାଭିକେନ୍ଦ୍ରରୁ ଉଦ୍‌ଗତ ଫୁଲମାନଙ୍କର ସୌରଭ । କିନ୍ତୁ କାହିଁ ? ତଥାପି ଜୀବନ୍ତ କେତୋଟି କାଁ ଭାଁ ଗଛ ସତେକି ଏବେ ଅପୁଷ୍ପିତା ହୋଇଗଲେଣି ! ପ୍ରତିଟି ଋତୁର ସକାଳ କୁହୁଳିତ ହୋଇ ଉଠୁଥିଲା ସେହି ଋତୁର ନାଭି-କେନ୍ଦ୍ରରୁ ଉଦଭୂତ ହରେକ ଧ୍ୱନିର କଳ କାକଳିରେ । କିନ୍ତୁ କଣ ହେଲା ? ସତେକି ଏ ସହରରୁ ସବୁ ଚଢ଼େଇ ଉଡ଼ିଗଲେଣି ! କମ୍ବା ଅବଶିଷ୍ଟ ଯେଉଁ ଚଢ଼େଇମାନେ ଏ ଯାବତ ଏଠି ଅଛନ୍ତି—ସେମାନେ କେବଳ ଥଣ୍ଟ ବୁଜି ବସିଛନ୍ତି ବା ଆତଯାତ ହେଉଛନ୍ତି ! କିଏ ଯେପରି ସେମାନଙ୍କୁ ଚିରଦିନ ଲାଗି ମୂକକରି ଦେଇଛି !

କିଏ କରିଛି ? କାହାର ପ୍ରତାପରେ ଏ ସହର ଏପରି ପ୍ରକୃତିଛଡ଼ା ହୋଇ ଉଠିଲା ? କିଏସେ ଏଠୁ ବୃକ୍ଷଲତାଙ୍କୁ ଉପାଡ଼ି ଦେଲା ? କିଏ ସେ ଦୁର୍ବୃତ୍ତ ବୃକ୍ଷଲତାମାନଙ୍କରୁ ଫୁଲମାନ ଛଡ଼ାଇ ନେଲା ? କିଏ ସେ ତସ୍କର ଅପହରଣ କରିନେଲା ଫୁଲମାନଙ୍କଠାରୁ ସୁବାସ ? ଚଢ଼େଇମାନଙ୍କର ତଣ୍ଟି ଚିପିଧରିଲା କିଏ ସେହି ନରାଧମ ନିର୍ମମ ବ୍ୟାଧ ?

ଡା: ଗୋକୁଳାନନ୍ଦ କିଛି କୂଳକିନାରା ପାଇଲେ ନାହିଁ । କ୍ରୋଧ ଓ ନୈରାଶ୍ୟରେ ବାଡ଼ିଟିକୁ ଭୂମି ଉପରେ କଚୁଡ଼ି କଚୁଡ଼ି ସେ ନଈକୂଳର ରାସ୍ତାରେ ଖୁବ୍ ଜୋରରେ ଚାଲିବାକୁ ଲାଗିଲେ । କିଏ ସେ ? କିଏ ସେ ସୌନ୍ଦର୍ଯ୍ୟର ଶତ୍ରୁ ? ଜ୍ଞାନର ଶତ୍ରୁ ? ଉଦ୍ୟମର ଶତ୍ରୁ ? କିଏ ସେ ?

ଗୋଟିଏ ଅଚିହ୍ନିଆ କାଉ ହଠାତ୍ କୁଆଡ଼ୁ କା କା ହୋଇ ତାଙ୍କ କାନପାଖେ ଘଷିହୋଇ ସେଇ ଉଚ୍ଚତାରେ ଲେଂଟଣି ମାରିଦେଇ ଆଗକୁ ଉଡ଼ି ଚାଲିଗଲା । ନିକଟସ୍ଥ ଧୂମାୟମାନ ନାରକୀପୂ ଗୃହା କେତନରୁ ଠିକ୍ ସେତିକିବେଳେ ଗୋଟାଏ ରୁମଛଡ଼ାରୂଗ୍ଣ କୁକୁର ପିଠିରେ କିଏ ଗୋଟାଏ ମସ୍ତ ପାହାର ବସାଇଦେଲା । ପ୍ରାଣ ବିକଳରେ କେଁକେଁ ହୋଇ ଅଧାମରା ଅଧାଜିଆଁ ସେହି କୁକୁରଟା ତାଙ୍କ ଦେହରେ ପ୍ରାୟ ଘଷିହୋଇ କଡ଼ପଟକୁ ଆତଙ୍କରେ ଦଉଡ଼ିଗଲା । କିଏ ଯେପରି ତାଙ୍କ ଭିତରେ କହି-ଉଠିଲା — ଜଣେ ନୁହେଁ ଗୋକୁଳାନନ୍ଦ ! ଜଣେ ନୁହେଁ । ସମସ୍ତେ — ସମଗ୍ର ସହରର ଲୋକ — ସମଗ୍ର ଦେଶର ଲୋକ ଏଥିପାଇଁ ଦାୟୀ । ପାରିବ ତୁମେ କିଛି କରି ? ନେଇପାରିବ ଏହାର ଦାୟିତ୍ୱ ? କିଞ୍ଚିତ ପରିମାଣରେ କାମ ଆରମ୍ଭ କରିପାରିବ ?

ଡା: ଗୋକୁଳାନନ୍ଦ ନିଜଉପରେ ଚିଡ଼ିଗଲେ । ନା — ସେ ଆଉକିଛି କରିପାରିବେ ନାହିଁ — ସମାଜ ପାଇଁ ସେ ଦୀର୍ଘ ଚାଳିଶିବର୍ଷ ଧରି ବହୁତ କରିଛନ୍ତି ; ସେ ଆଉକିଛି କରିପାରିବେ ନାହିଁ । କେବଳ ଏମିତି ଚିଡ଼ିବେ — ବିରକ୍ତ ହେବେ — ସମସ୍ତଙ୍କୁ ଅଭିସଂପାତ ଦେବେ । ଭୂଇଁଉପରେ ବାଡ଼ି ଡ଼ିଅ ମାରି ମାରି ଜୀବନ ଉପରେ — ସମାଜ ଉପରେ —ନିଜ ଉପରେ ନିରାଶବାଦୀ ପ୍ରତିଶୋଧ ନେବେ । ମରିବା ପୂର୍ବରୁ ସେ ସବୁଥିରେ ଅସନ୍ତୁଷ୍ଟ ହେବେ । ସମସ୍ତଙ୍କୁ ଗାଳିଦେବେ । କାହାକୁ ପରୁଆ କରିବେ ନାହିଁ । କିଛି ଆଉ କରିବେ ନାହିଁ । ଖାଲି ଅସନ୍ତୋଷ ପ୍ରକାଶ କରିବେ । ରଗିବେ — ଶୋଧିବେ — ନିରାଶ ହେବେ । ଭୂଇଁକି ବାଡ଼ିରେ ଡିଅ ମାରିବେ ।

ନିରାଶ ହେବେ—କାରଣ ସେହିସବୁ ସ୍ୱର୍ଣ୍ଣ-ପ୍ରଭ ସକାଳମାନ ଆଉ ଆସିବେ ନାହିଁ । ଏ ସହରକୁ ଏକ ମାରାତ୍ମକ ଅକାଳବାର୍ଦ୍ଧକ୍ୟ

ଘୋଟି ବସିଲାଣି । କିଏ ଯେପରି କେଉଁ ଅଦୃଶ୍ୟ ସ୍ଥାନରେ ବସିଥିବ ଏମାନଙ୍କ ଅଜାଣତରେ ଗୋଟାଏ ଅଦୃଶ୍ୟ କୁହାନଳୀ ଦେଇ ଶୋଷି-ନେଉଛି ଏମାନଙ୍କର ସମସ୍ତ ପ୍ରାଣଶକ୍ତି ! ଏମାନେ କେବଳ ଏଣିକି ସାଲୁବାଲୁ ହେବେ । ଆପଣା ଆପଣା ଉପରେ ଚଢ଼ି ଆଗକୁ ମାଡ଼ିପିବାର ପ୍ରୟାସରେ ଅପରକୁ ସେଇ ମଇଳା କୁଣ୍ଡରେ ବୁଡ଼ାଇ ଅବଶେଷରେ ନିଜେ ମଧ୍ୟ ତହିଁରେ ବୁଡ଼ିମରିବେ – ସାଲୁବାଲୁ ନାଙ୍ଗୁଡ଼ା ପୋକଙ୍କ ଭଳି । ଏମାନେ କେବଳ ନିର୍ବାଚନରେ ମାତିବେ – ଦଳ ଗଢ଼ିବେ—ଦଳ ଭାଙ୍ଗିବେ । କଳାବଜାର କଳାପୋତେଇ, ସାଧାରଣ ପାଣ୍ଠି ଆତ୍ମସାତ୍ ଇତ୍ୟାଦିରେ ମାତି ପରସ୍ପର ମଧ୍ୟରେ ହଣାହଣି ହୋଇ ମରିବେ ।

ମରନ୍ତୁ ସେମାନେ ! ମରନ୍ତୁ ! ତାଙ୍କର କି ଯାଏ ? ସେ ବହୁତ କରିଛନ୍ତି ! ଆଉ ନୁହେଁ ହେ । ଏଣିକି ଯେ ହେଉ – ସେ ଆଗକୁ ଆସୁ – ଆଗ ମୋଠାରୁ ପାଇବ ଶୋଧା ଅପମାନ – ତାଚ୍ଛଲ୍ୟ । ଆଜି ସମସ୍ତଙ୍କୁ ଫୁର୍କି ଫୁସ୍ କରି ଉଡ଼ାଇଦେବାର ଗୋଟାଏ ଅଟ୍ଟହାସ ! ଆସୁ କିଏ ଆସୁଛି ମୋ ଆଗକୁ । ମୁଖ୍ୟମନ୍ତ୍ରୀ ଦୁଆରେ ଯାଇ ଠିଆହେବ – କହିବ – କିରେ ଶ୍ୱେର ? ବିରୋଧୀଦଳ ନେତାର ଦୁଆରେ ଠିଆହୋଇ କହିବ – କିରେ ତସ୍କର ! ଅଧ୍ୟାପକର କ୍ଲାସରେ ଯାଇ ପଶିଯିବ – କହିବ – କିରେ ମୂର୍ଖ ? ଡାକ୍ତର ଦୁଆରେ ଠିଆହୋଇ କହିବ – କିରେ ଡାକୁ ! ପୋଲିସ୍ ଦୁଆରେ ଠିଆହେବ – କହିବ – କିରେ ଠଗ ! ଜଜ୍ ଦୁଆରେ ଠିଆହୋଇ ଡାକିବ—ଆରେ ଅନ୍ଧା ! ଓକିଲପାଖେ ପହଞ୍ଚି କହିବ – କିବେ ମୂଳୁଦା ? ଖବରକାଗଜବାଲା ପାଖେ ପହଞ୍ଚି କହିବ – କିରେ ଟାଉଟର ?

କହିବ – କହିବ – କହିବ । ଛାଡ଼ିବ ନାହିଁ । ଆଜି ଛାଡ଼ିବ ନାହିଁ କାହାକୁ । ମନଯାଏ ସଭିଙ୍କି ଶୋଧିବ ମନଇଚ୍ଛା; ତା'ପରେ ଯାଇ ଛାଡ଼ିବ । ଆରେ ମୋର କିଏ କଣ କରିବ ନା କରିଛି ! ନା ମୁଁ ଏ ଦୁନିଆଁ ପାଇଁ କିଛି କମ୍ କରିଛି ? କହିବ – ଛାଡ଼ିବ ନାହିଁ – ଉହରେ ପାପିଷ୍ଠମାନେ :

ଆପଣା ମନର ଉତ୍ତେଜନାରେ ଡା: ଗୋକୁଳାନନ୍ଦ ପ୍ରାୟ ଦୁଇ କିଲୋମିଟର ରାସ୍ତା ଘର ପାଖୁ ଚାଲି ଆସିଲେଣି । ଅସଲ କଥା – ଗୋଟେ

ଦଳ—ଏହି ଅବସରପ୍ରାପ୍ତ ବୁଢ଼ାଙ୍କ ଦଳ—ନିର୍ଥକ, ନିଃସ୍ୱାର୍ଥପର ବୁଢ଼ାମାନଙ୍କର ଗୋଟିଏ ଦଳ ! ଖାଲି ଶୋଷିବେ—ଶୋଷିବେ ମନଇଚ୍ଛା । କିନ୍ତୁ କାହାନ୍ତି ବୁଢ଼ାମାନେ ? ଏ ସହରର ତ ତାଙ୍କ ଭଳି ପରିଣତ ବୃଦ୍ଧ ବ୍ୟକ୍ତିଟିଏ ଦ୍ୱିତୀୟ ଆଜି କାହିଁ ମିଳୁନାହିଁ ! କ'ଣ ହୋଇଛି ! କୁଆଡ଼େ ଗଲେ ବୁଢ଼ାମାନେ ! ସବୁ ବୁଢ଼ାଙ୍କୁ କ'ଣ ଏ ସହରର ଟୋକାମାନେ ଘରେ ଜାଲ ପକାଇ ବନ୍ଦୀ କରି ରଖିଛନ୍ତି : ନା' ବୁଢ଼ାମାନେ ମଧ୍ୟ ଏହି ଶ୍ୱେର ଖଣ୍ଡମାନଙ୍କ ସଙ୍ଗେ ମିଶି ପୁଣି ଥରେ ଏହି ରକ୍ତ ମାଂସହୀନ କଙ୍କାଳଟାକୁ ରେକେଟିବା ଲାଗି ନକଲି ଦାନ୍ତ ଲଗାଇବାରେ—ଧଳା ବାଳକୁ କଳା କରିବାରେ—ହର୍‌ମୋନ୍ ଟିକାହାରେ—ବା ଆଉ କୋଉ ଗ୍ଲୁକଷ ବାକସରେ ପୁଣି ଡ଼ିଙ୍ଗ କରିବାର ବାଳଲୀଳାରେ ମାତି ଯାଇଛନ୍ତି ? କ'ଣ ହୋଇଛି ପ୍ରକୃତରେ ?

ଭଗବଳପୁମାନ ଫର୍ଗ ହୋଇଗଲେଣି । ମାତ୍ର ତଥାପି ନିତି ଆରପଟ ପୂର୍ବଦିଗରେ ସୂର୍ଯ୍ୟ ତାଙ୍କର ସେହି ଆଶା-ସମୁଜ୍ଜ୍ୱଳ ଅରୁଣିତ ମୁଖମଣ୍ଡଳ ଦେଖାଉ ନାହାନ୍ତି । ସମ୍ଭବତଃ ସୂର୍ଯ୍ୟ ଚନ୍ଦ୍ରଙ୍କୁ ମଧ୍ୟ ଏମାନେ ବନ୍ଦୀ କରିଦେଲେଣି କୋଉ ପାତାଳପୁରୀରେ । ଆଉ ଛାଡ଼ିବେ ନାହିଁ ପଦାକୁ । ଠିକ୍ ଅଛି — ମରନ୍ତୁ ସେମାନେ — ମରନ୍ତୁ । ଘୋଟି ଆସୁ ଘମାଘୋଟ ଅନ୍ଧାର ।

ଅବଶେଷରେ ଗୋକୁଳାନନ୍ଦ ନଈକୂଳର ଗୋଟିଏ ସିମେଣ୍ଟବେଞ୍ଚ ଉପରେ ଯାଇ ବସିଲେ । ବାଡ଼ିଟିକୁ ବେଞ୍ଚର ହାତଉପରେ ଡେରିଦେଇ ସେ ପୁଣି ଅଡ଼ୁଆରେ ପଡ଼ିଲେ । ବର୍ତ୍ତମାନ କେଉଁଆଡ଼କୁ ମୁହଁ କରି ସେ ବସିବେ ! ନଈଆଡ଼କୁ-ନା-ଏଇ ଝଲମଲ ସହରଟା ଆଡ଼କୁ : ନଈରେ ଅଳ୍ପଦିନ ତଳୁ ଭଗ୍ନବନ୍ୟା ଥିଲା । ବର୍ତ୍ତମାନ ବି ନଈ ସମ୍ପୂର୍ଣ୍ଣ ବନ୍ୟାମୁକ୍ତ ନୁହେଁ । ମଝିରେ ଠାଏ ଠାଏ ବାଲିଚଡ଼ା ଦେଖାଯାଉଛି । ବିସ୍ତୀର୍ଣ୍ଣପ୍ରସ୍ଥ ସର୍ପିଳ ନଈଟିର ଅପରପାର୍ଶ୍ୱରେ ଗଛବୃକ୍ଷ ଘେରା ଗାଁମାନ । ନଈର ବଡ଼ ପୋଲ ଉପରେ କାହିଁ ଗୋଟାଏ ଗୋଟାଏ ସାବଗନ୍ତ ଅନାଗ୍ରା ଟ୍ରକ ବା ବସ୍ ଘଡ଼ ଘଡ଼ ହୋଇ ପଳାଇ ଯାଉଛନ୍ତି । କୁଆମାନେ ଏଣୁ ତେଣିକି, ତେଣୁ ଏଣିକି ଉଡ଼ୁଛନ୍ତି । ଗାଁମାନଙ୍କରୁ ଗଛଲତା ଭେଦି ଧୂଆଁ ଉଠୁଛି । କେହି ବାଉଙ୍ଗରେ, କେହି ମୁଣ୍ଡରେ ମୁଣ୍ଡେଇ, କେହି ବା ସାଇକେଲରେ ଲଦି,

ପରିବା ସବୁ ବୋଝ ଆଣୁଛନ୍ତି । ଏଇ ସହର ଆଜ ସେଗୁଡ଼ାକୁ ସିଝାଇ ଖାଇଯିବ ! ଜଣେ ହଜଣ ମିଆଁ ଗୁଡ଼ାଏ ଛେଳି ଅଡେଇ ଅଡ଼େଇ ସହର ଭିତରକୁ ପଶୁଛନ୍ତି । ଏ ସହର ଏଗୁଡ଼ାଙ୍କୁ ଆଜ ହାଣି ଖାଇଯିବ । କିନ୍ତୁ ସେପଟେ ପାଚିଲା ନେଳୀ କୁହୁଡ଼ିରେ ଘେରା ସୁଦୂର ହରିବଲ୍ଲପୁ ମେଲି-ଯାଇଛି । ବରଂ ସେଇଆଡ଼କୁ ମୁହଁରଖି ସେ ଉଦୟ-ଉନ୍ମୁଖ ବାଳସୂର୍ଯ୍ୟଙ୍କୁ ପ୍ରଥମେ ଅଭିବାଦନ ଜଣାଇବେ । ସହରକୁ ପଛକରି ବସିବେ ସେ । ରାଗରେ ହତାଶାରେ, ବିରକ୍ତିରେ, ଘୃଣାରେ ଅଭିମାନରେ, ସେ ସହରକୁ ପଛକରି ବସିବେ । ଏ ସହରଟାର ତାଙ୍କ ଲାଗି ଆଉକିଛି ଆକର୍ଷଣ ନାହିଁ । ଏହି ବିଷାକ୍ତ-ସହର ତାର କୋଇଲାଧୂଆଁ ନିଃଶ୍ୱାସରେ ତାର ଆବର୍ଜନା କୁଣ୍ଡରେ ପଡ଼ି ଆଣ୍ଟୁପାଣ୍ଟୁ ହେଉଥାଉ । ତାଙ୍କର କ ଯାଏ ଆସେ ? ମରନ୍ତୁ ସେମାନେ ନର୍ଦ୍ଦମାରେ—କଳାବଜାରରେ—ପରସ୍ପରକୁ ମାଡ଼ମୁଣ୍ଡ ମାଡ଼ମାରି ମରନ୍ତୁ ।

ଗୋକୁଳାନନ୍ଦ ହରିବଲ୍ଲପୁରେ, ନିଜର ଦୃଷ୍ଟିକୁ ହଜାଇଦେଲେ ଓ ଅଳ୍ପ ମୁହୂର୍ତ୍ତ ଭିତରେ ନିଜେ ହଜିଗଲେ ।...

ମାତ୍ର ବେଶୀ ସମୟ ସେ ପରିତ୍ୟକ୍ତ ସହରଟାକୁ ପଛ କରି ବସି ପାରିଲେ ନାହିଁ । କିଏ ଯେପରି ତାଙ୍କ ପଛପଟେ ଠିଆ ହୋଇ ତାଙ୍କୁ ଡାକୁଛି !

ବାବୁ !

ପ୍ରଥମେ ତାଙ୍କୁ ଲାଗିଲା – ବହୁପୂର୍ବରୁ ପରଲୋକଗତା ତାଙ୍କ ମା'ର ଅନ୍ତରଙ୍ଗ କଣ୍ଠସ୍ୱର ଭଳି । ସେ ଚମକି ପଡ଼ିଲେ । ମାତ୍ର ଭୟରେ ପଛ ଆଡ଼କୁ ମୁହଁ ଫେରାଇ ପାରିଲେ ନାହିଁ । କଣ୍ଠସ୍ୱରଟି ଆହୁରି ଜୋର୍ ଓ ସ୍ପଷ୍ଟ ହୋଇ ଉଠିଲା ।

ବାବୁ !

କିଏ ?

ଚହ୍ନି ପାରୁନ ?

କଏ ? ଗୋକୁଳାନନ୍ଦ ଚାଟକା ହୋଇ ଗୃହିଁଦେଲେ—ଏ କଏ ? ସୁକୁମାରୀ ?

ସୁକୁମାରୀ ?

ହଁ ବାବୁ ! ଚହ୍ନିପାଇଲ ?

ଗୋକୁଳାନନ୍ଦ ସତେକ ଅଭିଭୂତ ହୋଇଯାଇଥିଲେ । ଫେର ଥରେ ବଡବଡ ଆଖିରେ ଗୃହିଁ ପଗ୍ଚରିଲେ –

ସୁକୁମାରୀ ନା ତୁ ?

ଏଥର ସ୍ତ୍ରୀ ଲୋକଟି ହସିଲା । ଖିଲଖିଲ ହୋଇ ହସିଲା । ଏଥର ଗୋକୁଳାନନ୍ଦଙ୍କର ଅଭିଭୂତ କଟିଗଲା । ସେ ପ୍ରକୃତସ୍ଥ ହୋଇ ସ୍ତ୍ରୀ ଲୋକଟି ଆଡ଼କୁ ଗୃହିଁଲେ । ପ୍ରାୟ ତାଙ୍କର ସମବୟସ୍କା । ମାତ୍ର ସୁକୁମାରୀ ବୟସର ବଶ୍ୟତା ସ୍ୱୀକାର କରିନାହିଁ । ମୁଣ୍ଡବାଳ ଗ୍ରେଟ କରିଦେଇଛି । ଷ୍ଟୁଲ ଝିଅମାନଙ୍କ ଭଳି ଖୁବ୍ ସୁନ୍ଦର ଆଉ ପରିଚ୍ଛନ୍ନ ଭାବେ କୁଣ୍ଡାଇଛି ବାବୁରୀ ବାଳତକ । ଶ୍ୟାମଳ ବର୍ଣ୍ଣ । ମାତ୍ର ପିନ୍ଧିଛି ଖଣ୍ଡିଏ ଧଳା ନାଲିଫୁଲ ଛପା ଝରକିତ ସଫା ଶାଢ଼ୀ । ନାକରେ ପୂର୍ବପରି ସୁନାର ଫୁଲଟିଏ । ଦୁଇ ଆଖିରେ କଜଳ ଲଗାଇଛି ଆଗେ ଯେପରି ଲଗାଉଥିଲା । ଦୁଇ କାନରେ ଦୁଇଟି କାନଫୁଲ । ସୁକୁମାରୀ ପୂର୍ବ ପରି ସତେଜ ଆଉ ପରିଛନ୍ନ । ପାନ ଖଣ୍ଡିଏ ଖାଇଛି । ଓଠ ଆଉ ପାଟିରୁ ନାଲି ନାଲି ହସ ଛୁଟିକି ପଡ଼ୁଛି । ଗୋକୁଳାନନ୍ଦଙ୍କର ସବୁ ବିରକ୍ତି ଆଉ ଅବସାଦ କୁଆଡ଼େ ଉଭେଇଗଲା । ସେ ତାକୁ ମୁଗ୍‌ଧ ଦୃଷ୍ଟିରେ ଗୃହିଁ ପୁଣି ଥରେ ପଗ୍ଚରିଲେ –

ସୁକୁମାରୀ ନା ତୁ ?

ମଲା ! କେତେ ଗ୍ରେପରି ହଉଚମ ?

କାଲେ ତୋର କଣ ବୟସ କମିଯାଇଛି କି ?

ମଲ ! ବୁଢ଼ା ହେଲଣି । ଆଖିରୁ ଡାହାଣାପଣ ଏବେ ବ କଟିନି ନାହିଁ ? ସୁକୁମାରୀ ଏତକ କହି ଆହୁରି ଫୁଲିଉଠିଲ—ଆହୁରି ନାଲି ଦିଶିଲ । ଗୋକୁଳାନନ୍ଦ ଏ ପର୍ଯ୍ୟନ୍ତ ଆଉ ଗୋଟିଏ କଥା ଦେଖି ନ ଥିଲେ । ଆଖିରେ ପଡ଼ିଥିଲା ଅବଶ୍ୟ – ମାତ୍ର ତାକୁ ନଜର କରିନଥିଲେ । ସୁକୁମାରୀ ଗୋଟିଏ ବାଉଁଶ ଝାଡ଼ରେ ଟାଙ୍ଗିଛି କେତେଗୁଡ଼ାଏ ନାଲି ନେଳୀ ହଳଦିଆ ରବର ଜିନିଷ । ସେଗୁଡ଼ିକୁ ନିରୀକ୍ଷଣ କଲା ମାତ୍ରେଇ ସେ ବୁଝିଗଲେ—ରବର ବେଲୁନ୍‌ରେ ତିଆରି ନାଥବା ନାଥିବା ହୃଷ୍ଟପୁଷ୍ଟ କାଥିଲୁ ମାଥିଲୁ ଖୁସ୍‌ମୁସ୍‌ ଚଢ଼େଇଗୁଡ଼ାଏ । ରଙ୍ଗୀନ କାଗଜରେ ଥଣ୍ଟ, ଆଖି, ପର ଆଉ ପୁଚ୍ଛ ତିଆରି ହୋଇଛି । ବେଲୁନ୍‌ ଚଢ଼େଇଙ୍କ ବେକରେ ସୂତା ବନ୍ଧା ହୋଇ ବାଉଁଶ ଝାଡ଼ରୁ ସେମାନଙ୍କୁ ଓହଳାଇ ଦେଇଛି । ଧୀର ପବନରେ ସେମାନେ ହଲି ଦୋହଲି ଉଡ଼ୁଛନ୍ତି । ସତେକି ମାନେ ରଙ୍ଗ ବେରଙ୍ଗର ମଣିଷ-ତିଆରି ଚଢ଼େଇ ଏକାଠି ଗୋଟିଏ ଜାଗାରେ ଉଡ଼ି ଉଡ଼ି ଆପଣା ଭିତରେ କଚର ମିଚର ଖେଳ ଖେଳୁଛନ୍ତି ! ଡା: ଗୋକୁଳାନନ୍ଦ ସୁକୁମାରୀ ସହିତ ଏହି ବିଚିତ୍ର ଚଢ଼େଇମାନଙ୍କୁ ଦେଖି ସହସା ଉଚ୍ଛାଟିତ ହୋଇପଡ଼ିଲେ ।

ତୁ ଏ ସବୁ ଏତେ ସଜାଡ଼ି ନେଇ କୁଆଡ଼େ ବାହାରିଛୁ ?

ମା' ଗୋ ! ମୋର ଆଉ କାମ କଣ କି ? ରାତି ସାରା ଚଢ଼େଇ-ଗୁଡ଼ିକ ତିଆରି କରି ଝାଡ଼ରେ ଟଙ୍ଗାଇ ଦେଇଥାଏ । ବଡ଼ ଭୋରରୁ ଉଠି ବେଶଭୂଷା ହୋଇ ଝାଡ଼ଟି ଧରି ବାହାରେ ଯେ ସାଇ ସାଇ ବୁଲି ଫେରି ଘରକୁ ଫେରେ ବାରବଜେ ।

ସବୁ ଚଢ଼େଇ ବିକ୍ରୀ ହୋଇଯାଏ ?

ହଁ—ଦିନେ ଦିନେ କେତୋଟା ବଳିପଡ଼େ । ଏଇଥିରେ କଣ ମୁଁ ଚଳୁଛି ? ମୋର କଣ ତମ ଦରମାରୁ ଖାଇବା ଅଭାବ ନା ପିନ୍ଧିବା ଅଭାବ ? ଗୋଟାଏ ତ ବୋଲି ପେଟ ! ଏ କାମ କରିବାକୁ ଖୁସୀ ଲାଗେ । ଚଢ଼େଇ ତିଆରି କରିବା ଗୋଟାଏ ନିଶା ବାବୁ । ପାଞ୍ଚ ବର୍ଷ ହେଲଣି ମତେ ଏ ନିଶା ଲାଗିଛି । ଚଢ଼େଇ ଦେଖିଲେ ପିଲାଏ ଲୋଭାନ୍ତି । ସବୁ ଇସ୍କୁଲ ପାଖରେ

ଯାଇ ଠିଆ ହେବ । ଆଜ ଶନିବାର ନା ! ଘେରିପିବେ ମୋ ଗୃହକତ୍ତେ । ବଡ଼ୀ ଖାଲି ନାଁକୁ ମ ! କେଇଟା ମାଗଣା ନେଇଯାଆନ୍ତି । କେଇଟା ଦେଖି ଦେଖି ଫଟେଇ ଦିଅନ୍ତି । କନ୍ତୁ ଭାରି ଖୁସୀ କାମ ବାବୁ ! ପିଲାଏ ଯେତେବେଳେ ଏ ଝୁଡ଼ିକୁ ଘେରିପିବେ ନା—ମୁଁ ବାରିପାରେ ନାହିଁ — ଏ ଚଡ଼େଇମାନେ ପିଲା ନା ସେ ପିଲାମାନେ ଚଢ଼େଇ ! ସବୁ ଏକାକାର ଦିଶନ୍ତି ବାବୁ । ସବୁ ଏକାକାର ହୋଇଯାନ୍ତି । ଏତିକରେ ପେଟ ପୂରିଯାଏ ଗୋ !

ଡାଃ ଗୋକୁଳାନନ୍ଦ ମୁଗ୍‌ଧ ବିଭୋର ଓ ସମ୍ମୋହିତ ହୋଇ ଶୁଣୁଥାନ୍ତି— ଦେଖୁଥାନ୍ତି । ସୁକୁମାରୀ କହି ଚାଲିଥାଏ—

ଆଜ ଘରୁ ବାହାରିଲାବେଳକୁ ନଣ୍ଡଆଡ଼କୁ ଚାହିଁ ଦେଖେତ ତୁମେ ବସିଚ । ତୁମକୁ ଛାଡ଼ି ଚାଲିପିବାକୁ କାହିଁକି ମନ ବଳିଲା ନାହିଁ । ଭାବିଲି – ଯାଏଁ ଜୁହାର କରି ଆସେଁ । କୋଉଦିନୁ ଦେଖିନାହିଁମ ବାବୁ ! ମୁଁ ମରିଯାଏଁ ଟି ! ନେତ୍ର ମୋର ପବିତ୍ର ହେଲା ।

ଗୋକୁଳାନନ୍ଦ ବିହ୍ୱଳ କଣ୍ଠରେ କହିଲେ —

ଭଲ କଲୁ ଆସିଲୁ ସୁକୁମାରୀ ! ତୋତେ ଅନେକଦିନରୁ ଦେଖି ନାହିଁ ଲେ ! ତୋତେ ଆଜ ଦେଖି ପେଟ ପୂରି ଯାଉଛି । ତୋତେ ଜମା ଛାଡ଼ିବାକୁ ମନ ବଳୁନାହିଁ । କ'ଣ କରିବ କହିଲୁ ?

ମଲା ! ଏମିତି ଯଦି ମନ -- ଆସୁନ ଆଜ ସଞ୍ଜବେଳକୁ । ସେ ପରି ଏଇଠି ଅଛନ୍ତି ! ସେ କଣ ଆଉ ଏ ସହର ଛାଡ଼ି ଗଲେ କି ?

କିଏ ଲେ ?

ଆହା ହା ! ମରିଯାଉଁ ଥାଏଁ ଟି ! ସତେକି ଜମା ଜାଣିନ ? ନ ଜାଣି କରି ତା ହେଲେ ସକାଳୁ ଏଠି ଆସି ଘାଟ ଜଗି ବସିଛ ? ଭାରି ଚାଳାକ୍ ଲୋକ ତୁମେ । ତୁମକୁ ମୁଁ ଜାଣିନି ?

ଗୋକୁଳାନନ୍ଦ ବାବୁ ଏକ ମଧୁର ସତେଜ ପୁଲକରେ ପ୍ରଫୁଲ୍ଲିତ ହୋଇ ଉଠିଲେ । ମର୍ମନ୍ତୁଦ ବିସ୍ମରଣ ଭିତରୁ ଉଦ୍ଧାର ପାଇବାର ବ୍ୟାକୁଳତାରେ ସେ ସୁକୁମାରୀର ହାତ ଧରି ପକାଇ ବିନତି କଲେ –

ସୁକୁମାରୀ ଲୋ ! ତୋତେ ମୋ ରାଣ ! କହ – ତୁ କାହା କଥା କହୁଛୁ ? ମୋର ଜମା କିଛି ମନେ ପଡ଼ୁନାହିଁ ଲୋ ଆଜକାଲ ।

ସୁକୁମାରୀ ତାଙ୍କ ହାତମୁଠାରୁ ନିଜ ହାତକୁ ନ ଛଡ଼ାଇ କହିଲା –

କୃଷ୍ଣା ଦିଦି ମ ? ମଲା ! ପୁରୁଷ ଲୋକେ ଏତେ ଚଞ୍ଚଳ ଭୁଲିଯାନ୍ତି ନା ? କୃଷ୍ଣାଦିଦି ଡାକ୍ତରଖାନାରୁ ପେନ୍‌ସନ୍ ନେଲାଣି ତିନିବର୍ଷ ହେଲା । ଆଗେ ଯୋଉ ଘରେ ରହୁଥିଲା ସେଇଟା ଛାଡ଼ିଦେଲା । ହେଇ ରାସ୍ତା ଆରପଟେ ଯୋଉ ଛୋଟିଆ ଦୋମହଲା ଟାଇଲ ଘରଟା ଦିଶୁଛି – ସେଇଟାକୁ କିଣିଲା କୋଡ଼ିଏ ହଜାର ଟଙ୍କାରେ । ଅବ ସେଇଠି ରହୁଛି । ମୁଁ ଭାବିଲି – ତୁମେ ଜାଣି ଜାଣି ଏଠି ଆସି ବସିଛ ନା !

କୃଷ୍ଣା – କୃଷ୍ଣା – କୃଷ୍ଣା ଦିଦି—କୃଷ୍ଣା ଚୌଧୁରୀ । ଗୋକୁଳାନନ୍ଦ ବାବୁଙ୍କ ଅନ୍ତଃସ୍ଥଳର ଗଭୀରତାରୁ କିଏ ଗୋଟାଏ ଉଚ୍ଛ୍ୱାସମୟ ଢେଉ ଉପରକୁ ଉଠି ଆସିଲା । ଆଜକୁ ପ୍ରାୟ କୋଡ଼ିଏ ବର୍ଷ ହେବ ସେ କୃଷ୍ଣାଙ୍କୁ ଦେଖିନାହାନ୍ତି । ତା' କଥା ଭାବି ମଧ୍ୟ ନାହାନ୍ତି । କେବେ ମୁହୂର୍ତ୍ତେ ହେଲେ ବି ତାଙ୍କର ମନ ଆକାଶରେ ସେ ଜହ୍ନ ଉଠିନାହିଁ ଫାଇଁକିନା ଛୋଟ ଚନ୍ଦ୍ରଜହ୍ନଆଟିଏ ଭଳି । କେବେ ଥରେ ହେଲେ ବି ତାଙ୍କର ମନ ଆକାଶରେ ସେ ଉଡ଼ିଯାଇ ନାହିଁ ଛୋଟ ଫୁଲଚଢ଼େଇଟିଏ ଭଳି । ଥରେ ହେଲେ ବି ତାଙ୍କ ମନ ତଡ଼ାଗରେ ଢେଉଟିଏ ତୋଳିନାହିଁ ସେ ସାନ ମହୁରାଳୀ ମୀନଟିଏ ଭଳି । ଅଥଚ—କୃଷ୍ଣା—କୃଷ୍ଣା—ଏଇ କୃଷ୍ଣା ଚୌଧୁରୀ ତାଙ୍କୁ କଣ ବା ନ ଦେଇଥିଲା ? କୋଡ଼ିଏ ବର୍ଷ ତଳେ ସେ ଯାହା ଦେଇଥିଲା—ଯେତିକି ଦେଇଥିଲା—କିଏ ଭଲା ଆଜି ତାଙ୍କୁ ଏହି କୋଡ଼ିଏ ବର୍ଷ ଭିତରେ ସେଇଆ ଅବା ସେତିକି ଦେଇଛି ? କିଏ ଦେଇଛି ? ସ୍ତ୍ରୀ ? ପୁତ୍ର ? କନ୍ୟା ? ସମାଜ ? ରାଷ୍ଟ୍ର ? କେହି ନୁହେଁ—କେହି ନୁହେଁ । କି ଅକୁଣ୍ଠିତ ପ୍ରେମ-ମାଧୁର୍ଯ୍ୟରେ ପରିପୂର୍ଣ୍ଣା ଥିଲା ଏଇ କୃଷ୍ଣା ? ସମଗ୍ର ପାତ୍ର ନିଃଶେଷ କରି ସେ ଦେଉଥିଲା -- ମାତ୍ର ସଙ୍ଗେ ସଙ୍ଗେ ପରିପୂର୍ଣ୍ଣ ହୋଇ ଯାଉଥିଲା ତା'ର ପାତ୍ର । ଅକ୍ଷୟ ପ୍ରେମ-ଭଣ୍ଡାରର ଅଧିଷ୍ଠାତ୍ରୀ ଦେବୀ କୃଷ୍ଣା । ଏଇ କୃଷ୍ଣା ତାଙ୍କର ପ୍ରତିଷ୍ଠା—ପୂର୍ବ ଜୀବନକୁ କରି

ରଖିଥିଲା ଉତ୍ସାହ, ପ୍ରାଣୋଚ୍ଛଳ । ଏଇ କୃଷ୍ଣା ହିଁ ବୋଧହୁଏ ତାଙ୍କୁ ତାଙ୍କର ଅଜାଣତରେ ପ୍ରେରଣା ଦେଇ ଚାଲିଥିଲା ତାଙ୍କ ଜୀବନର ଅନ୍ତର୍ନିହିତ ସେହିସବୁ ବିଶେଷ ଶକ୍ତିମାନଙ୍କୁ ବିକଶିତ କରିବା ପାଇଁ । ବିନିମୟରେ କୃଷ୍ଣା କିଛି ଚାହିଁ ନ ଥିଲା । କାହାଠାରୁ ବି ସେ କିଛି ଚାହିଁ ନ ଥିଲା । କବି ବେଣୁ ରାଉତରାୟ, ଔପନ୍ୟାସିକ ଅଖିଳ ମହାନ୍ତି, ଚିତ୍ରକର ଶ୍ୟାମ ତ୍ରିପାଠୀ, ରାଜନୈତିକ ନେତା ସୀତାକାନ୍ତ ପଟ୍ଟନାୟକ, ଦାର୍ଶନିକ ସଦାନନ୍ଦ ରାୟ, ଐତିହାସିକ ମସିଉଲ୍ଲା ଖାଁ ସମସ୍ତେ ଆଜି ଏ ଦେଶର ବିଶିଷ୍ଟ ପ୍ରତିଷ୍ଠିତ ବ୍ୟକ୍ତି । ଅଥଚ ସମସ୍ତେ ଆଜି ଋଣୀ ସେହି ସେଦିନର କୃଷ୍ଣା ଚୌଧୁରୀ ପାଖରେ । ପ୍ରକୃତରେ କୃଷ୍ଣା ହିଁ ଥିଲା ପ୍ରେମିକ—ଆଉ ତାର ପ୍ରେମ-ରସକୁ ଆକଣ୍ଠ ପାନ କରି ଏମାନେ ଧନ୍ୟ ହୋଇଥିଲେ । ସମସ୍ତଙ୍କୁ ସେ ପ୍ରାଣଭରି ପ୍ରେମ ଦେଉଥିଲା—ଆହ୍ଲାଦ ଦେଉଥିଲା—ଉତ୍ସାହ ଦେଉଥିଲା—ପ୍ରେରଣା ଯୋଗାଉଥିଲା । ତାର ହୃଦୟରେ ଥିଲା ଏକ ସୃଜନକ୍ଷମ ଅଦ୍ଭୁତ ସ୍ୱପ୍ରେରଣାମୟୀ ପ୍ରେମ । ତାର ଗୃହପଟେ ଯେଉଁ ଉଚ୍ଚ "ଦେହି ଦେହି" ଡାକ ଶୁଭୁଥିବା ତାର ପ୍ରଣୟପ୍ରାର୍ଥୀମାନଙ୍କୁ ଦାନ ଦେବାରେ ସେ କେବେହେଲେ ବି ହାତର ଅନ୍ତର କରୁ ନ ଥିଲା । ସମସ୍ତଙ୍କ ଅଞ୍ଜଳି ପୂର୍ଣ୍ଣ କରି ଦେଉଥିଲା ସେ । ଅକୁଣ୍ଠିତା, ପ୍ରତିଦାନଗ୍ରହଣବିମୁଖା ମାଧୁର୍ଯ୍ୟମୟୀ କୃଷ୍ଣା ଚୌଧୁରୀ !

ଅଃ ! ! ଡା : ଗୋକୁଳାନନ୍ଦ ଛାତି ଭିତରେ ଏକ ମର୍ମନ୍ତୁଦ ବେଦନା ଅନୁଭବ କଲେ । ଆଜି ସେ ସମଗ୍ର ଦେଶରେ ଜଣେ ପ୍ରତିଷ୍ଠିତ ଗଣ୍ୟମାନ୍ୟ ବୈଜ୍ଞାନିକ । ତାଙ୍କ ବୈଜ୍ଞାନିକ ଅବଦାନରେ କୃତାର୍ଥ ଆଜି ସମଗ୍ର ଦେଶ ଉପକୃତ । ମାତ୍ର ସେହି ପ୍ରେମମାଧୁର୍ଯ୍ୟମୟୀ କୃଷ୍ଣା ଚୌଧୁରୀକୁ ସେ କଣ ବା ପ୍ରତିଦାନ ଦେଇଛନ୍ତି ? ସେହି ସ୍ୱର୍ଗର ଦେବୀ, କଳ୍ପଲୋକବାସିନୀ ରସମୟୀ ନାରୀଟିକୁ ଏହି କୋଡ଼ିଏବର୍ଷ ଧରି ସେ ମନେ ବି ରଖିନାହାନ୍ତି । ଏହି କୋଡ଼ିଏଟି ବର୍ଷ ସେ କେବଳ ଆପଣାର ଯଶ, ପୌରୁଷ ଓ ପ୍ରତିଷ୍ଠା ଅର୍ଜନରେ ନିଶାଗ୍ରସ୍ତ ହୋଇ ସବୁକିଛି ଭୁଲି ଯାଇଛନ୍ତି । ଏପରିକି କୃଷ୍ଣା ଚୌଧୁରୀକୁ ବି ? ଅଥଚ ପ୍ରତିଟି ସକାଳର ସେହି ଥିଲା ପ୍ରାଣପ୍ରଦାୟିନୀ ଅରୁଣାଲୋକ । ପ୍ରତିଟି ସଂଧ୍ୟାର ତାରା ଥିଲା ସିଏ– ପ୍ରତିଟି ରାତିର ଚନ୍ଦ୍ରମା । ସେ ଥିଲା ବର୍ଷାଋତୁର ମେଘ—ଶୀତ-

ଋତୁର ଶୀତ – ବସନ୍ତର ମଧୁ—ଆଉ ଶରତର ଶୁଭ୍ର ସତେଜ ସକାଳମାନ । ପ୍ରେମ-ସାମ୍ରାଜ୍ୟର ସାମ୍ରାଜ୍ଞୀ ସେ । ସିଂହାସନାରୂଢ଼ା ତାର ପଦତଳେ ସବୁ ପ୍ରତିଷ୍ଠା, ସବୁ ଯଶ, ସବୁ କୀର୍ତ୍ତି, ସବୁ ଧନ ଆଉ ସବୁ କ୍ଷମତା ଡାଳଏ ଫୁଲ ଭଳି ଅଜାଡ଼ି ହୋଇପଡ଼ିବେ । ସେଇ ତାର ଅର୍ଘ୍ୟ-ତା’ ପାଇଁ ଯୋଗ୍ୟ ପ୍ରତିଦାନ ! ସଂସାରର ସମସ୍ତ ସୌଭାଗ୍ୟ ତା’ ପାଦତଳର ଫୁଲଟିଏ ମାତ୍ର !

ଡା: ଗୋକୁଳାନନ୍ଦ ନଜର ଓଜନ ହରାଇବସିଲେ । ତାଙ୍କର ମନେହେଲା ସେ କ୍ରମଶଃ ଲଘୁ ହୋଇ ଉଠୁଛନ୍ତି । ତାଙ୍କ ଦେହରୁ ସବୁ ବିଶେଷଣ ଖସିପଡ଼ୁଛନ୍ତି । କୃଷ୍ଣା ଚୌଧୁରୀ ଏହି ମୁହୂର୍ତ୍ତରେ ତାଙ୍କର ସ୍ମୃତିରେ ଉଦୟ ହୋଇ ତାଙ୍କର ସମସ୍ତ ଅର୍ଜିତ ତେଜକୁ ମ୍ଳାନ କରି ଦେଲଣି । ଏଇ ପ୍ରତିଷ୍ଠା, ଏଇ ତେଜ ସତେ କି ତାଙ୍କ ଅର୍ଜିତ ନୁହେଁ । କୃଷ୍ଣା ଚୌଧୁରୀ ହିଁ ଏଗୁଡ଼ିକର ଯଥାର୍ଥ ଅଧିକାରିଣୀ ! ଦେବେ—ଦେବେ ତାଙ୍କୁ ସେ ତାର ଅବଦାନ – ଏହିସବୁ ଆଜି ଫେରାଇ ଦେଇ-ଆସିବେ । ଅଜାଡ଼ି ଦେଇ ଆସିବେ ତା’ର ପାଦତଳେ ତାଙ୍କ ଜୀବନର ସମସ୍ତ ଅର୍ଜିତ ଯଶ, ପୁଣ୍ୟ, କୀର୍ତ୍ତି, ମାନ ସମ୍ମାନ ଓ ସବୁକିଛି ।

ଆଜି ମନେ ପଡ଼ୁଥିଲା—ସେଇ କେତେକାଳ ପୂର୍ବର ଗୋଟିଏ ମଧୁମୟୀ ଉଚ୍ଚାଟକାରିଣୀ ସୌଭାଗ୍ୟସୂଚକ ସନ୍ଧ୍ୟା । କୃଷ୍ଣାଥିଲା ଏକ ବିପୁଳା କେଶସମ୍ଭାରର ଅଧିକାରିଣୀ । ଏକ ବାସନ୍ତୀ ସନ୍ଧ୍ୟାରେ ଗୋଲ୍ ବଜାରର ଛକ ଉପର ଅଳଂକାର ଦୋକାନ ଆଗରେ ଠିଆ ହୋଇଥିଲା କୃଷ୍ଣା । ସାଙ୍ଗରେ ଥିଲା ଏଇ ସୁକୁମାରୀ । କୃଷ୍ଣାର ବିପୁଳ ଘନକୃଷ୍ଣ କବରୀକୁ ବହୁ ପ୍ରସ୍ତରେ କଣ୍ଠାଇ ଧରିଥିଲା ଗୋଟିଏ ଘଞ୍ଚ ବକୁଳର ମାଳ । ଗୋକୁଳାନନ୍ଦ ଏକକୋଟି ତଦ୍ରୂପ ସନ୍ଧ୍ୟାର ସର୍ବଶ୍ରେଷ୍ଠ ଅବଦାନ ରୂପେ ମନେ କରିଥିଲେ ସେଦିନ କୃଷ୍ଣା ଚୌଧୁରୀଙ୍କୁ । ···ତା’ପରେ ତ ପରେ ଏହି ସୁକୁମାରୀ ହିଁ ତାଙ୍କୁ ନେଇ ଜୁଟାଇ ଦେଇଥିଲା କୃଷ୍ଣା ପାଖରେ । ସେ ବହୁତ କଥା – ନାଃ । ତାକୁ ସବୁ ଆଉ ତଉଲି ହେବ ନାହିଁ —ସେ ସବୁକୁ ଆଉ ଧାରାଧୂଭରେ ଏକାର ଘଟଣା ପରଂପରା ହିଆରିକରି ହେବ ନାହିଁ—ସେ ସବୁ କେବଳ ଅନୁଭୂତ ହୋଇଯାଇଛି । ଅନୁଭୂତ; ଯାହା ଏକାଧାରରେ ବିଷାଦ ଆଉ ମଧୁର—ବାସ୍ତବ ଆଉ ସ୍ୱପ୍ନର —ପାଇବା ଆଉ ହରାଇବାର –ଧରିବା ଆଉ ଛାଡ଼ିବାର – ନାଃ ଆଉ

ଭାବ ମଧ୍ୟ ହେଉଥାନ୍ତି – ଗୁଡ଼ଭିତରେ ଲହରୀ ପରି ଲହରୀ ଉଠୁଛି । ସେ ଏତେ ଅକୃତଜ୍ଞ ! ଏତେ ଶଠ ! ଏତେ ଅହଂକାରୀ ! ଏତେ ପ୍ରେମହୀନ ? କୋଡ଼ିଏ ବର୍ଷଧରି ସେ ଭୁଲିଯାଇଛନ୍ତି କୃଷ୍ଣାଙ୍କୁ ? କୃଷ୍ଣାଙ୍କୁ ଭୁଲିହୁଏ ? ଯଦି ହୁଏ – ତେବେ ଏଇ ମୁହୂର୍ତ୍ତରେ ସେ ତାଙ୍କ ଜୀବନର ସମସ୍ତ ପ୍ରତିଷ୍ଠା, ପ୍ରତିଭା ପ୍ରଜ୍ଞା ଓ ପଦ୍ମବୀକାଶ୍ରୀଙ୍କୁ ଏହି ନଦୀଗର୍ଭକୁ ଫିଙ୍ଗାଇ-ଦେବେ । ଫିଙ୍ଗାଇଦେବେ ଓ ବାଳେଶ୍ୱଣହୀନ ବାଳେଶ୍ୟିଟିଏ ହିସ୍ତି ଆଉକୁ ସହଜରେ ଦଉଡ଼ିପିବା ଭଳି – ଲଙ୍ଗଳା ଶିଶୁଟି ତାର ମାଆ ପାଖକୁ ଦୌଡ଼ି ଯିବାଭଳି ସେ ବର୍ତ୍ତମାନହିଁ ତା'ପାଖକୁ ଦୌଡ଼ିଯିବେ ଓ ତାର କୋଳଭିତରେ ମୁହଁ ଲୁଚାଇ କାନ୍ଦି ଉଠିବେ । ମାଆଲୋ ! ମୁଁ ଫେରିଆସିଛି । ଫଦାରେ ମୋର ସବୁ ଧୂଳିଘର ଭାଙ୍ଗିଦେଇ ଆସିଛି । ମତେ ଏବେ ଦଦ ଦେ, କୋଳ ଦେ, କୋଳଭିତରେ ଜାକିରଖ । ମୁଁ ଆଉ ବାହାରକୁ ଯିବନାହିଁ । ବାହାରେ ଖାଲି ମାଳ ମାଳ ଡାହାଣୀ ଲୋ ମା – ମାଳ ମାଳ ଚିରୁଗୁଣୀ । ଆଉ ବାହାରକୁ ଯିବିନାହିଁ । ଦେ ମତେ ଜାକିରଖ କୋଳରେ । କହ – ମତେ ରଜାପୁଅ ମନ୍ତ୍ରୀପୁଅ କଥା – ବାଘମାମୁଁ କଥା – ନାକୁଆ କଣ୍ଡିବ କଥା – ସେହି ମଣିପୁର ରାଜଜେମା କଥା ଯାର ବାରହାତ ଲମ୍ବ ବାଳ !

ଡା: ଗୋକୁଳାନନ୍ଦ ପୂଜାରୀ ଏକ ଅଭାବିତ ଅପ୍ରସ୍ତୁତ ଉତ୍ତେଜନାରେ କାନ୍ଦିବେ କାନ୍ଦିବେ ହେଉଥିଲେ—ଏହି ସମୟରେ ସୁକୁମାରୀ କହିଲି—

ଆଉସବୁ ଚମର ଭଲଟି ବାବୁ ?

ହଁ ଲୋ ସବୁ ଭଲ । ମତେ କହିଲୁ – କୃଷ୍ଣା ବର୍ତ୍ତମାନ କିପରି ଅଛି ?

ଭଲ ଅଛନ୍ତି । ଝିଆରୀ କ ବାହାକରି ଦେଲେ । ପୁଅଗୁଡ଼ିକୁ ପାଠ ପଢ଼ାଇ ମଣିଷ କରିଛନ୍ତି । ପୁଅର ବର୍ତ୍ତମାନ ଗଞ୍ଜରକେଲରେ ବଡ଼ ଡାକ୍ତର । ପିଲାପିଲି ନେଇ ସେଇଠି ଅଛି । ବାପାଙ୍କ ପାଖରେ ରଖିବାକୁ ବହୁତ ଲଗେଇଲା । ବାପା ମନା କରିଦେଲେ । କହିଲେ— ନାଇଁରେ ବାବୁ ମୁଁ ଏଇଠି ରହିବି । କେବେ କେବେ ଯାଇ ବୁଲି ଆସନ୍ତି । ଏଇଠି ରହି

ପ୍ରାଇଭେଟ୍ ପ୍ରାକ୍‌ଟିସ୍ କରୁଛନ୍ତି । ଅତୁଳବାବୁ ଡାକ୍ତରଖାନାରେ ଓଳଏ କାମ କରନ୍ତି । ଚଳି ଯାଉଛି ।

ତୁ କୋଉଠି ଅଛୁ ସୁକୁମାରୀ ?

ମୁଁ ? ମୁଁ ଆଉ କୋଉଠି ରହିବି ? ସେଇ ବଡ଼ୀ ପାଖେ ଥାଏଁ — ରହିଛି ।

ମୋର ତ ଆଉ କେହି ନାହାନ୍ତି । ବଡ଼ୀକ ଘୁଡ଼ ଆଉ କୁଆଡ଼େ ଯାନ୍ତି ? ତା'ଛଡ଼ା ମୁଁ ଗଲେ ଘର ବଡ଼ୀକ ଦେଖାଶୁଣା କରିବ କଏ ? ଯିବ ବାବୁ ଏଇନେ ତାଙ୍କ ଘରକୁ ? ଯାଉନା ! !

ଗୋକୁଳାନନ୍ଦଙ୍କର ହୃଦୟ ସ୍ପନ୍ଦିତ ହୋଇ ଉଠିଲାଣି । ସେ କୁତୁହଳିତ ହୋଇ କହିଲେ—

ଯିବ ଚଣ ସୁକୁମାରୀ ? ରହିବ ମୁଁ ଏଣିକି ସବୁଦିନେ ତା'ପାଖେ । ମତେ ସେ ରଖିବ ତ ? ମତେ କେମିତି ତା' ପାଖେ ରଖିଦେ ସୁକୁମାରୀ । ତୋ' ହାତ ଧରୁଛି । ନେହୁରା ହେଉଛି ।

ସୁକୁମାରୀ ଫେର୍ ତାର ପାନଖିଆ ନାଲିପାଟିରୁ ଛୁଲକାଏ ହସ ଛୁଡ଼ କହିଲା—

କାହିଁକି ସେମିତି ବାହାପିଆ କଥା କହୁଛ ? ମାଇକି ଯିବ ଯଦି ବଡ଼ୀ ଘର ଖୁସି ହୋଇଯିବ । ମାଈକିନିଆ ତ ନୁହଁ ଅରଗର ଦେଖା ସେ ବାବୁ । ବୁଢ଼ୀ ହେଲାଣି—ହେଲେ କଏ କହିବ ବୁଢ଼ୀ ବୋଲି ? ସବୁବେଳେ ରସ ଟୁକୁ ଟୁକୁ । । ତା' ମନକଥା କଏ କଳିବ ? ପର ଆପଣା ଅଛି କି ? ସାଇଟାପାକର ପିଲା ପଲ ତା' ଘରେ । ଖାଇବେ—ଖେଳିବେ—ପାଠ ପଢ଼ିବେ । କାହାକୁ ସିଲଟ କିଣିଦେବେ – କାହାକୁ ବହି, କାହାପାଇଁ ଜାମା ପଣ୍ଟ । ସାଇର ପିଲା ବୁଢ଼ା ମରଦ ମାଇପେ ସମସ୍ତଙ୍କର ବଡ଼ୀ । ଏବେ କଣ ମା'ପାଷା ନେଇଛି । ହପ୍ତାକେ ଦି'ଦିନ ପାଠଚକ୍ର କରାଉଛି ଘରେ । କହୁଛି— କଣ ସବୁ ରୂପାନ୍ତର ହବ । ବରଷକେ ଦି'ଥର ଯାଉଛି ପଣ୍ଡି-

ଦେଖ । ଘରପାଜ ଖାଲି ମା ଅରବନ୍ଦ ଫଟ ନଙ୍ଗା ହୋଇଚ୍ଛି । ଏଇ ଅନ୍ତୁଳ ବାବୁ ଡାକ୍ତର ତାଙ୍କୁ ସେ ମାଆ ପାଷା ଧରେଇଲା । ବନେ ବନେ ବାଢ ଉଠିବ—ଆଜ ମୋ କାନ୍ଧରେ ହାତ ପକେଇ କହିବ—ଥଯୁଧର ସୁକୁମାରୀ । ଏ ପୃଥିବୀ ଖୁବ୍ ଶୀଘ୍ର ରୂପାନ୍ତର ହୋଇଯିବ । ଆଜ ଏମିତି ରହିବ ନାହିଁ ।

ଗୋକୁଳାନନ୍ଦ ବାବୁ ଉଠି ଠିଆ ହେଲେ । ତାପରେ ବହୁଳ ଚରରେ ସୁକୁମାରୀର ଦୁଇବାହୁକୁ ଧରି ଛୋଟ ପିଲାଙ୍କ ପରି ଅଳକରି କହିଲେ—ସୁକୁମାରୀ ଚଲ ! ମତେ ତା' ପାଖକୁ ନେଇଚାଲ ।

ଚଲ ! ନେଇଚାଲ ଜଣ ମ ? ତେମେ ଆସୁନ ! ଦେଖିଲେ ତ କୋଟିନିଧି ପାଇଯିବ । ତେମେ ସିନା ବାବୁ ବଡ଼ଲୋକ ହେଇ ସବୁ ଭୁଲି ଯାଇଛ — ହେଲେ ତାଙ୍କ ମନରୁ କେହି ଯାଇ ନାହାନ୍ତି । ବନେ ବନେ ଆପଣଙ୍କ କଥା ପକାନ୍ତି । ଖୁବ୍ ପ୍ରଶଂସା କରନ୍ତି । ସମସ୍ତଙ୍କ କଥା ପକାଇବେ । କଥା କହୁ କହୁ କାନ୍ଦ ପକାଇବେ—ଫେର ଜଣ ମନକୁ ଆସିବ ହସିଦେବେ । ଜଣ ମନରେ ଭାବନ୍ତି କେଜାଣି ?

ଡା: ଗୋକୁଳାନନ୍ଦ ନବୀନ ପ୍ରେମିକଟିଏ ଭଳି ପଚାରିଲେ—

ମୋ କଥା ମନେ ପକାଏ କୃଷ୍ଣା ? ସତ କହୁଛୁ ? ତୁମ ଧୂଅ-ଛୁଇଁଛି ବାବୁ ! କୋଉଦନ ଖବର କାଗଜଟାଏ ଆଣି ଫଟ ଦେଖେଇବେ —କ ଜଣ ଗୋଟେ ତୁମ ବିଷୟରେ ଖବର ବାହାରି ଥିବ — ପଢ଼ି ଶୁଣାଇବେ—ସୁକୁମାରୀ । ଶୁଣ ଲେ । ତୋ ଗୋକୁଳାନନ୍ଦବାବୁ କଥା । ରେଡ଼ିଓରେ ବି କେତେଥର ତୁମ ତୁଣ୍ଡ ଶୁଣାନ୍ତି ବାବୁ ।

ମୁଁ ଯିବ ସୁକୁମାରୀ ! ମତେ ନେଇଚାଲ । ମୁଁ ଯିବ । ମୁଁ କୃଷ୍ଣା ପାଖେ ରହିବ । ତା' ପାଦତଳେ ରହିବ । ତା' ପାଦ ସେବିବ । ତାର କୋଯୁର ହେବ । ସବୁ ତା' ପାଦତଳେ ଅଜାଡ଼ି ଦେବ – ସବୁ ।

ଦେଖ—ଦେଖ । ତୁମ ମୁଣ୍ଡ ଖରାପ ହେଲଣି ନା ଜଣ ? କଉ ସେମିତି ବେହାଲ କାନ୍ଦିଁକ ହଉଚ ? ଯାଉନ ! ଚା ଖାଇ ଆସିବ । କେଡ଼େ ଖୁସି ହୋଇ ଯିବେ ସେ !

ନାହିଁ ସୁକୁମାରୀ ! ତୁ ମତେ ନେଇ ଚାଲ ।

ହଉ ! ତା'ହେଲେ ଆସୁନ ! ଆସ ! କେତେ ବାଟ କି ? ହେଉପରା ସେଇ ଟାଇଲ ଛପର ଘରଟା—

ନାହିଁଲେ ସୁକୁମାରୀ ! ସେମିତି ନୁହେଁ । ତୁ ଏଇ ଯେଉଁ ଚଢ଼େଇ ଝୁଡ଼ି କରିଛୁ ସେଇଥିରେ ମତେ ଟାଙ୍ଗି କରି ତା' ପାଖକୁ ନେଇଚାଲ । ସେ ମତେ ତୋ ଠାରୁ ପାଞ୍ଚଟି ପଇସା ଦେଇ କିଣିକରି ନଉ । ମତେ ନେଇ ଖେଳୁ । ସେ ମତେ ଖେଳୁ । ହଁ ! ମତେ ଏମିତି ଗୋଟେ ବେଲୁନ୍ ଚଢ଼େଇ ବନେଇ ଦେ ସୁକୁମାରୀ । ନେଳୀ ଚଢ଼େଇଟିଏ କରିଦେ । ମୋ ଭିତରେ ପବନ ପୂରେଇ ଦେ । ମୋଡ଼ ମଡ଼ ଭାଙ୍ଗି ଭୁଙ୍ଗି ଚଢ଼େଇ କରିଦେ । ଦି' ପାଖେ କରିଦେ ଦୁଇଟା ପର । ପଛରେ ଖଞ୍ଜିଦେ ପୁଚ୍ଛଟିଏ ଆଉ ବେକରେ ବାନ୍ଧିଦିଏ ନାଲି ରିବନଟିଏ । ମୁହଁରେ ଲଗେଇ ଦେ ଧଳା ଥଣ୍ଟିଟିଏ । ଦୁଇପାଖେ ଦୁଇଟି ଚଢ଼େଇ ଆଖି, ଏମିତିକା ଏଇମାନଙ୍କ ଭଳିଆ ଗୋଲ ଗୋଲ ।

ଡା: ଗୋକୁଳାନନ୍ଦ ସୁକୁମାରୀ ହାତରେ ଚଢ଼େଇ ଝୁଡ଼ିଟିକୁ ଧରେଇ ଦେଲେ । ଚଢ଼େଇମାନେ ଚକରକାଟି ଘୂରି ବୁଲିଲେ ଚମତ୍କାର । ତା ଭିତରେ ଯୁ୍ଆ ଥଣ୍ଟ—ଯୁଆ ଥଣ୍ଟରେ ତା' ଲାଞ୍ଜ ବାଜୁଥାଏ । ଦେ ବନେଇ ଦେ ସୁକୁମାରୀ ! ଟାଙ୍ଗି-ଦେ ମତେ ଏଇ ଚଢ଼େଇ ଝୁଡ଼ିରେ ସୂତାଟିଏ ମୋ ବେକରେ ବାନ୍ଧି । ମୁଁ ଏଇ ଚଢ଼େଇମାନଙ୍କ ମେଳରେ ଝୁଲି ଝୁଲି ତା ପାଖକୁ ଯିବି । ତୁ ମତେ ନେଇଯିବୁ ଯେମିତି ସେ ଦିନ ପ୍ରଥମ କରି ମତେ ତୁ ତା ପାଖକୁ ନେଇ ଯାଇଥିଲୁ । ନେ ନେ ସୁକୁମାରୀ ! ମତେ ନେ ! କୃଷ୍ଣା ପାଖକୁ ନେଇ ଚାଲ । ସେ ମତେ ଖେଳୁ । ମତେ ଚଢ଼େଇଟିଏ କରି ଉଡ଼ାଉ ।

ସତିକୁ ସତ ଡା: ଗୋକୁଳାନନ୍ଦ ଉଲ୍ଲସିତ ଉଚ୍ଛାଟିତ ମୁଖଶିତ ବିହଙ୍ଗଟିଏ ହୋଇଗଲେ । ସୁକୁମାରୀ ତାଙ୍କ ବେକରେ ସୂତାଟିଏ ବାନ୍ଧି ତାଙ୍କୁ ତାର ଚଢ଼େଇ ଝୁଡ଼ିରେ ଟାଙ୍ଗିନେଇ ଯାଇଥିଲା ତାର କୃଷ୍ଣା ଦିଦିଙ୍କ ପାଖକୁ । କୃଷ୍ଣାଦିଦି ଖେଳିବ ଏଇ ନୂଆ ପ୍ରକାରର ପବନଭରା ନେଳୀ ବେଲୁନର ଚଢ଼େଇଟି ସାଙ୍ଗରେ । କୃଷ୍ଣାଦିଦି ମଣିଷ ନୁହେଁ-ଦେବୀ ।

କଳ୍ପଲୋକର ବାସିନ୍ଦା ସେ । ତାକୁ ରୂପାନ୍ତର ତଥ୍ୟ ଜଣା । କୃଷ୍ଣାଢଣୀର ନାମ ସ୍ମରଣ କଲାମାତ୍ରେ କଣ ସବୁ ପୁରୁଷ ଏମିତି ପବନପଣା ବେଲୁନ୍ ଚଢ଼େଇ ହୋଇ ତାର ଝାଙ୍ଗରେ ଝୁଲିବେ ? ଏଇ ଚଢ଼େଇଟିକୁ ଦେଖି କୃଷ୍ଣାଢଣୀ ହସିବ, ଫେର କାନ୍ଦିବ, ସେଇଠୁ ଗୁମ୍ମାରି ବସିବ । ତାପରେ ଛାଡ଼ିଦେବ—ଉଡ଼େଇଦେବ । କହିବ – ଯାରେ ଚଢ଼େଇ ଯା—ଯା ଉଡ଼ିଯା । ଆହୁରି ଦୂର ଆକାଶକୁ ଉଡ଼ିଯା । ଯା-ଯା-ଯା — ଉଡ଼ିଯା । ମେଘ ଘରକୁ ଯା-ସୂର୍ଯ୍ୟଲୋକକୁ ଯା – ଚନ୍ଦ୍ରଲୋକକୁ ଯା – ନକ୍ଷତ୍ର ରାଇଜକୁ ଯା । ଯା ଯା ଉଡ଼ିଯା ! ଏଠି ବସି ଘୁମା ନାହିଁ—ଯା ଉଡ଼ିଯା । କୃଷ୍ଣାଢଣୀ ଦାନା ବିଛାଡ଼ି ଚଢ଼େଇ ରୁଣ୍ଡେଇବ । ଦେଖିବ—ଖେଳିବ ଘଡ଼ିଏ । ଫେର୍ ଛାଡ଼ି ଦେବ । ତାହାକୁ ପଞ୍ଜୁରି ଭିତରେ ବାନ୍ଧି ରଖିବନାହିଁ । ଖାଲି କହୁଥିବ—ଉଡ଼ିଯା ଉଡ଼ିଯା ଉପରକୁ ଉଡ଼ିଯା, ଫେର୍ ଉପରକୁ । ଉଡ଼େଇ ଦେବ—ଫେର୍ ଚାହିଁ ରହିଥିବ ଆକାଶକୁ । ଆହା ! ମୁଁ ମନ୍ତ୍ରପାଞ୍ଜ ଥାଏଁଟି । କୃଷ୍ଣାଢଣୀ ଦେଖା ନା ମାନବୀ ! ତାକୁ ରୂପାନ୍ତର ତଥ୍ୟ ଜଣା ।

ଏହାର ଦୁଇଦିନ ପରେ ।

ଆଜି ଗୋଟିଏ ସକାଳେ । ସହରର ଲୋକମାନେ ଦେଖିଲେ ସହରର ବରିଷ୍ଠ ପ୍ରତିଷ୍ଠାବାନ୍ ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ପୂଜାରି କୋଡ଼ି କୋଦାଳ ଓ ଟ୍ରଲିଟିଏ ସହ କେତେକ ଯୁବକ ସ୍ୱେଚ୍ଛାସେବକଙ୍କ ଗହଣରେ କେନାଲକୂଳ ରାସ୍ତା ଉପରୁ ମଣିଷଗୁହ ସଫା କରିବାରେ ଲାଗି ପଡ଼ିଛନ୍ତି । ଗୋକୁଳାନନ୍ଦ କୋଦାଳରେ ମଇଳା କାଢ଼ୁ କାଢ଼ୁ ଯୁବକମାନଙ୍କୁ ଉଦ୍‌ବୋଧନ ଦେଇ ଚାଲିଥାନ୍ତି —

ବୁଝିଲ ବାବୁମାନେ ! ଏ ସହରକୁ ସୁନ୍ଦର କରିବାକୁ ହେବ—ନିର୍ମଳ କରିବାକୁ ହେବ । ସତେଜ ଓ ପ୍ରାଣବନ୍ତ କରିବାକୁ ହେବ ଏଇ ସହରଟାକୁ । ଏ ସହରଟାର ରୂପାନ୍ତର ଘଟାଇବାକୁ ହେବ । ତୁମ୍ଭେମାନେ ନିରାଶ ହୁଅ ନାହିଁ । ବୃଥାରେ ଏଣେତେଣେ ଦଉଡ଼ାଧାପଡ଼ କରନାହିଁ । ତୁମେ ଯାହା ଖୋଜୁଛ—ଯାହାକୁ ଖୋଜୁଚ ତାର ମା'ଆ ଏଇସହର ଭିତରେ ଅଛି ମୁଁ ତାକୁ ପାଇଛି । ସେ କୁଆଡ଼େ ପଳେଇ ଯାଇନି—ତାକୁ କେହି ନେଇଯାଇନାହାନ୍ତି । ମୁଁ ତାକୁ ତୁମ ହାତରେ ଦେବି । ତୁମେ ଆଗ ସଫା କରି ଚାଲ । ଏହା ପରେ ଆମ୍ଭେମାନେ କୃଷ୍ଣଚୂଡ଼ା ଗଛମାନ ଏ କେନାଲ କୂଳେ

କୂଳେ ଲଗାଇବା । ଶହେ ସୁଯୋଗ ମୁଁ ମୋ ବଗିସ୍ତରେ ହରାଉଛି । ତନ୍ତ୍ର କାମ । ରୂପାନ୍ତର କର—ରୂପାନ୍ତର । ଲାଗ କାମରେ……

ଗୋକୁଳାନନ୍ଦଙ୍କର ଏଷ୍ପ କାର୍ଯ୍ୟକୁ ଅଦୂରରେ କେତେକ ସାନ୍ଧ୍ୟବାୟୁ ସେବୀ ଲୋକ ରୁଣ୍ଡହୋଇ ଦେଖୁଥିଲେ ଓ ମଜା ପାଉଥିଲେ । ସେମାନଙ୍କ ଭିତରେ ଜଣେ ହାତ୍ ବଜ୍ରିବାସ୍ତ ଅନ୍ୟମାନଙ୍କ ଆଗେ ବକ୍ତୃତା ଝାଡ଼ୁଥିଲେ—"ବୁଢ଼ାର ମଗଜ୍ ଖରାପ ହୋଇଗଲାଣି—ବୁଝିଲ ବଡ଼ଭାଇ ! ଶୁଣିବାର ଦିନ ବଡ଼ ଫଜର୍ ହାମେ ଲଇକୂଳେ ମାଦ୍ଧବ କାରିଗରକୁ ଛକିଥିଲୁ—ଦେଖିଲାବେଳକୁ ଏ ବେଧିଆ ବୁଢ଼ା କ'ଣ କରୁଛି ଜାଣିଲ ? ସେଇ ଯୋଉ କାଳୀ ବେଧ ମାଇକିନାଟା ବେଲୁନ୍ ଧରିବାକୁ ହାମ୍ ସାଇକି ଆସେଇନ ? ତାର ହାତଧରି ପଦ୍ୟ ବୋଲନ୍ ହଉଛି ! ମା ସଣ ଅଛି ଭାଇ ! ଏ ଶ୍ଳା ଏସା ହାରାମୀ ବୁଢ଼ା ! ଦେଖୁନ ! ହାମ୍ ମା' ଭଉଣୀ ସେଠି ଝାଡ଼ା ଫେରୁଛନ୍ତି—ଶ୍ଳା କେମିତା ଟୋକାଙ୍କୁ ରୁଣ୍ଡେଇ ସେଠି ତାମ୍ସା କରୁଛି ! ! ତାକୁ କ'ଣ ସରମ୍ ଅଛି ?

ତା' କଥା ଶୁଣି ସାହିର ଆଉ ଜଣେ ପ୍ରତିଷ୍ଠାବାନ୍ ବ୍ୟକ୍ତି ଯେ କି ଗଲା ନିର୍ବାଚନରେ ସରକାରି ଦଳକୁ ଖୁବ୍ ସାହାଯ୍ୟ କରିଥିଲେ ବୋଲି ଶୁଣାଯାଏ—ସେ ତାଙ୍କର ଲମ୍ବୋଦରଟିକୁ ହଲାଇ ହଲାଇ ଓ ତା ଉପରେ ଦୁଇ ଚାରି ଥର ପାଇଖାନା ଯିବା ପୂର୍ବର ଚୋଟକା ମାରି କହିଲେ—

ଏ ଛୋକାର୍ କଣ ହାମର୍ ହଗ ବନ୍ଦ କରିଦେବ ? ହାମେ ଏମିତି ହଗି ଆଇନେନା—ଆଜି କ'ଣ ଏଠି ଲୁଆ ହଉଛି ? ଏଠି ଆଗ ହଗ ପଡ଼ୁଆ ଥେଲା—ତା'ପରେ ଯାଇକରି ରସ୍ତା ହୋଲାନାଇଁ ! ଆଗ କ'ଣ ରସ୍ତାଥେଲା ? ସେ ଗ୍ଡେକାର୍ ବୁଢ଼ାକୁ କଣ ଏତକ ବୁଦ୍ଧି ମାଲୁମ୍ ଅଛି ?

ଆଉ ଜଣେ ସାନ୍ଧ୍ୟବାୟୁ କୁଲୁକୁଲୁ ହେଇ କହିଲା—

ଯାଉନ୍ଦୁ ମାମୁଁ ! ସେ କେତେ ଝାଡ଼ୁ ମାରିବ ମାରୁଥାଉ । ହାମେ ଯଦି ସେଠି ଫେର୍ ନ ହଗିଛୁ ! ! ସେଠି ହାମେ ହଗିବା ନାଇଁ ତ କ'ଣ ତା'ର ମୁଣ୍ଡରେ ହଗିବା ?

ତେଣେ ଡଃ ଗୋକୁଳାନନ୍ଦ କହି ଚାଲିଥାନ୍ତି – ଶତେ କୃଷ୍ଣଚୂଡ଼ା ଲଗାଇବା ଏ ରାସ୍ତା କଡ଼େ କଡ଼େ ବୁଝିଲ ବାବୁମାନେ ! ଶତେ ପୁଷ୍ପିତା କୃଷ୍ଣଚୂଡ଼ାର ନାଲି ଟହ ଟହ ହସରେ ହସି ଉଠିବ ଏ ରାସ୍ତା – । ସେଇଠୁ ଧରିବା ନନ୍ଦନକାନନ ରାସ୍ତା – । ଏ ସହର ବର୍ତ୍ତମାନ ଆମ ହାତରେ । ତୁମେମାନେ ଲାଗିଯାଅ – ଆଜି ଏଣେତେଣେ ବୃଥା ଦଉଡ଼ଧାପଡ଼ କରନାହିଁ ।

ମୁଁ ପ୍ରତିଶ୍ରୁତି ଦେଉଛି – ତୁମେମାନେ ଯାହା ଖୋଜୁଛ ଯାହାକୁ ଖୋଜୁଛ – ତାକୁ ମୁଁ ତୁମ୍ଭମାନଙ୍କ ହାତରେଇ ଦେବି ଦେବି ଦେବି – ଦେଇଯିବି । କିନ୍ତୁ ଆଗ ରାସ୍ତା ସଫା କର – ରାସ୍ତା ସବୁ ସୁସ୍ନିଗ୍ଧ-ଶୀତଳ କର – ପୁଷ୍ପାନ୍ୱିତ କର । ତା' ନ ହେଲେ ସେ ଆସିବ କେଉଁବାଟେ ? କେଉଁବାଟେ ତୁମ୍ଭେମାନେ ତାକୁ ନେଇ ଚାଲିବ ? ଏ ସହର ବର୍ତ୍ତମାନ ତୁମର । ଚାଲ ଅ କାମ ।

ଯୁବକମାନେ ମହା ଉତ୍ସାହରେ ରାସ୍ତା ସଫା କରି ଚାଲିଥିଲେ ।



# ସମୁଦ୍ର, ନୀଳକୁଣ୍ଡ ଓ ନୀଳବର୍ଣ୍ଣର ଶୃଗାଳ-ଉପାଖ୍ୟାନ

[ ପ୍ରାଚୀନ ପାଠ୍ୟପୁସ୍ତକ ରୀତିରେ ଲିଖିତ ଏକ "ରୂପକ" ]

ଏକଦା ନିଜକୁ ଚତୁର ବୋଲି ଭାବୁଥିବା ଜଣେ ଶୃଗାଳ ଖୁବ୍ ତୃଷାର୍ତ୍ତ ହୋଇଉଠିଲା । ତା'ର ତୃଷାକୁ ସାଧାରଣଭାବେ ଶାନ୍ତ କରିବା ଲାଗି ନିକଟରେ କୂପ, ତଡ଼ାଗ, ବାପୀ, ପୁଷ୍କରିଣୀ, ନଦୀ ଓ ହ୍ରଦାଦି ଜଳାଶୟମାନ ପ୍ରସ୍ତୁତ ହୋଇ ରହିଥିଲେ । ମାତ୍ର ନିଜକୁ ଚତୁର ବୋଲି ମନେକରୁଥିବା ସେହି ଶୃଗାଳଟିର ମନୋଭୂମିରେ ଏକ ଅଭ୍ରାନ୍ତ ଧାରଣା ଜାତ ହେଲା । ତା'ର ସେହି ତୃଷାର୍ତ୍ତ ମୁହୂର୍ତ୍ତରେ ମନେହେଲା—

"ମୁଁ ତୃଷାର୍ତ୍ତ ସତ୍ୟ, ମାତ୍ର ମୋର ଏହି ତୃଷା କଦାପି ସାଧାରଣ ତୃଷା ନୋହେଁ । ତେଣୁ ଏ ତୃଷା କୂପ, ବାପୀ, ତଡ଼ାଗ, ହ୍ରଦ ବା ନଦୀମାନଙ୍କର ସାଧାରଣ ଜଳପାନରେ କେବେ ଶାନ୍ତ ହୋଇ ନ ପାରେ । ମୁଁ ସମୁଦ୍ରର ଜଳ ପାନ କରିବାକୁ ଚାହେଁ । ମୋର ଏ ତୃଷା ନିଶ୍ଚୟ ସାମୁଦ୍ରିକ ଅଟେ । ତେଣୁ ଆପାତତଃ ସାମୁଦ୍ରିକ ଜଳ ହିଁ ମୋର ଅବଶ୍ୟ ପାନୀୟ ଅଟେ ।"

(ଅବଶ୍ୟ "ଅସାଧାରଣ ତୃଷା" କ'ଣ, ତା'ର ସ୍ୱରୂପ କିପରି – ତାହା ଆମ୍ଭମାନଙ୍କର ମର୍ମସ୍ପର୍ଶୀ ଅଜ୍ଞାତ ଅଟେ । ତେବେ ଏ ସ୍ଥଳେ ଏତିକି କୁହାଯାଇପାରେ—ଉପର୍ଯ୍ୟୁକ୍ତ ଶୃଗାଳଟି ଅନ୍ୟ ସମସ୍ତ ପ୍ରକାରେ ଆପାତତଃ ଅନ୍ୟ ଶୃଗାଳମାନଙ୍କ ସଦୃଶ ଥିଲା ଓ ଅନ୍ୟମାନଙ୍କଠାରୁ ତା'ର ପାର୍ଥକ୍ୟ ଆପାତତଃ କିଛି ଲକ୍ଷ୍ୟ କରି ହେଉ ନଥିଲା ।)

ନିଜକୁ ଚତୁର ବୋଲି ଭାବୁଥିବା ସେହି ଶୃଗାଳଟି ଏବଂବିଧ ଚିନ୍ତା କରି ତା'ର ସାମୁଦ୍ରିକ ତୃଷା ନିବାରଣାର୍ଥ ସମୁଦ୍ରର ଅନ୍ୱେଷଣରେ

ବହିର୍ଗତ ହେଲା । ଯଦ୍ୟପି ଏହି ସସାଗରାଧରାର ତିନ ଭାଗରୁ ଅଧିକାଂଶ ସମୁଦ୍ରଦ୍ୱାରା ବେଷ୍ଟିତ—ତଥାପି ଶୃଗାଳଟି ସମୁଦ୍ର ଅନ୍ୱେଷଣରେ ବହୁକାଳ ଅତିବାହିତ କଲା । ବହୁକାଳ ଅତୀତ ହେବା ଉତ୍ତାରୁ ନିଜକୁ ଚତୁର ବୋଲି ମନେକରୁଥିବା ମୋକ୍ଷ ତୃଷାର୍ତ୍ତ ଭ୍ରାମ୍ୟମାଣ ଶୃଗାଳଟି ଅତ୍ୟନ୍ତ କ୍ଲାନ୍ତ ହୋଇ ହଠାତ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ସନ୍ନିକଟସ୍ଥ ଏବଂ ଗୁଳ୍ମ ଓ ବଲ୍ମୀକସ୍ତୂପପରିବେଷ୍ଟିତ ଏକ ବନ ମଧ୍ୟରେ ଶରୀର ଗୋପନ କରି ବିଶ୍ରାମ ନେବାକୁ ଲାଗିଲା ଏବଂ ମନେ ମନେ ଚିନ୍ତା କଲା—

ଅହୋ ! ମୁଁ କି ଭ୍ରାନ୍ତ ଅଟେ !! ସମୁଦ୍ର କିପରି ପଦାର୍ଥ ତାହା ମୁଁ କସ୍ମିନ୍‌କାଳେ ଏତଦ୍ ପୂର୍ବେ ଦେଖି ନାହିଁ । ପୁନଶ୍ଚ ସମୁଦ୍ରର ଆକାର ଓ ପ୍ରକାରାଦି ସମ୍ବନ୍ଧେ ମୁଁ ସମ୍ପୂର୍ଣ୍ଣ ଅଜ୍ଞ ଅଟେ । ତଥାପି ମୁଁ ସାମୁଦ୍ରିକ ନିଶାରେ ସମୁଦ୍ର ଅନ୍ୱେଷଣ କରି ଏ ପୃଥିବୀକୁ ବୃଥା ପରିଭ୍ରମଣ କରୁଅଛି ! ଧିକ୍ ମୋତେ ! ଶତଧିକ୍ ମୋର ମୂଢ଼ତାକୁ ।

ଏବଂବିଧ ଆତ୍ମଧିକ୍କାର କରୁ କରୁ କ୍ରମେ ସେ ନିଦ୍ରାକ୍ରାନ୍ତ ହେଲା ଏବଂ ତା'ର ଚକ୍ଷୁଦ୍ୱୟ ନିମୀଳିତ ହୋଇଆସିଲା । ସେହି ବନ ମଧ୍ୟରେ ନିଜର ଶରୀରକୁ କଞ୍ଚିତ୍ ସହଜଭାବେ ପ୍ରସାରିତ କରି ଶୃଗାଳଟି ଗର୍ତ୍ତ ବାହାରେ ନିଜର ମୁଖକୁ ସ୍ଥାପନ କରି ଊର୍ଦ୍ଧ୍ୱମୁଖ ହୋଇ ନିଦ୍ରା ଗଲା । ସେହି ନିଦ୍ରା ବଶରେ ସେ ଗୋଟିଏ ସ୍ୱପ୍ନ ଦେଖିଲା । ତାହା ଏବଂବିଧ—

ନିକଟସ୍ଥ ବଲ୍ମୀକସ୍ତୂପ ମଧ୍ୟରୁ ଜନୈକ ମହାତେଜବିଗ୍ରହ ଦୀର୍ଘ ଜଟାଜୁଟ ଓ ଶ୍ମଶ୍ରୁବିଲମ୍ବିତ ସନ୍ନ୍ୟାସୀ ତା'ର ସମ୍ମୁଖରେ ଆବିର୍ଭୂତ ହୋଇ କଲ୍ୟାଣମୁଦ୍ରା ପ୍ରଦର୍ଶନପୂର୍ବକ ହସ୍ତ ଉତ୍ତୋଳନ କରି ସସ୍ମିତ ବଦନରେ ପ୍ରଶ୍ନ କରୁଅଛନ୍ତି—

ବତ୍ସ ଶୃଗାଳପ୍ରବର ! ତୁମ୍ଭ ଉପରେ ଆମ୍ଭେ ପ୍ରସନ୍ନ ହୋଇଅଛୁ । ନିଜର ଅଭୀଷ୍ଟ ପ୍ରାର୍ଥନା କର ।

ଶୃଗାଳଟି କୃତାଞ୍ଜଳିପୂଟରେ କହିଲା—

ପ୍ରଭୋ ! ଅମାନିଶାର ତାମସୀ ହିଗ୍ରହକୁ ଅସଂଖ୍ୟ ରଶ୍ମିଶରରେ ବାରମ୍ବାର ଆଘାତକରିତଃ, ତନ୍ନିର୍ଗତ ଶୋଣିତଧାରାରେ ଅବଲିପ୍ତ

ସ୍ୱଶରୀରକୁ ରକ୍ତୋଜ୍ଜ୍ୱଳ-ଦୀପ୍ତିରେ ଉଦ୍ଭାସିତ କରୁଥିବା ଭଗବାନ୍ ମରୀଚ-ମାଳୀଙ୍କର ବାଳାରୁଣଶୋଭାସଦୃଶ ଆପଣଙ୍କର ଏହି ଜ୍ୟୋତିର୍ବିଗ୍ରହ – ମୋର ମନରେ ଯୁଗପତ୍ ଭୟ, ବିସ୍ମୟ ଓ ଶ୍ରଦ୍ଧା ଜାତ କରୁଅଛି । ଅଜ୍ଞାନ-ତିମିରରେ ଅନ୍ଧୀଭୂତ ଚକ୍ଷୁ ଦୁଇଟିରେ ଜ୍ୱଳନ୍ତ ଜ୍ଞାନାଞ୍ଜନ-ଶଳାକା ସଦୃଶ ଆପଣଙ୍କର ଅପୂର୍ବ ତେଜୋଦ୍ଦୀପ୍ତ ଶରୀର ଦର୍ଶନ କରି ମୁଁ ହଠାତ୍ ନିଜକୁ ଦୂର ଓ ନିକଟଦର୍ଶୀ ଚକ୍ଷୁଷ୍ମାନ୍‌ବତ୍ ମନେକରୁଅଛି । ଭଗବାନ୍ ! ଏଥର କହିବା ହେଉନ୍ତୁ ଆପଣ କିଏ ?

ଊର୍ଦ୍ଧ୍ୱ ଜଟାଜାଳ-ଶ୍ମଶ୍ରୁ ବିଲମ୍ବିତ ମହାତେଜସ୍ୱୀ ସନ୍ନ୍ୟାସୀଟି କଞ୍ଚିତ ପ୍ରସାଦଦୃଷ୍ଟି ନିକ୍ଷେପ କରି ସ୍ମିତ ହସି କହିଲେ—

ବତ୍ସ ଶୃଗାଳପ୍ରବର ! ତୁମ୍ଭେ ଯଥାର୍ଥ କହିଅଛ । ଏହା ତୁମ୍ଭର ପୂର୍ବଜନ୍ମର ସଂସ୍କାର ହେତୁ ସମ୍ଭବ ହୋଇଅଛି । ଆମ୍ଭେ ସ୍ୱୟଂ 'ଜ୍ଞାନ' ଅଟୁ । ବର୍ତ୍ତମାନ ନିର୍ଭୟରେ ସ୍ୱ-ଅଭୀଷ୍ଟ ପ୍ରାର୍ଥନା କର ।

ଶୃଗାଳଟି ତତ୍କ୍ଷଣାତ୍ ସନ୍ନ୍ୟାସୀଙ୍କର ସମ୍ମୁଖରେ ଭୂମିଷ୍ଠ ପ୍ରଣାମ କରି କହିଲା –

ଅହୋ ! ମୋର ପରମ ସୌଭାଗ୍ୟ ଯେ ମୁଁ ସ୍ୱୟଂ ଅଜ୍ଞାନତିମିର-ବିଧ୍ୱଂସୀ ପରମ ତେଜୋଦ୍ଦୀପ୍ତ ଭଗବାନ୍ ଜ୍ଞାନଦେବଙ୍କର ଦର୍ଶନ ଲାଭ କଲି । ପ୍ରଭୋ ! ଯଦି ପ୍ରକୃତରେ ମୋ ଉପରେ ପ୍ରସନ୍ନ ହୋଇଥାଆନ୍ତି— ତେବେ ମୋତେ ସମୁଦ୍ରର ଆକାର ପ୍ରକାର ସମ୍ବନ୍ଧେ ଅବଗତ କରାନ୍ତୁ ଏବଂ ସମୁଦ୍ରର ସନ୍ଧାନ ବତାଇ ଦିଅନ୍ତୁ । ସାମୁଦ୍ରିକ ତୃଷାରେ ମୁଁ ଏତାଦୃଶ ବିକଳତା ପ୍ରାପ୍ତ ହୋଇଅଛି ।

ନିଜକୁ ଚତୁର ବୋଲି ଭାବୁଥିବା ସେହି ଶୃଗାଳଟିର ଏବଂବିଧ ଅଭୀଷ୍ଟ ପ୍ରାର୍ଥନାରେ ସନ୍ନ୍ୟାସୀଟି କିଞ୍ଚିତ ସ୍ମିତହାସ୍ୟ କଲେ ଏବଂ କହିଲେ—

ହେ ଜମ୍ବୁକୋତ୍ତମ ! ଯାହାକୁ ଦେଖି ନାହିଁ ବା ଜାଣି ନାହିଁ – ତା'ର ତୃଷାରେ ବିକଳତା ପ୍ରାପ୍ତ ହେଲ କିପରି ?

ଜମ୍ବୁକଟି ବିନମ୍ର ପ୍ରକାଶ କରି କହିଲା—

ମହାତ୍ମନ୍ ! ବେଦଜ୍ଞ ଓ ତତ୍ତ୍ୱଦର୍ଶୀମାନେ ଏବଂବିଧ କହିଅଛନ୍ତି, "ଯାହା ଅଦୃଶ୍ୟ, ତାକୁ ମୁଁ ଦେଖିବାକୁ ଇଚ୍ଛା କରୁଅଛି । ଯାହା ଅସ୍ପୃଶ୍ୟ, ମୁଁ ତାକୁ ଛୁଇଁବାକୁ ଇଚ୍ଛା କରୁଅଛି । ଯାହା ଅନଧିଗମ୍ୟ, ତତ୍ପରି ମୁଁ ଯିବାକୁ ମନସ୍ଥ କରୁଅଛି ।" ହେ ମୁନିପୁଙ୍ଗବ ! ଆଉ କାଳକ୍ଷେପଣ କରନ୍ତୁ ନାହିଁ । ଯଥାଶୀଘ୍ର ମୋତେ ସମୁଦ୍ର ସମ୍ବନ୍ଧେ ଅବଗତ କରାନ୍ତୁ । ପୁନଶ୍ଚ ଆପଣଙ୍କର ଅବଗତି ଲାଗି ମୋତେ ବାଧ୍ୟ ହୋଇ ବିନୟର ସହିତ କହିବାକୁ ପଡ଼ୁଛି ଯେ – ମୁଁ ଜଣେ ସାଧାରଣ ଶୃଗାଳ ନୁହେଁ ।

ଦୀର୍ଘ ଜଟାଜାଳ-ଶ୍ମଶ୍ରୁବିଲମ୍ବିତ ମହାନ୍ ତେଜସ୍ୱୀ ସନ୍ନ୍ୟାସୀରୂପୀ 'ଜ୍ଞାନ'ଦେବ ପୁନଶ୍ଚ କିଞ୍ଚିତ୍ ସ୍ମିତହାସ୍ୟ ପ୍ରଦର୍ଶନ କରି ଶୃଗାଳଟିର ମସ୍ତକ ଉପରେ ଆପଣାର କଲ୍ୟାଣମୟ କର ଧୀରେ ସଞ୍ଚାଳନପୂର୍ବକ କହିଲେ—

ବତ୍ସ ଶୃଗାଳପୁଙ୍ଗବ ! ପୂର୍ବଜନ୍ମର ସଂସ୍କାର ଓ ଏହି ଜନ୍ମର ତତ୍ତ୍ୱାଲୋଚନା ଫଳରେ – ଯାହା ଅନଧିଗମ୍ୟ ତୁମର କାମ୍ୟ ହୋଇଥାଏ —ଯାହା ଅଦୃଶ୍ୟ ତୁମର ଲକ୍ଷ୍ୟ ହୋଇଥାଏ—ଯାହା ଅସ୍ପୃଶ୍ୟ ତୁମର ବାଞ୍ଛିତ ହୁଏ – ଏବଂ ସର୍ବୋପରି ଯଦ୍ୟପି ତୁମେ ନିଜକୁ ଜଣେ ଅସାଧାରଣ ଶୃଗାଳ ବୋଲି ପ୍ରକୃତରେ ମନେକରୁଥାଅ— ତେବେ ଏହା ଅତ୍ୟନ୍ତ ଗୂଢ଼ତତ୍ତ୍ୱ ହେଲେ ବି ମୁଁ କହୁଅଛି —ଶ୍ରବଣ କର । ସମୁଦ୍ର-ବିଳାସୀ ଧୀବରମାନେ ସମୁଦ୍ରର ଏବଂବିଧ ବର୍ଣ୍ଣନା କରିଅଛନ୍ତି । "ସମୁଦ୍ର ଜଳର ଅଜସ୍ର ଭଣ୍ଡାର ଅଟେ ଏବଂ ଏହା'ର ବର୍ଣ୍ଣ ନୀଳ ଅଟେ ।

ସନ୍ନ୍ୟାସୀଙ୍କର ଏତିକ ମାତ୍ର କଥାରେ ହଠାତ୍ ଉତ୍ଫୁଲ୍ଲିତପ୍ରାଣ ହୋଇ ନିଜକୁ ଚତୁର ବୋଲି ମନେକରୁଥିବା ଶୃଗାଳଟି ଆବେଗଭରା କଣ୍ଠରେ ଚିତ୍କାର କରିଉଠିଲା –"ଜାଣିଗଲି—ଜାଣିଗଲି—ଜାଣିଗଲି । ଅଲମତିବିସ୍ତରେଣ" ।

ଏତିକ ଉତ୍ଫୁଲ୍ଲବାକ୍ୟ ଉଚ୍ଚାରଣ କରି ଶୃଗାଳଟି ତତ୍କ୍ଷଣାତ୍ ନିଦ୍ରା ଭଙ୍ଗ କଲା ( ସୁଷୁପ୍ତି ଓ ଜାଗରଣ ଶଂସିତ ଶୃଗାଳଟିର ସ୍ୱେଚ୍ଛାଧୀନ ଅଟେ ) ଏବଂ ସନ୍ନ୍ୟାସୀଙ୍କର ଅବଶିଷ୍ଟ ସମୁଦ୍ର-ବର୍ଣ୍ଣନାକୁ କର୍ଣ୍ଣପାତ ନ କରି ତତ୍କ୍ଷଣାତ୍ ବିଳଶଯ୍ୟା ତ୍ୟାଗକରି ସମୁଦ୍ର ଉଦ୍ଦେଶ୍ୟରେ ଦକ୍ଷିଣ-ପୂର୍ବ କୋଣକୁ ଧାବମାନ ହେଲା ।

କିଛିବାଟ ଦୂର ଯିବା ଉତ୍ତାରୁ ଗୋଟିଏ ଜଳଭଣ୍ଡାର ତା'ର ଦୃଷ୍ଟିପଥାରୂଢ଼ ହେଲା । ନିଜକୁ ଚତୁର ବୋଲି ଭାବୁଥିବା ଶୃଗାଳଟି ନିରୀକ୍ଷଣ କରି ଦେଖିଲା ଯେ—ତାହାର ଜଳ ନୀଳିମାରେ ଆକାଶକୁ ଧିକ୍‌କାର କରୁଅଛି ।

ମହୋଲ୍ଲାସରେ ଗଦ୍‌ଗଦ୍ ହୋଇ ଶୃଗାଳଟି ସେ ନୀଳ ଜଳ-ଭଣ୍ଡାର ଭିତରକୁ ଲମ୍ଫ ପ୍ରଦାନ କଲା ।......

ଆହେ। ! ବିଧିର ବିଧାନ କି ବିଚିତ୍ର ଅଟଇ !! ସେହି ନୀଳ ଜଳଭଣ୍ଡାର ମଧ୍ୟରେ ଆକଣ୍ଠ ଅବଗାହନ କରି – ନିଜକୁ ଚତୁର ମନେ କରୁଥିବା ଶୃଗାଳଟି ଉତ୍‌ଫୁଲ୍ଲାତ୍ମା ହୋଇ କହିବାକୁ ଲାଗିଲା—

"ଧନ୍ୟୋଽହଂ ! ମୋର ସମସ୍ତ ପରିଭ୍ରମଣ ଏବଂ ଅନ୍ୱେଷଣ ଆଜି ସଫଳ ହେଲା । ଏହି ସୁନୀଳ ଓ ଶୀତଳ ସମୁଦ୍ରର ପ୍ରବାହ ଭିତରେ ଅବଗାହନ କରି ମୁଁ ବ୍ରହ୍ମାନନ୍ଦ ସହୋଦର ତୁଲ୍ୟ ଆହ୍ଲାଦ ଲଭୁଅଛି । ମୋର ସମସ୍ତ ତୃଷା ଆଜି ଶାନ୍ତ ହୋଇଅଛି । ବର୍ତ୍ତମାନ ମୁଁ ସ୍ୱର୍ଗଲୋକର ଅଧିବାସୀ ଅଟଇ ।"

ଏତାଦୃଶ ଆତ୍ମାନନ୍ଦ ଓ ଆତ୍ମଶ୍ଲାଘା ଅନୁଭବପୂର୍ବକ ଶୃଗାଳଟି ନିଜର ଶରୀର ଉପରେ ତା'ର ଦିବ୍ୟଦୃଷ୍ଟି ନିକ୍ଷେପ କଲା ଏବଂ ତତ୍‌କ୍ଷଣାତ୍ ନିଜ ଶରୀରର ବର୍ଣ୍ଣାନ୍ତର ଓ ବର୍ଣ୍ଣବିଭବ ନିରିକ୍ଷଣ କରି ସେ ଆହୁରି ଅଧିକ ଆତ୍ମିକ ଉଲ୍ଲାସ ଓ ଶ୍ଲାଘାରେ ସ୍ଫୀତ ଓ ପ୍ରକମ୍ପିତ ହୋଇ ଉଠି ମହୋଲ୍ଲାସରେ ଚିତ୍କାର କଲା –

ଅହୋ ଭାଗ୍ୟ ! ମୋର ଏହି ନର ଶରୀର ମଧ୍ୟ କି ଅପୂର୍ବ ସ୍ୱର୍ଗୀୟ ଜ୍ୟୋତିରେ ସମୁଜ୍ଜ୍ୱଳ ହୋଇ ଉଠିଅଛି !! ନିଶ୍ଚୟ ମୁଁ ଅମରଲୋକର ଅଧିବାସୀ ଅଟେ ।

ଏତାଦୃଶ ଭାବରେ ସେ ପ୍ରତ୍ୟକ୍ଷ ଓ ପରୋକ୍ଷ ରୂପାନ୍ତର ସନ୍ଦର୍ଶନ-କରତଃ ସ୍ୱୀୟ ମନଭିତରେ ମଧ୍ୟ ଏକ ପ୍ରଗାଢ଼ ଆଧ୍ୟାତ୍ମିକ ସାତ୍ତ୍ୱିକ ଆଲୋଡ଼ନ ଅନୁଭବ କଲା ଏବଂ ଏହି ମହାନୁଭବରେ ଅତ୍ୟଧିକ ଉନ୍ନତ ହୋଇ ସେ ପ୍ରାପ୍ତ କାଣ୍ଡଜ୍ଞାନବିସର୍ଜନପୂର୍ବକ ଭଗବତ୍‌ମହିମାକୀର୍ତ୍ତନରେ

ମୁଖର ହୋଇ ମହାନନ୍ଦରେ ନୃତ୍ୟ କରୁଥିଲା । ତା'ର ଉଦ୍ଦାମ ପ୍ରେମ-ନୃତ୍ୟର ମହାନନ୍ଦରେ ସଂକ୍ଷୁଦ୍ଧ ହୋଇ ତା'ର ଚତୁଃପାର୍ଶ୍ୱସ୍ଥ ଘନ ଜଳରାଶି ଆଲୋଡ଼ିତ ଓ ଫେନାୟିତ ହୋଇଉଠିଲା ଏବଂ ତାହା ଅଚିରେ ସମୁଦ୍ରର ରୂପ ପରିଗ୍ରହଣ କଲା ।

ମାତ୍ର ହାୟ ! ଈଶ୍ୱରଙ୍କ କି ବିଡ଼ମ୍ବନା ଅଟେ !! ବହୁରୂପିଣୀ ମାୟା କି ବିଚିତ୍ର ଅଟନ୍ତି !!' ନିଜକୁ ସମୁଦ୍ରବିଳାସୀ ବୋଲି ମନେକରୁଥିବା ସେହି ଶୃଗାଳଟିର ସମସ୍ତ ଆଧ୍ୟାତ୍ମିକ ସାତ୍ତ୍ୱିକ ଭାବର ମହୋଲ୍ଲାସମୟ ଆବେଗ-ଚଞ୍ଚଳ-ପରିପ୍ରକାଶ, ଅତି ସାଧାରଣସ୍ତରୀୟ ଶୃଗାଳମାନଙ୍କର ସେହି ଚିରାଚରିତ "ହୁକେ ହୋ – ହୁକେ ହୋ" ରବରେ ହିଁ ପର୍ଯ୍ୟବସିତ ହୋଇଉଠିଲା ।

ଅସିଦ୍ଧକାଳେ ପୂର୍ବ ପରିଷ୍କୃତ ଶୁଷ୍କ ବସ୍ତ୍ରଗୁଡ଼ିକୁ ସେହି ନୀଳ କୁଣ୍ଡରେ ନିମଜ୍ଜିତ କରିବାକୁ ମନସ୍ଥ କରିଥିବା ରଜକଟି ଗୋଟିଏ ଶୃଗାଳର କୋଳାହଳ ରବ ଶୁଣି, ତା'ର ନୀଳକୁଣ୍ଡ ସନ୍ନିକଟକୁ ଆସି ଦେଖେ ତ ଗୋଟିଏ ଅତି ସାଧାରଣ ଶୃଗାଳ—ସେହି ନୀଳକୁଣ୍ଡରେ ଅଧଃ-ପତିତ ହୋଇ—ତା'ର ନୀଳଜଳକୁ ଆଲୋଡ଼ନକରତଃ ମହୋଲ୍ଲାସରେ ନୃତ୍ୟପୂର୍ବକ ବିକଟ ରବ କରୁଅଛି ।

ଏତଦ୍ ଦୃଶ୍ୟ ଦର୍ଶନରେ ରଜକଟି କ୍ରୋଧରେ ଜରଜର ଓ କ୍ରୋଧର ଘୃଣାଭରେ ଗୋଟିଏ ଲଗୁଡ଼ ପ୍ରଦର୍ଶନପୂର୍ବକ ଶୃଗାଳଟିକୁ ତିରସ୍କାର କରିବାକୁ ଲାଗିଲା । ତା ଏବଂବିଧ--

"ଅରେ ରେ ଦୁଷ୍ଟ ଜମ୍ବୁକ ! ମୋହ ପ୍ରସ୍ତୁତ ଓ ମୋହ ସଞ୍ଚିତ ଏହି ନୀଳକୁଣ୍ଡରେ ଅବଗାହନ କରିବାର ଅଧିକାର ତୋତେ କିଏ ପ୍ରଦାନ କଲା ? ମୋର କୁଣ୍ଡ ଅପବିତ୍ର ଓ ଦୁଷ୍ଟ ହୋଇଅଛି । ସତ୍ୱର ଏ ମଧ୍ୟରୁ ପଳାୟନ କର, ନୋଚେତ୍ ଏହି ଲଗୁଡ଼ରେ ତୋର ମସ୍ତକ ଚୂର୍ଣ୍ଣ କରିବି ।"

ଆଧ୍ୟାତ୍ମିକ ଭାବରେ ସମୁଦ୍ରଗତପ୍ରାଣ ଶୃଗାଳଟି ମୁଖରେ ଈଷତ୍ ଉଦାର ଓ କାରୁଣ୍ୟପୂର୍ଣ୍ଣ ସ୍ମିତ ପ୍ରକାଶ କରି କହିଲା –

"ହେ ରଜକ ପୁଙ୍ଗବ ! ଲଗୁଡ଼ ସମ୍ବରଣ ପୂର୍ବକ କ୍ରୋଧ ସଂଯତ କର । କ୍ରୋଧ ଜୀବର ଘୋରତମ ଶତ୍ରୁ ଅଟେ । କ୍ରୋଧରୁ ମୋହ ଜାତ ହୁଏ ଏବଂ ମୋହରୁ ସ୍ମୃତି-ବିଭ୍ରମ ହୋଇଥାଏ । ସ୍ମୃତିବିଭ୍ରମ ହେତୁ ବୁଦ୍ଧି ନଷ୍ଟ ହୁଏ ଏବଂ ବୁଦ୍ଧି-ନାଶରୁ ବିନାଶ ନିଶ୍ଚିତଭାବେ ହୋଇଥାଏ । ହେ ରଜକପୁଙ୍ଗବ ! ତୁମ୍ଭ କଥିତ, ତୁମ୍ଭ ପ୍ରସ୍ତୁତ ଓ ତୁମ ସଞ୍ଚିତ ଏହି ନୀଳକୁଣ୍ଡ ଯେ ସମୁଦ୍ର ନୋହେ, ଏହା ତୁମ୍ଭେ ପ୍ରମାଣ କରିପାରିବ କି ? କାରଣ ସମୁଦ୍ର ମଧ୍ୟ ଜଳର ଭଣ୍ଡାର ଅଟେ ଓ ତା'ର ବର୍ଣ୍ଣ ନୀଳ ଅଟେ । ମୁଁ ସମୁଦ୍ରରେ ଅବଗାହନ କରୁଅଛି । ଏହି ନୀଳକୁଣ୍ଡ ନିଶ୍ଚୟ ସମୁଦ୍ର ଅଟେ ।"

ଆପାତତଃ ପ୍ରଜ୍ଞାପୂର୍ଣ୍ଣମାନ ହେଉଥିବା ସାମାନ୍ୟ ଶୃଗାଳଠାରୁ ଏତାଦୃଶ ତତ୍ତ୍ୱବାଣୀ ଶ୍ରବଣ କରନ୍ତେ ରଜକଟି ଲଗୁଡ଼ ସଂହତ କରି କିଞ୍ଚିତ୍ ନମ୍ର ଓ ବିସ୍ମୟ ସହକାରେ କହିଲା—

"ହେ ଶୃଗାଳକୁଳତିଳକ ! ସାମାନ୍ୟ ରଜକଦ୍ୱାରା ପ୍ରସ୍ତୁତ ଓ ସଞ୍ଚିତ ନୀଳକୁଣ୍ଡଟି କଦାପି ନ ସମୁଦ୍ର ହୋଇ ନ ପାରେ । ଏହା ସମୁଦ୍ରର 'ଭାନ'* ଅଟେ । ଆପଣ ସମୁଦ୍ରର 'ଭାନ'ରେ ନିମଜ୍ଜିତ ହୋଇଛନ୍ତି ।"

ଅକସ୍ମାତ୍ କ ଅଥଚ ଅଦ୍ଭୁତଭାବେ ଆଧ୍ୟାତ୍ମିକ ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ ଅନ୍ତର ଶୃଗାଳଟି ସ୍ମିତହାସ୍ୟ କରି କହିଲା—

"ତା' ହେଲେ ତୁମ୍ଭେ କାହାର 'ଭାନ' ଅଛ ? ଆମ୍ଭେ ମଧ୍ୟ କାହାର 'ଭାନ' ଅଛୁ ? ଏହା ନିରୂପଣ କରିଅଛ କି ? ଏ ଜଗତ୍ କାହାର 'ଭାନ' ଅଟେ—ଏହି ତତ୍ତ୍ୱ ତୁମ୍ଭର ଅଧିଗମ୍ୟ ହୋଇଅଛି କି ? ହେ ରଜକସତ୍ତ୍ୱ ! ବସ୍ତୁ ନୁହେ — ବସ୍ତୁର 'ଭାନ' ହିଁ ଏକମାତ୍ର ପ୍ରତ୍ୟକ୍ଷୀଭୂତ ସତ୍ୟ ଅଟେ । ମୁଁ ସେହି ସତ୍ୟକୁ ପ୍ରତ୍ୟକ୍ଷ କରିଅଛି ।"

ପରମବିସ୍ମୟ ଓ ଭକ୍ତି-ଗଦଗଦ ଚିତ୍ତରେ ରଜକଟି ତତ୍ପରତ୍ୟ ଆଭୂମିପ୍ରସାରିତ ହୋଇ ନୀଳକୁଣ୍ଡ-ଅଧଃପତିତ ସେହି ଶୃଗାଳଟିକୁ ଭୂମିଷ୍ଠ ପ୍ରଣାମ କରି କହିଲା —

---

* ଭାନ=ଛଳନା, ରୂପକ, ପ୍ରତୀତି ।

"ହେ ମହାତ୍ମନ୍ ! ମୋର ଅଜ୍ଞାନକୃତ ଦୋଷ କ୍ଷମା କରିବା ହୁଅନ୍ତୁ । ମୁଁ ମହାପାପୀ ଅଟେ । ମୁଁ ରଜକକୁଳର କଳଙ୍କ ଅଟେ । ଏହି ଲଗୁଡରେ ମୋର ମସ୍ତକ ଚୂର୍ଣ୍ଣ କରନ୍ତୁ ।"

ଏତିକ କହି ରଜକଟି ସାଷ୍ଟାଙ୍ଗ ପ୍ରଣିପାତ କରି ଭୂତଳରେ ପଡ଼ିଗଲା । ରଜକର ଏବଂଭୂତ ଅବସ୍ଥାନ୍ତର ସନ୍ଦର୍ଶନ କରି ଆକସ୍ମିକ ଓ ଅଦ୍ଭୁତଭାବେ ଆଧ୍ୟାତ୍ମିକ ତତ୍ତ୍ୱଜ୍ଞାନ ଲବ୍‌ଧ ହୋଇଥିବା ଶୃଗାଳଟିର ମନରେ ଏକ ନୂତନ ଧାରଣା ଜାତ ହେଲା । ସେ ମନେ କଲା କି—ସେ ଯଥାର୍ଥରେ ତତ୍ତ୍ୱଜ୍ଞାନ ଲାଭ କରିଅଛି । ଏତଦ୍ ଉତ୍ତାରୁ ସେ ଏହି ନବଲବ୍‌ଧ ଅଭିଜ୍ଞାନ ଓ ଅନୁଭୂତିକୁ ପ୍ରଚାର କରିବାଲାଗି ଅଗ୍ରସର ହେବ । ସମଗ୍ର ପୃଥିବୀ ପ୍ରଦକ୍ଷିଣ କରି ସେ ପାର୍ଥିବ ବସ୍ତୁଜ୍ଞାନରେ ମୂଢ଼ଚେତା ପ୍ରାଣୀମାନଙ୍କୁ ତତ୍ତ୍ୱଜ୍ଞାନ ଏବଂ ମହାଭାବରେ ଦୀକ୍ଷା ଦେଇ ମୁକ୍ତିର ପଥ ଦର୍ଶାଇବ ।

ଏତଦ୍ ଭାବ-ଭାବନା-ସଂବଳିତ-ମାନସ ସେହି ଶୃଗାଳଟି ନୀଳ-କୁଣ୍ଡରୁ ତତ୍‌କ୍ଷଣାତ୍ ବହିର୍ଗତ ହୋଇ ପ୍ରଥମେ ରଜକଟିର ମସ୍ତକ ସ୍ପର୍ଶପୂର୍ବକ କହିଲା—

"ହେ ରଜକ-ଧୀରୋଦାତ୍ତ ! ଉତ୍ତିଷ୍ଠତ । ତୁମ୍ଭର ଅଭୀଷ୍ଟ ନିର୍ଭୟରେ ପ୍ରାର୍ଥନା କର । ବୃଥା ଅନୁଶୋଚନାରେ କାଳକ୍ଷେପଣ କରିବା ଅନୁଚିତ୍ ।"

ତଥାପି ରଜକଟି ଭୂମିଲଗ୍ନ ହୋଇ ପ୍ରାର୍ଥନା କଲା ...

"ମହାତ୍ମନ୍ ! ଆପଣ ତତ୍ତ୍ୱଦର୍ଶୀ । ମୋତେ କିଛି ତତ୍ତ୍ୱ ଦୀକ୍ଷା ଦିଅନ୍ତୁ—ଏହି ନାରକୀୟ ରଜକବୃତ୍ତିରୁ ମୁଁ କିପରି ମୁକ୍ତି ଲାଭ କରେଁ ।"

ଶୃଗାଳଟି କିଞ୍ଚିତ୍ ଗମ୍ଭୀରତା ପ୍ରକାଶପୂର୍ବକ କହିଲା—

"ରଜକୋତ୍ତମ ! ଏହି ବୃତ୍ତି ତୁମ୍ଭ ଲାଗି ସର୍ବୋତ୍ତମ ଅଟେ । ତୁମ୍ଭେ ନିତ୍ୟ ଏହି ନୀଳକୁଣ୍ଡକୁ ସମୁଦ୍ର ଜ୍ଞାନରେ ପ୍ରଦକ୍ଷିଣ କର ଏବଂ ଏହାର ନୀଳଜଳକୁ ହସ୍ତଦ୍ୱାରା ନିତ୍ୟ ଆଲୋଡ଼ନ କର, ତୁମ୍ଭର ମୁକ୍ତି ଅବଶ୍ୟମ୍ଭାବୀ ।"

ଏତିକ କହି ପୃଥିବୀର ମୃତ୍ୟୁଚେତାମାନଙ୍କୁ ମୁକ୍ତିର ବାର୍ତ୍ତା ଶୁଣାଇବା ଲାଗି ସେହି ନୀଳବର୍ଣ୍ଣର ଶୃଗାଳଟି ଅନ୍ୟ ଦିଗକୁ ଧାବମାନ ହେଲା ।

ତସ୍ମିନ୍ ସମୟେ ସନ୍ଧ୍ୟା ଆଗତପ୍ରାୟ । ପକ୍ଷୀଗଣ ସ୍ୱ ସ୍ୱ ନୀଡ଼ାଭିମୁଖେ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି । ଆକାଶର ପ୍ରାୟାନ୍ଧକାର ପରିବେଶରେ ଅଧୁନାଶ କତିପୟ ଜ୍ୟୋତିଷ୍କ ତାରକା ସ୍ୱୀୟ ଦୀପ୍ତିରେ ଦେଦୀପ୍ୟମାନ ହେବାକୁ ଚେଷ୍ଟିତ ହେଉଅଛନ୍ତି । ତଥାପି ଅସ୍ତଗାମୀ ଅଂଶୁମାଳୀଙ୍କର ଗତପ୍ରାୟ କନକାଭ କିରଣର ଅପସୃୟମାନ ଆଲୋକର ପ୍ରଭାବରେ ବାରୁଣୀ ଦିଗ୍‌ବଧୂଙ୍କର ମୁଖଶ୍ରୀ ଅପୂର୍ବ ଐନ୍ଦ୍ରଜାଲିକ ବର୍ଣ୍ଣବିଭବରେ ଉଦ୍ଭାସିତ ହୋଇଅଛି । ଅପରଦିଗରେ ଭଗବାନଚନ୍ଦ୍ରଙ୍କର ଅମୃତୋପମ ଅଧରସ୍ପର୍ଶ ଲାଭକରି ପୂର୍ବଦିଗ୍‌ବଧୂଙ୍କର ମୁଖଶୋଭା ସୁଧାଧବଳିତ କାନ୍ତିରେ ସ୍ୱର୍ଗର ପାରିଜାତ ପୁଷ୍ପକୁ ମଧ୍ୟ ଲଜ୍ଜାରେ ମ୍ରିୟମାଣ କରୁଅଛି ।

ଏହି କାଳସନ୍ଧିକୁ ଅଙ୍ଗୀକାରପୂର୍ବକ ଉଦାତ୍ତ କଣ୍ଠରେ ଘୋଷଣା କରିବାର ଦାୟିତ୍ୱକୁ ସମୁଚିତ ପାଳନ କରିବା ଲାଗି ଉଦ୍ୟତ ହେଉଥିବା ଏକଦଳ ଶୃଗାଳଙ୍କର ସମବେତ ଦୃଷ୍ଟି ଏହି ନୀଳବର୍ଣ୍ଣର ଶୃଗାଳଟି ଉପରେ ପତିତ ହୁଅନ୍ତେ – ସେମାନେ ସମବେତ କଣ୍ଠରେ କଞ୍ଚିତ୍ ପାର୍ଥିବ ସହାନୁଭବବ୍ୟଞ୍ଜକ ସମ୍ଭାଷଣ କରିଉଠିଲେ –

"ଅହୋ ! ଅହୋ ! ପଶ୍ୟ, ପଶ୍ୟ, କୀଦୃଶ ସୁନୀଳରଙ୍ଗ-ରଞ୍ଜିତ-ବପୁଧର ଅସ୍ମାକଂ ସ୍ୱଜାତି-ଭ୍ରାତା ଶ୍ରୀମାନ୍ ଜମ୍ବୁକନୀଳମଣି ଆଗଛନ୍ତି ! ଭୋ ଭୋ ଭ୍ରାତଃ ! ତ୍ୱମ୍ୟେ କସ୍ୟଚିଦ୍ ରଜକର ନୀଳକୁଣ୍ଡରେ ଅକସ୍ମାତ୍ ପତିତ ହୋଇଥିଲ କି ? ହେ ଭଦ୍ର ! ଏହା ତୁମ୍ଭ ପକ୍ଷରେ ଆକସ୍ମିକ ଦୁର୍ଘଟଣା ? କିମ୍ବା ଏହି ପତନରୁ ତୁମ୍ଭେ କୌଣସି ପ୍ରକାରେ ଲାଭବାନ୍ ହୋଇଅଛ ? ଏହି ବର୍ଣ୍ଣାନ୍ତର ତୁମ୍ଭ ପକ୍ଷରେ ମଙ୍ଗଳ ହୋଇଅଛି କି ? ହେ ଭଦ୍ର ! କଥମେତତ୍ ? ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ୍ କରି ଅସ୍ମାକଂ ଉତ୍କଣ୍ଠା ଦୂର କର ।"

ଏହି ପାର୍ଥିବ ରାଗରସପରିପୂର୍ଣ୍ଣ ହୃଦୟ – ଯଥାର୍ଥ ଜ୍ଞାନମୃତ ପରିହାସପରାୟଣ ଶୃଗାଳମାନଙ୍କର ଇତର-ଜନ-ପ୍ରଯୋଜ୍ୟ ଗ୍ରାମ୍ୟ

ବ୍ୟଙ୍ଗୋକ୍ତି ସମ୍ଭ ଷଣରେ କଞ୍ଚନ୍ ରୁଷ୍ଟ ହୋଇ ମୋକ୍ଷଧର୍ମପ୍ରବୃତ୍ତକାମୀ ନୀଳବର୍ଣ୍ଣର ଶୃଗାଳଟି କହିଲା—

"ଅରେ ରେ ମୂଢ଼ାଃ !! ଆମ୍ଭେ ତୁମ୍ଭମାନଙ୍କ ସଦୃଶ ସାଧାରଣ ଶୃଗାଳ ନୋହୁଁ । ଆମ୍ଭର ତତ୍ତ୍ୱଜ୍ଞାନ ଉଦ୍ଭବ ହୋଇଅଛି । ଆମ୍ଭ ଶରୀରର ଏହି ରଙ୍ଗ ସାମାନ୍ୟ ନୀଳ ନୁହେଁ, ଏହା ସ୍ୱର୍ଗୀୟ ଜ୍ୟୋତି ବିଚ୍ଛୁରିତ କରୁଅଛି । ମହାକାଶର ସେହି ଜ୍ୟୋତି ମହାସମୁଦ୍ରର ଜଳରାଶିରେ ନୟୁତ ପ୍ରତିଫଳିତ ହୁଏ ତାହା ହିଁ ମୋର ଶରୀରକୁ ନୀଳଶ୍ୟାମବର୍ଣ୍ଣରେ ଉଦ୍ଭାସିତ କରୁଅଛି । ସର୍ବତୀର୍ଥ ଶ୍ରେୟ ମହାସମୁଦ୍ରରେ ଅବଗାହନ କରି ମୁଁ ଅଧୁନା ମହାପୁଣ୍ୟଫଳର ଅଧିକାରୀ ଅଟେ । ମୋର ବସ୍ତୁ ସମ୍ପର୍କରେ ସ୍ଥୂଳ ଓ ସୂକ୍ଷ୍ମ ଉଭୟ ଜ୍ଞାନରେ ଅଧିକାର ଆସିଅଛି । ମୋର ଚିତ୍ତଦର୍ପଣରେ ସତ୍ୟର ସ୍ୱରୂପ ଓ ତାକୁ ଉପଲବ୍ଧି କରିବାର ଏବଂ କରାଇବାର ପନ୍ଥା ନିରନ୍ତରରେ ପ୍ରତିବିମ୍ବିତ ହୋଇସାଇଛି । ବସ୍ତୁ ଓ ତାର ବିମ୍ବ ଏବଂ ପ୍ରତିବିମ୍ବ ସମ୍ବନ୍ଧୀୟ ଜ୍ଞାନ ମୋର ପ୍ରତ୍ୟକ୍ଷୀଭୂତ ହୋଇଅଛି । ହେ ମୂଢ଼ଚେତା ଶୃଗାଳଗଣ ! ତୁମ୍ଭେମାନେ ତତ୍ତ୍ୱଦର୍ଶୀ ହେବାକୁ ଇଚ୍ଛା କର କି ? ତୁମ୍ଭେମାନେ ମତ୍ସଦୃଶ ଆଧ୍ୟାତ୍ମିକ ଜ୍ଞାନ ଓ ଭବ-ରାଜ୍ୟରେ ବିଳସିତ ହେବାକୁ ଚାହୁଁ ଅଛ କି ? ତୁମ୍ଭେମାନେ ମୋକ୍ଷପ୍ରାପ୍ତ ହେବ କି ?

ନୀଳବର୍ଣ୍ଣର ଶୃଗାଳମୁଖରୁ ଏତଦ୍ ବାଗ୍‌ବିଳାସ ଶ୍ରବଣରେ ସମବେତ ସାଧାରଣ ଶୃଗାଳମାନଙ୍କ ମଧ୍ୟରୁ ଏକ ଅସାଧାରଣ ଶୃଗାଳୋଚିତ-ଧୀଶକ୍ତିବାନ୍ ବିଦଗ୍‌ଧବାକ୍ ଯୁବକ ବହିର୍ଗତ ହୋଇ କହିଲା—

"ହେ ପ୍ରମୁକ୍ତ ! ଆମ୍ଭମାନଙ୍କ ଧୃଷ୍ଟତା ମାର୍ଜନା କରିବା ହେଉନ୍ତୁ । ଆମ୍ଭେମାନେ ଯଥାର୍ଥରେ ମୂଢ଼ ଅଟୁଁ; କିନ୍ତୁ ଆମ୍ଭେମାନେ ମଧ୍ୟ ଆପଣଙ୍କ ପରି ଏତାଦୃଶ ତତ୍ତ୍ୱଜ୍ଞାନର ବାଣୀ ଆମ୍ଭ ମୁଖରୁ ପ୍ରକାଶ କରିପାରୁଁ ଏବଂ ତାହା ଅବିକଳ ଆପଣଙ୍କ ମୁଖନିଃସୃତ ତତ୍ତ୍ୱବାଣୀ ପରି ଶୁଣାଯାଉଛି କି ନାହିଁ—ତାହା ଆପଣ ସ୍ୱୟଂ ପରୀକ୍ଷା କରି ଦେଖିବା ହୁଅନ୍ତୁ ।"

ସାଧାରଣ ଶୃଗାଳ ଯୁବକଟିର ଏତାଦୃଶ ପ୍ରଗଳ୍‌ଭ ଔଦ୍ଧତ୍ୟ ଓ ପୌରୁଷବାଣୀ ଶ୍ରବଣ କରି ଆଧ୍ୟାତ୍ମିକ ତତ୍ତ୍ୱଜ୍ଞାନ ଲାଭ କରିଥିବା ଓ

ନିଜକୁ ମୋକ୍ଷପଥପ୍ରଦର୍ଶନକାରୀ ବୋଲି ଭାବୁଥିବା ସେହି ଶୃଗାଳଟି କର୍କଶ ଶ୍ଳେଷବାଣୀ ଉଚ୍ଚାରଣ କରି କହିଲା—

"ଅରେ ମୂର୍ଖ ! ଆଧ୍ୟାତ୍ମିକବାଣୀ କେବଳ ମୁଖର ବାଣୀ ନୁହେ । ଏହା ଆତ୍ମାର ନିଜସ୍ୱ ଉପଲବ୍‌ଧିର ବାଣୀ ଅଟେ ! ଏହା ସ୍ୱୟଂଭୂ ଏବଂ ବ୍ରହ୍ମର ସ୍ଫୋଟମୟ ପରିପ୍ରକାଶ ମାତ୍ର । ଏହି ଅଲୌକିକ ବାଣୀକୁ ତୁମ ପରି ମୂଢ଼ଚେତନ ବ୍ୟକ୍ତି କେବଳ ଜିହ୍ୱା, ଓଷ୍ଠ, ତାଲୁ ବା ନାସିକାଦିର ସଂଯୋଗରେ ଉଚ୍ଚାରଣ ମଧ୍ୟ କରିପାରିବ ନାହିଁ । ଅନୁକରଣ ତ ଦୂରର କଥା !"

ନିଜର ପୌରୁଷ ଉପରେ ଅତ୍ୟଧିକ ଆସ୍ଥାଶୀଳ ଏବଂ ଆପଣାର ବୁଦ୍ଧିଚାତୁର୍ଯ୍ୟ ଉପରେ ଅଧିକ ଉଦ୍ଧତ ଯୁବକ ଶୃଗାଳଟି ପୁନଶ୍ଚ କହିଲା—

"ହେ ତତ୍ତ୍ୱଦର୍ଶୀ ! କାଳମତିକ୍ରମଣେଣ । ଆପଣ ଅନୁଗ୍ରହ-ପୂର୍ବକ ଆପଣଙ୍କ ଆଧ୍ୟାତ୍ମିକ ତତ୍ତ୍ୱାନୁଭୂତିର ସଂକୀର୍ତ୍ତନ କରନ୍ତୁ ତ ଦେଖି !"

ଆପଣାକୁ ଏକମାତ୍ର ତତ୍ତ୍ୱଦର୍ଶୀ ଓ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ବୋଲି ମନେକରୁଥିବା ଶୃଗାଳଟି ହଠାତ୍ ସାତ୍ତ୍ୱିକ ଭାବରେ ଉଲ୍ଲସିତପ୍ରାଣ ହୋଇ ଭଗବତ୍ ମହିମା କୀର୍ତ୍ତନ କରିଉଠିଲା—

"ହୁକେ ହୋ—ହୁକେ ହୋ—ହୁକେ ହୁକେ ହୋ—ହୋ ହୋ !!"

ସଙ୍ଗେ ସଙ୍ଗେ ସେହି ପ୍ରଗଳ୍‌ଭ ଉଦ୍ଧତ ଶୃଗାଳ ଯୁବକଟି ସମେତ ସମବେତ ଶୃଗାଳ ସମ୍ପ୍ରଦାୟ ସେହି ଶବ୍ଦପ୍ରବାହକୁ ଅବିକଳ ଅନୁକରଣ କରି ବୋବାଇ ଉଠିଲେ—

"ହୁକେ ହୋ—ହୁକେ ହୋ—ହୁକେ ହୁକେ ହୋ—ହୋ—ହୋ !!"

ଏତଦ୍ ଶ୍ରବଣରେ ଆପଣାକୁ ଏଯାବତ୍ ଏକମାତ୍ର ତତ୍ତ୍ୱଦର୍ଶୀ ଓ ଆଧ୍ୟାତ୍ମିକ ଚେତନାରେ ଉଦବୁଦ୍ଧ ବୋଲି ମନେକରୁଥିବା ଶୃଗାଳଟି ଏହି ସମବେତ ଚିତ୍କାର ମଧ୍ୟରୁ ଆପଣା ଧ୍ୱନିର ଅବିକଳ ପ୍ରତିରୂପ ବାଣୀ

ପ୍ରତିଧ୍ୱନି ସ୍ୱରୂପ ଲକ୍ଷ୍ୟକରି ହତୋତ୍ସାହ ନ ହୋଇ ବରଂ ଅଧିକ ଉଲ୍ଲାସରେ ବୋବେଇ ଲାଗିଲା ଓ ବୋବାଉ ବୋବାଉ ନୃତ୍ୟ ମଧ୍ୟ ଆରମ୍ଭ କରିଦେଲା ।

କାରଣ ତା'ର ମନେହେଲା—ଏହି ସମବେତ ସାଧାରଣ ଶୃଗାଳମାନଙ୍କ ମୁଖନିଃସୃତ "ହୁକେ ହୋ" ଚିତ୍କାର ମୋର ନିଜସ୍ୱ ଉପଲବ୍ଧିର ଧ୍ୱନି ହୋଇ ନ ପାରେ, ମାତ୍ର ତା'ର ଅବିକଳ ପ୍ରତିରୂପ ଅଟେ ଏବଂ ଯେହେତୁ ଏ ଜଗତରେ 'ବସ୍ତୁ' ଅପେକ୍ଷା ବା 'ସତ୍ୟ' ଅପେକ୍ଷା କେବଳ 'ସତ୍ୟ'ର 'ଭାନ' ହିଁ ଅଧିକ ସତ୍ୟ ଏବଂ ଯେହେତୁ "ରୂପ" ଅପେକ୍ଷା 'ରୂପକ' ଓ 'ଧ୍ୱନି' ଅପେକ୍ଷା "ପ୍ରତିଧ୍ୱନି" ହିଁ ପ୍ରାଣୀମାନଙ୍କର ଉପଲବ୍ଧି ଓ ତା'ର ପ୍ରକାଶ ଲାଗି ଏକମାତ୍ର ଅବଲମ୍ବନ —ସେହେତୁ ଆଉ ବୃଥା ସନ୍ଦେହ ଲାଗି ଅବକାଶ ନ ଦେଇ—ଏହି ସମବେତ "ହୁକେ ହୋ" ରବ ସଙ୍ଗେ ନିଜର "ହୁକେ ହୋ" ରବକୁ ମିଶାଇଦେଇ ଏକ ପୂର୍ଣ୍ଣସତ୍ୟରୂପେ ମନେକରିବା ଉଚିତ ଏବଂ ଏହି ଧ୍ୱନିର ସମବେତ ଅବିକଳ ପ୍ରତିଧ୍ୱନି ହିଁ ଯଥାର୍ଥରେ ଭଗବତ୍ ସଂକୀର୍ତ୍ତନ ଅଟେ । ତେଣୁ ଅଗତ୍ୟା ମୋ ପକ୍ଷରେ ଏଇ ଇତର ସାଧାରଣ ଶୃଗାଳମାନଙ୍କ ମଧ୍ୟରେ କିଛିଦିନ ବାସ କରି—ଏହିମାନଙ୍କ ସଙ୍ଗେ ମିଳିତ ସ୍ୱରରେ ପ୍ରତିଦିନ "ହୁକେ ହୋ" ରବ କରି ଭଗବତ୍ ମହିମା କୀର୍ତ୍ତନ କରିବା ବିଧେୟ ଅଟେ । କାରଣ ଜଗତର ସମସ୍ତ ପ୍ରକାଶମାନ ରୂପ ଆପାତତଃ ସେହି ଅପ୍ରକାଶ୍ୟ ମୌଳରୂପର ବିକୃତ ରୂପକ ଅଟେ ଓ ସମସ୍ତ ପ୍ରକାଶମାନ ଧ୍ୱନି ସେହି ଅପ୍ରକାଶ୍ୟ ମୌଳଧ୍ୱନିର ବିକୃତ ପ୍ରତିଧ୍ୱନି ଅଟେ । ମାତ୍ର ମୌଳସତ୍ୟ ଓ ତା'ର ଏବଂବିଧ ବିକାର, ଉଭୟେ ପରସ୍ପରର ପରିପୂରକ ହେବାକୁ ବାଧ୍ୟ ଅଟନ୍ତି ।······ଅହୋ ! ଏ ଜଗତ୍ କି ବିଚିତ୍ର ଅଟଇ ! !

ଅତଃପର ସେହି ଶୃଗାଳମାନେ ଦିବା ଓ ରାତ୍ରିର ସେହି ବିଚିତ୍ର କାଳ-ସନ୍ଧିରୂପା ସନ୍ଧ୍ୟାଦେବୀଙ୍କର ନିଃଶବ୍ଦ ଗତିଶବ୍ଦକୁ ବିନମ୍ର ଅଙ୍ଗୀକାର-ପୂର୍ବକ ପ୍ରତ୍ୟକ୍ଷଭାବେ ସ୍ତୁତିବନ୍ଦନା ଗାଇଉଠିଲେ—

ହୁକେ—ହୁକେ – ହୁକେ ହୋ –

ହୋ – ହୋ—ହୋ—

ଗୋଟିଏ ଶୃଗାଳଶିଶୁ ବଯୁସ୍କମାନଙ୍କର ଏହି ସମବେତ ନଗର-କୀର୍ତ୍ତନ ଶ୍ରବଣରେ ଅତ୍ୟଧିକ ଉତ୍ସାହିତ ହୋଇ—ଅଥଚ ଏହି ଶବ୍ଦ-ପ୍ରବାହର କିଛୁ ଅର୍ଥ ବା ଉଦ୍ଦେଶ୍ୟ ନ ବୁଝି ମଧ୍ୟ ଓ ଏହି ମନ୍ତ୍ରଧ୍ୱନିକୁ ଶୁଦ୍ଧ ଓ ସ୍ପଷ୍ଟଭାବେ ଉଚ୍ଚାରଣ କରିବାକୁ ଅକ୍ଷମ ହୋଇଥିଲେ ସୁଦ୍ଧା ବାଲୋଚିତ ଅସ୍ଫୁଟ କଣ୍ଠରେ ବୋବେଇ ଉଠିଲା—ହୁଆ, ହୁଆ – ହୁଆ—ହୁଆ ।

ହୁଆ – ହୁଆ—ହୁଆ—ଆ-ଆ ।

ଶୃଗାଳଶିଶୁଟିର ଏହି ଅସ୍ଫୁଟ ଅର୍ଥହୀନ, ଚପଳ ଅଥଚ ସୁଧା-ମଧୁର କଣ୍ଠଧ୍ୱନିର ଶ୍ରବଣରେ ସେହି ସମୁଦ୍ରତଟଚାରୀ ମାଳବର୍ଣ୍ଣର ଶୃଗାଳଟିର ଜ୍ଞାନ, ପ୍ରେମ ଓ ଭକ୍ତିଉଦ୍‌ଗତ ଚିତ୍ତରେ ଏକ ଅପୂର୍ବ ବାତ୍ସଲ୍ୟ-ମମତା ଜାଗ୍ରତ ହୋଇଉଠିଲା । ସେ ତତ୍‌କ୍ଷଣାତ୍ ପ୍ରଗାଢ଼ ବାତ୍ସଲ୍ୟଭାବରେ ଅନୁପ୍ରାଣିତ ହୋଇ, ସେହି ଶୃଗାଳଶିଶୁଟିକୁ ନିବିଡ଼ ଆଲିଙ୍ଗନପୂର୍ବକ ତା'ର କ୍ଷୁଦ୍ର ଅବୋଧ ଓ ନିଷ୍ପାପ ଜୁଳୁଜୁଳୁ ଚକ୍ଷୁ ଦୁଇଟିରେ ଓ ତା'ର କ୍ଷୁଦ୍ର ଚିବୁକସମେତ ଅଧର କପୋଳପୁଟରେ ବାରମ୍ବାର ବାତ୍ସଲ୍ୟ ଚୁମ୍ବନ ପ୍ରଦାନକରିତଃ ହର୍ଷକମ୍ପିତ ବେଦନାର୍ତ୍ତ କଣ୍ଠରେ କହିଲା—ଅରେ ଦୁଷ୍ଟ ! ! ଅରେ ଅବୋଧ ! !

କ୍ୟା ହୁଆ ? କ୍ୟା ହୁଆ ? କ୍ୟା ହୁଆ ?

—୦—

# ଶବଯାତ୍ରାର ଶେଷଦୃଶ୍ୟ

ଶବଟି ମହାସମାରୋହରେ ମଶାଣୀକୁ ବାହାରିବା ପରେ ଯାଇ ମୁଁ ମୋ ଅଫିସରେ ଖବରଟି ପାଇଲି । ମାତ୍ର ଖବରଟି ଯେ ଦେଲେ ସେ ଆମ ପ୍ରହ୍ଲାଦ ବାବୁଙ୍କ ଅଭ୍ୟନ୍ତରୀ ପତ୍ନୀ । ସେ ଏଠି ଆମ ବଡ଼ସାହେବଙ୍କ ଷ୍ଟେନୋ । ସେ ହଠାତ୍ କରିଡର୍‌ରେ ମୋ ସଙ୍ଗେ ଦେଖା ହେଲେ ଓ କହିଲେ—ଶୁଣିଲେଣି ? ମୁଁ କହିଲି -କୋଉ କଥା ମହାରାଣୀ ? ସେ କହିଲେ, ସୁରବାବୁ ଚାଲିଗଲେ । ମୁଁ କହିଲି—ଆଃ ! କେବେ ? କୋଉଠିକି ? ସେ କହିଲେ—କାଲିରାତି ଦୁଇଟା ବେଳେ—ହାର୍ଟଫେଲ —ସ୍ୱର୍ଗକୁ । କହୁ କହୁ ଶ୍ରୀମତୀ ପ୍ରହ୍ଲାଦ କାନ୍ଦ ପକାଇବେ ବୋଲି ହେଲେ । ସେ ରୁମାଲଟି ଆଖି ଉପରେ ଲଗାଇ ନାହାନ୍ତି—ତାଙ୍କର ଚପ୍ରାସୀ ଆସି ସାଂଙ୍କେତିକଦମ୍‌ରେ ଜଣାଇଲେ—ଆଜ୍ଞା, ସାହେବ ଡାକୁଛନ୍ତି । ସେ ସଙ୍ଗେ ସଙ୍ଗେ କାନ୍ଦରୁ ରକ୍ଷା ପାଇ କୃତଜ୍ଞ ଓ ଆଶ୍ୱସ୍ତ ହେଲାଭଳି ଜଣା ପଡ଼ିଲେ ଓ ବେହେଣ୍ଟ ପଛ ପଟ ତରବର ହୋଇ ଚାଲିଗଲେ । ମୁଁ କେବଳ ପଚାରିଦେଲି—ଶବ ଗଲଣି ମଶାଣିକି ? ସେ କହିଲେ - ହଁ ! ସକାଳ ଦଶଟାରୁ ପ୍ରୋସେସନ୍ ବାହାରିଲଣି । ମସ୍ତ ପ୍ରୋସେସନ୍, ପହଁଚ ନଥିବ – ଆପଣ ଯାନ୍ତୁ ।

ଅତଃପର ମୁଁ ଚିନ୍ତିତ ହେଲି । କଣ କରିବା ଉଚିତ ? ଏଭଳି ଗୋଟାଏ ସମ୍ବାଦ ମୋର ନପାଇବା ଉଚିତ ହୋଇଥାନ୍ତା । କାରଣ ଜୀବନ ପରେ ପାଇଥିଲେ ଚଳିଥାନ୍ତା । ମରିଯାଇଥିବା ଲୋକଙ୍କ ସଙ୍ଗେ ସଂପର୍କ ରଖିଲେ ମହା ହଇରାଣ । ପ୍ରେତମାନଙ୍କ ଅବତରଣ ଲାଗି ମୁଁ ପୁଣି ଦୁର୍ଭାଗ୍ୟକ୍ରମେ ଗୋଟାଏ ପ୍ରଥମଶ୍ରେଣୀର ମିଡ଼ିଅମ୍ । କେତେଥର ତିନିଗୋଡ଼ିଆ ଟେବୁଲ୍ ଉପରେ ତାହା ପ୍ରମାଣିତ ହୋଇ ଯାଇଛି । ମୀନକେତନ ପୃଜାରୀ ପ୍ରେତତତ୍ତ୍ୱ ଓ ଥିଓସୋଫିକାଲ ସୋସାଇଟିର ପ୍ରେସିଡେଣ୍ଟ । ତାଙ୍କ ଘରେ ପ୍ରତି ଅମାବାସ୍ୟାରେ ଚକ୍ର ବସୁଥିଲା । ମୁଁ ସେଥିରେ ନିୟମିତ ଯୋଗ ଦେଉଥିଲି । ମୋ ଉପରେ ଦେଇ ସେ ଯାବତୀୟ ପ୍ରେତଙ୍କୁ ସେପାରିରୁ ଏପାରିକି ଓହ୍ଲାଇ ଆଣନ୍ତି । ଏ ଅମା-

ବାସ୍ୟାଙ୍କେ ଓ୍ୟାନ୍ଦ୍ର ଜଣେ ମହାତ୍ମା ଆସିବେ ତ, ତା'ପର ଅମାବାସ୍ୟାରେ ଆସିବେ ଜଣେ ପ୍ରସିଦ୍ଧ ଡାକୁ ସର୍ଦ୍ଦାର । ପ୍ରଥମେ ପ୍ରଥମେ ଭାରି ମଜା ଲାଗୁଥିଲା । କିନ୍ତୁ ପରେ ପରେ ନାନାପ୍ରକାର ପ୍ରେତଙ୍କ ଅବତରଣର ନାନାପ୍ରକାର ସର୍ବଗର୍ଭୀ ପ୍ରତିକ୍ରିୟାରେ ମୁଁ ବିବ୍ରତ ହୋଇ ପଡ଼ିଲି । ଏସବୁ ବ୍ୟାପାରରେ ମିଡ଼ିଅମ ହେବା ବଡ଼ ସାଂଘାତିକ କଥା । ମହାତ୍ମାଙ୍କ ପ୍ରେତ ତୁମ ଦେହରେ ଓହ୍ଲାଇଲେ ତୁମେ ଖୁବ ଭଲ ବୋଧ କରିବ ଓ ଡାକୁ ସର୍ଦ୍ଦାର ପ୍ରେତ ଓହ୍ଲାଇଲେ ତୁମକୁ ଭାରି ଅଶ୍ୱସ୍ତି ଲାଗିବ—ଏକଥା ଠିକ୍ ନୁହଁ । ପ୍ରେତମାନେ ପ୍ରେତ । ଡାକୁର ପ୍ରେତ ଓ ମହାତ୍ମାଙ୍କ ପ୍ରେତ ଜୀଅନ୍ତା ମଣିଷକୁ ମିଡ଼ିଅମ ପାଇଲେ ସମାନ ଭାବେ କାବୁ କରି ଦିଅନ୍ତି ଓ ତାକୁ ମୋଡ଼ମାଡ଼ି ତା' ପାଟିରୁ ବାଜ୍‌ବାଜ୍ ଫେଣ ବାହାର କରି ଦିଅନ୍ତି । ଏକାକଥା । ମହାତ୍ମାଙ୍କ ପ୍ରେତ କହିବ ସେ ଡାକୁସର୍ଦ୍ଦାରକୁ ପ୍ରେମରେ ଆଲିଙ୍ଗନ କରୁ । ଡାକୁସର୍ଦ୍ଦାରଙ୍କ ପ୍ରେତ କହିବ—ସେ ମହାତ୍ମାଙ୍କର ଛାତିରେ ଛୁରି ଭୁଷି ମାରିଦେ । ଆରେ ଭାଇ ! ଆମ ଭଳି ଜୀଅନ୍ତା ମଣିଷଙ୍କ ପକ୍ଷରେ ଉଭୟ ଅତି କଷ୍ଟକର ଓ ଉଭୟ ପ୍ରକାର ଅନ୍ତଃପ୍ରବେଶ ଅତୀବ ପୀଡ଼ାଦାୟକ ତଥା ଜ୍ୱାଳାତନ ବ୍ୟାପାର । ଏତେ ପ୍ରେମ ଓ ଏତେ ହିଂସାଠାରୁ ଆମ୍ଭେମାନେ ସାଧାରଣ ଲୋକେ ବହୁଦୂରରେ ଥାଇ ସର୍ବଦା ନିରୁପଦ୍ରବ ଶାନ୍ତିରେ ବାସ କରିଥାଉଁ ।

ମୁଁ ଏବେ ଆଉ ସେ ଚକ୍ରକୁ ଯାଉନି । ମୋର ଭୟ ହୋଇ—ଗଲାଣି । ସେତେବେଳେ ତ ଯାହା କଷ୍ଟହୁଏ । ପରେ ପୁଣି ଭାରି ଅବଶ ଓ ବୋଗା ବୋଗା ଲାଗେ । ଭାରି ବିଷର୍ଣ୍ଣ ଓ ଏକୁଟିଆ ଲାଗେ । ଅଯଥାରେ ସବୁବେଳେ ପାଟିରୁ ଲାଳ ବହେ ଓ ଘୁମ ଘୁମ ଲାଗେ । ବୋଧହୁଏ ଯେପରି ମୁଁ ସବୁବେଳେ ଚନ୍ଦ୍ର ଲୋକରେ ରହୁଛି ଓ ସ୍ୱପ୍ନ ଦେଖୁଛି । କିମ୍ବା ଅନ୍ୟମାନେ ମୋତେ ସ୍ୱପ୍ନରେ ଦେଖୁଛନ୍ତି – ମୁଁ ବୋଲି ସତରେ କିଛି ବ୍ୟକ୍ତି ବା ବସ୍ତୁ ନାହିଁ । 'ମୁଁ' ଅନ୍ୟମାନଙ୍କ ସ୍ୱପ୍ନ ଚେତନାରେ ଏକ ସ୍ୱପ୍ନମୟ ମାୟାପୁରୁଷ ଯେକି ନିଜକୁ 'ମୁଁ' ବୋଲି ଭ୍ରମରେ ଭାବୁଅଛି ଓ ପ୍ରତି ମୁହୂର୍ତ୍ତରେ ଫାଟିଯାଉଛି ପାଣିଫୋଟକା ଭଳି । ମୁଁ ସତେକି ପାଣି ଫୋଟକା ଭିତରେ ଥିବା ଶୂନ୍ୟ ଟିକକ ବା ପବନ ଟିକକ । ମୁଁ ସତ୍ୟ ନା ସ୍ୱପ୍ନ ? ବସ୍ତୁ ନା ତାର ଛାୟା ? ଏମିତି ସବୁବେଳେ ହେଲାରୁ ମୋ ଦେହ

ଖରାପ ହେଲା । ଏତେ ଖରାପ ହେଲା ଯେ ମୁଁ ଆଉ ମୋ ପତ୍ନୀଙ୍କ ପାଖେ ଶୋଇ ପାରିଲି ନାହିଁ । ଦିକ୍‌ଦାର ହୋଇ ସେ ଦିନୁଁ ମୁଁ ଆଉ ମଲା ଲୋକଙ୍କ ବ୍ୟାପାରରେ ପଶୁ ନାହିଁ । ମୁଣ୍ଡ ବି ଖେଳାଉ ନାହିଁ ।

କିନ୍ତୁ ବର୍ତ୍ତମାନ ମୁଁ କଣ କରିବି ? ସୁରବାବୁଙ୍କ ଶବ ପୋଡ଼ା ହେବା କଥା ଦେଖିବି ନା ନାହିଁ ? ସୁରବାବୁ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ପରୋପକାରୀ, ଗୋଟିଏ ଶ୍ରମିକ ସଂସ୍ଥା ଓ ଗୋଟିଏ ଧର୍ମ ସଂସ୍ଥା ସଙ୍ଗେ ସେ ସମ୍ପୃକ୍ତ ଥିଲେ । ସେ ମଧ୍ୟ ବିଶ୍ୱାସୀଗୋଷ୍ଠୀର ଜଣେ ବଡ଼ପଣ୍ଡା ଥିଲେ । ସେ କହୁଥିଲେ ମନୁଷ୍ୟ ତାର ବର୍ତ୍ତମାନର ସ୍ଥିତିର ସୀମାକୁ ଖୁବ୍‌ଶୀଘ୍ର ନିଶ୍ଚୟ ଅତିକ୍ରମ କରିଯିବ । ପୃଥିବୀରେ ଏକ ଶୋଷଣହୀନ ସଙ୍ଗତିପୂର୍ଣ୍ଣ ସୁଷମିତ ଭଗବତରାଜ୍ୟ ନିଶ୍ଚୟ ପ୍ରତିଷ୍ଠିତ ହେବ । ମନୁଷ୍ୟମାନେ ସେମାନଙ୍କର ମାନସିକ ସୀମାକୁ ଅତିକ୍ରମ କରି ଅତିମାନସିକ ମାନବ ଗୋଷ୍ଠୀକୁ ଉନ୍ନୀତ ହେବେ । ତୁମେମାନେ ସମସ୍ତେ ଏଥିଲାଗି ଆସ୍ପୃହା କର ଓ ଏଥିରେ ବିଶ୍ୱାସ ରଖ ।

ମୋତେ ଏକଥା ଶୁଣିବାକୁ ଭଲ ଲାଗେ । ମାତ୍ର "ଆସ୍ପୃହା କର" ଓ "ବିଶ୍ୱାସ ରଖ" କଥା ଦିଟା ମତେ ହସ ମାଡ଼ପଡ଼େ । ଆରେ ବାବୁ ! ପୃଥିବୀ ଭଲ ହେଉ କିଏ ନ ଚାହେଁ ? ପୁଣି ଆମ ଭିତର ବିଶ୍ୱାସ ଅବିଶ୍ୱାସରେ ଅବଶ୍ୟମ୍ଭାବୀ ଘଟଣାମାନଙ୍କର କଣ ଯାଏ ଆସେ ? ତା' ଛଡ଼ା ବିଶ୍ୱାସ କଣ ଆମ ହାତରେ ଅଛି ? ଥରେ ଗୋଟିଏ ମାଜିକବାଲା ତା'ପାଟିରୁ ଗୋଟି ଗୋଟିକରି ପଚିଶଟି ଅଣ୍ଡା ବାହାର କଲା । ଆମେ ଆଖିରେ ଦେଖିଲୁ । ମାତ୍ର ରାଜୁ ମାହାନ୍ତି କହିଲା—ସେ ଶଳା ମାଜିକ୍ ବାଲା ଗୋଟାଏ ଲାଅଣ୍ଡା ମୁରୁଗୀ ଗିଳିଛି । ସେ ତା' ପେଟ ଭିତରେ ଅଣ୍ଡା ଦେଉଛି ଓ ଏ ତାକୁ ସବୁ ପାଟିବାଟେ ବାହାର କରୁଛି । ମୁଁ ରାଜୁ ମାହାନ୍ତି ଗାଲରେ ଗୋଟାଏ ଖୁନ୍ଦା ବସାଇ ଦେଇ କହିଲି—ଶଳା ବେକୁଫ୍ ! ତୋର ଉର୍ବର ମସ୍ତିଷ୍କ ଖେଳାଇ ଏଭଳି ଗୋଟାଏ କାରଣ ବାହାର କରିବା ଅପେକ୍ଷା – ଶଳା କହୁନୁ କାହିଁକି ବେ ଯେ ଏସବୁ ହାତସଫେଇ କୁହୁକ ବିଦ୍ୟା ବୋଲି ?

ଛାଡ଼ନ୍ତୁ ! ସୁରବାବୁ ସଙ୍ଗେ ମୋର ବ୍ୟକ୍ତିଗତ ପରିଚୟ ଥିଲା—ମାତ୍ର ସାର୍ଥକ ସମ୍ପର୍କ ନ ଥିଲା । କେତେକ କହନ୍ତି, ସୁରବାବୁ

ଭଗବାନଙ୍କୁ ଦେଖିଛନ୍ତି । ମୁଁ ଭାବେ—ହଁ ଦେଖିଥିବେ—ମାତ୍ର ସେଥିରୁ ଆମକୁ କି ମିଳିବ ? ଅବଶ୍ୟ ସୁରବାବୁଙ୍କୁ ଦେଖିଲେ ବେଶ ଭଲ ଲାଗେ । ସେ ଖୁବ୍ ବେଶୀ କଥାବାର୍ତ୍ତା କରନ୍ତି ନାହିଁ । କେବଳ ଶ୍ରମିକମାନଙ୍କ ସ୍ୱାର୍ଥ ନେଇ ମାଲିକ ସଂଗେ ଝଗଡ଼ା କଲାବେଳେ ଓ ଆମ୍ଭମାନଙ୍କୁ ପୃଥିବୀରେ ଅତିମାନସ ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହେବ—ଏଥିଲାଗି ସମସ୍ତେ ଆସ୍ପୃହାକର - ବିଶ୍ୱାସ ରଖ" ବୋଲି ଉଦାତ୍ତ ଗମ୍ଭୀର ଭବିଷ୍ୟତ ବାଣୀ କଲାବେଳେ ସେ ଖୁବ୍ ଜୋରରେ ପାଟିକରି ବହୁତ ସମୟଧରି କଥା କହନ୍ତି । ବାକି ସମୟତକ ସେ ଖୁବ ପଞ୍ଜିତ ବାଙ୍କ ହୋଇ ଚଳନ୍ତି । ବହୁ ଜନହିତକର ସଂସ୍ଥା ସଙ୍ଗେ ଘନିଷ୍ଠ ସମ୍ପର୍କ ରଖିଥିଲେ ବି ତାଙ୍କର ମୂର୍ତ୍ତି ଓ ଚେହେରାରେ କାଁଅଚ ବିଷର୍ଣ୍ଣ ମଣିଷର, ଉଦାସୀନ ଏକୁଟିଆ ମଣିଷର କରୁଣ ଛାୟା ପଡ଼ିଥାଏ । ସେଥିଲାଗି ତାଙ୍କର ଖୁବ ତୋଫା ଗୋରା ଦେହ ଓ ମୁହଁ ମଝି ଟିକିଏ କରୁଣ ମଧୁର ଶ୍ୟାମଳିମାରେ ଅନୁଭବୀ ଲୋକର ହୃଦୟକୁ ପ୍ରେମିକାର ଭାବରେ ସ୍ପର୍ଶ କରିଦିଏ । ମୋର କହିବାରେ ଲଜ୍ଜ୍ୟା ନାହିଁ ଯେ ପ୍ରଥମେ ଯେବେ ମୁଁ ସୁରବାବୁଙ୍କୁ ଦେଖିଥିଲି—ହଠାତ୍ ମୋ ଭିତରେ ଏକ କାମିନୀ-ସୁଲଭ ସ୍ପୃହା ଜାଗ୍ରତ ହୋଇ ଉଠିଥିଲା । ଆଃ ! ଏ ଲୋକଟିର ପତ୍ନୀ ହେବା ଭାରି ସୁଖର କଥା । ପରେ ଅବଶ୍ୟ ମୋର ଏହି ଅନୁଭବ ଲାଗି ମୁଁ ନିଜପାଖେ ଖୁବ୍ ଲଜ୍ଜିତ ହୋଇଥିଲି । ପୂର୍ବକାଳର ଶ୍ରୀରାମ, ଶ୍ରୀକୃଷ୍ଣ ଓ ଏବ କାଳର ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ଅରବିନ୍ଦ ପ୍ରମୁଖ ମହାତ୍ମାମାନଙ୍କ ଚେହେରାରେ କୁଆଡ଼େ ଏମିତି ଏକ କରୁଣ, ବିଷର୍ଣ୍ଣ ଏକୁଟିଆ ପ୍ରେମିକମଣିଷର ଶ୍ୟାମଳ ରଙ୍ଗ ଲୁଚି ରହି ଏକ ଧରଣର ଅନୁଭବୀ ସ୍ତ୍ରୀ ପୁରୁଷଙ୍କ ମନରେ କି ମଭାବ ଜାଗ୍ରତ କରୁଥିଲା ।

ଲୋକେ କୁହାକୁହି ହେବାର ମୁଁ ଶୁଣିଛି ଯେ କୁଆଡ଼େ ଭଗବାନଙ୍କୁ ଦେଖିଲେ ବା ଭଗବାନ ହୋଇଗଲେ ମଣିଷର ଚେହେରା ଏମିତି ହୁଏ । ମୁଁ ଭାବେ—ହୋଇଥିବ । କାରଣ ଆମ ସହରର ଗୋଧି ପ୍ରଧାନର ଚେହେରା ଭାରି ଉଜ୍ଜଳ ଓ ଉତ୍ଫୁଲ୍ଲ ହୁଏ । ସେ ପାଞ୍ଚଟି ଜନାକୋଷ, ଅଠରଟି ରାହାଜାନି ଓ କେତେଜନାକେତେ ଲୋକେ ଚୋରି କରି ବହୁବାର ଜେଲ ଯାଇଛି ଓ ଥରେ ଫାଶୀରୁ ମୁକୁଳିଛି । ଲୋକେ କହନ୍ତି ସେ କୁଆଡ଼େ ସ୍ୱୟଂ ସଇତାନକୁ ଦେଖିଛି । ସଇତାନ ଦର୍ଶନ କଲେ କୁଆଡ଼େ ଚେହେରା

ଏମିତି "ଚଙ୍ଗ୍" ଦେଖାଯାଏ । ହୋଇଥିବ ବାବୁ ! ଭଗବାନ ବା ସଇତାନ ଦୁହେଁଯାକ ବର୍ତ୍ତମାନ ମୋ ଲାଗି ଅବାନ୍ତର ବ୍ୟାପାର ।

ମୋ ପକ୍ଷରେ ବର୍ତ୍ତମାନର ସମସ୍ୟା ହେଉଛି ସୁରବାବୁର ମଡ଼ାର ପୋଡ଼ିବାକୁ ନେଉଥିବା ବିରାଟ ପ୍ରୋସେସନ୍‌ରେ ଯୋଗ ଦେବି ନା ନାହିଁ ! "ଯୋଗ ଦେବି ନାହିଁ—ଏଭଳି ଏକ ସିଦ୍ଧାନ୍ତ କରିନେବା ଅବଶ୍ୟ ଖୁବ୍ ସୋଜା । ମାତ୍ର "ଯୋଗ ଦେବି" ବୋଲି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ମୋତେ ବର୍ତ୍ତମାନ ବେଶ୍ କିଛି ଭାବିବାକୁ ପଡ଼ିଲାଣି ଦେଖୁଛି । ଅଥଚ କିଛି ଗୋଟାଏ ଶୃଙ୍ଖଳିତ ଭାବେ ଭାବିବାଭଳି ମାନସିକତା ମୁଁ ବହୁଦିନ ହେଲା ହରାଇ ବସିଲାଣି । ବୋଧହୁଏ ଅନୁଭବୀ ଲୋକେ ଚିନ୍ତା କରି ପାରନ୍ତି ନାହିଁ କି ଚିନ୍ତାଶୀଳ ଲୋକେ ଅନୁଭବ କରିପାରନ୍ତି ନାହିଁ ।

ଆଚ୍ଛା କାହିଁକି ଏତେବଡ଼ ଗୋଟାଏ ଶୋଭାଯାତ୍ରା ଗୋଟାଏ ଶବକୁ ବେଢ଼ିକରି ମଶାଣିକି ଚାଲିଛି ? ଏମାନେ କଣ ସୁରବାବୁ ଶୀଘ୍ର ମରନ୍ତୁ ବୋଲି ଚାହୁଁଥିଲେ ନା କଣ ? ଏମିତି ଅବଶ୍ୟ କେହି ଅମଣିଷ ନାହିଁ ଯେ କି ସିଧା ସଳଖ "ଅମୁକ ଲୋକଟା ମରିଯାଉ" ବୋଲି ଭାବିବ । ମୁଣ୍ଡକୁ ତଳକଲେ ଜଉ କି ମୁଡ଼ ହୋଇଯିବ । କାରଣ ଅପରକୁ ମରିଯାଉ ବୋଲି ଭିତରେ ଗାଳି ଦେଲେ ମଣିଷଟାକୁ ସେହିକ୍ଷଣି ସ୍ୱୀକାର କରିଯିବାକୁ ହୁଏ ଏବଂ ମରଣର ଅନିବାର୍ଯ୍ୟ ଶକ୍ତି ଓ ଅଧିକାର ଉପରେ ବିଶ୍ୱାସକରି ତାକୁ ମାନିଯିବାକୁ ହୁଏ । ଫଳରେ ମରଣ ଭୟ ନିଜକୁ ବି ମାଡ଼ିପଡ଼େ ।

କିନ୍ତୁ ସୁରବାବୁ ମରିଯାଉ ବୋଲି କେତେକ ଚାହୁଁଥିଲେ ବି ଅନବରତ ସେହିକଥା ଭାବିବାକୁ ଭୟ ଲାଗୁଥିଲା । ସୁରବାବୁଙ୍କୁ ଦେଖିଲେ ମୋର ମନେ ହେଉଥିଲା—ଲୋକଟାକୁ ଭଲ ନପାଇ ଏ ପୃଥିବୀ ରହିଛି କିପରି ? ତାଙ୍କର ସେହି ବିଷଣ୍ଣ ମୁଖରେ "ପାଇଛି ଓ ହଜାଇ ଦେଇଛି – ହେଇ ପୁଣି ମିଳିଗଲା ଏବଂ ଏ ମଧ୍ୟ ହଜି ଯାଇପାରେ" ଭଳି ଭାବ ବ୍ୟକ୍ତ କରୁଥିବା ଦୁଇଟି ନିରୀହ ଅଥଚ ଶକ୍ତିଶାଳୀ ଆଖି ଓ ନକଲି ଦାନ୍ତ ଦୁଇଧାଡ଼ି ଲାଗିଥିବା ପାଟିରେ ଧାରେ "ସମସ୍ତଙ୍କୁ ପାରିକର ହେ ଚକ୍ରଧର" ଭଳି ହସ ଦେଖିଲେ ଲୋକଟାକୁ ଭଲ ନପାଇ ରହିହେବ କେମିତି ? କିନ୍ତୁ ନାରଣବାବୁ କହନ୍ତି – ଲୋକଟା ଭଲ ସିନା, ଉଦାର ନୁହେଁ । ନିଜ ମତ-

ବିରୋଧୀ ଲୋକଙ୍କ ଉପରେ ଭିତରେ ଭିତରେ ଚଢେ । ଉପରେ ସିନା କିଛି କହେ ନାହିଁ ! ମୁରଲୀବାବୁ ଓ ଜଗୁବାବୁ କହନ୍ତି—ସୁରେନ୍ଦ୍ରବାବୁ ଭାବେ ସେ ସବୁଙ୍କ ଓ ସବୁକଥାରେ ସେଇ କେବଳ ନେତୃତ୍ୱ ନେବ । ସୁଧାଂଶୁବାବୁ କହନ୍ତି—ସୁରବାବୁ ସ୍ୱତରେ ଗ୍ରାଣ୍ଟ ପିଏ ଓ ବହୁତ ଲଟେରୀ ଟିକେଟ କଣେ । ମୁଁ ପ୍ରତିବାଦ କରେ—କପରି ତୁମେମାନେ ଏସବୁ କଥା ଜାଣିଲ ? ସେମାନେ ମତେ ଚପାଇ ଦିଅନ୍ତି—ତୁ ଚୁପକର । ତୁ ହ୍ୟାପ ପ୍ରେତଙ୍କର ମିଡ୍‌ଅମ୍ ହେବା ଲୋକ – ତୁ ଜୀଅନ୍ତା ମଣିଷଙ୍କ ହାଲତ କାହୁଁ ବୁଝିବୁ ? ମୁଁ ଭାବେ – ହୋଇଥିବ ! ମୁଁ ବେକୁଫ୍ ମଣିଷ ଚରିତ୍ର ସମ୍ବନ୍ଧେ କଣ ବୁଝିବ ? ସେଇଠୁ ମୋର ମୁଣ୍ଡରେ ପଶେ – ସୁରବାବୁଙ୍କୁ ଟିକେ ଘୃଣା ଓ ନିନ୍ଦା କରିବା ମଧ୍ୟ ଉଚିତ । ସମସ୍ତଙ୍କୁ ମଧ୍ୟ ଟିକେ ଘୃଣା ଓ ନିନ୍ଦା କରିବା କଥା । ମୋ ଭଳି ହେଙ୍ଗଲାଙ୍କ ଭଳି "ସମସ୍ତଙ୍କୁ ଭଲ ପାଇଗଲେତ ଭଲ ପାଇଗଲେ" କଥାଟା ନିହାତି ବେକୁଫି ବେ ଅକ୍‌କଲ୍ଲ ବାତ୍ । ମୁଁ ତେଣୁ ସାଙ୍ଗ ମେଳରେ କୁଆଡୁ ଶୁଣିଥିବା ବା ମୋ ନିଜ ମନରୁ, ସ୍ୱୟଂସମ୍ଭୂତ ହୋଇଥିବା ଗୋଟାଏ କୁତ୍ସାବାଣୀ ଘୋଷଣା କରିଦିଏ—ଆହେ ! ସୁରବାବୁଙ୍କ ଗଲ୍‌ତି ମୁଁ ଜାଣିନ ଭାବିଛ ? ଶୁଣ ତେବେ । ସୁରବାବୁର ଧନେଶ୍ୱର ଗଗ୍‌ରିଡ଼ଙ୍କ ସ୍ତ୍ରୀଙ୍କ ସଙ୍ଗେ ଗୁପ୍ତ ପ୍ରୀତି ରହିଛି । ମୁଁ ଦୁଇଟା ଗୋଟେ ପ୍ରେମପତ୍ର ମଧ୍ୟ ତାଙ୍କର ପାଇଛି । ଅନ୍ୟମାନେ ଶୁଣି ଖୁସୀ ହୁଅନ୍ତି ଓ ବଂଶୀବାବୁ ଅତ୍ୟନ୍ତ ଉତ୍ଫୁଲ୍ଲ ହୋଇ କହନ୍ତି – ଆରେ ଶଳା ଭୂତ ! ସେ ଚିଠି ଦି'ଟା ମତେ ଦେଇ ଦେ—ମୁଁ ତାକୁ ଟେଲିଗ୍ରାମ କାଗଜରେ ଛପାଇ ଦେଇ ସୁରବାବୁର ଇଜ୍ଜତ ନେଇଯିବି ।

ମୁଁ ଏତେକ କୁତ୍ସା କରି ଭାରି ଖୁସୀ ହୋଇଯାଏ ଏଇଆ ଭାବି ଯେ —ଦେଖ ବାବୁ । ମୁଁ ଭଲ ପାଉଥିବା ଲୋକର ଦୋଷ ମଧ୍ୟ ଜାଣିଛି ଓ ତୁମମାନଙ୍କ ଆଗେ କହି ଦେଉଛି—ମୋର କିଛି ପକ୍ଷପାତ ନାହିଁ ।

ଅଥଚ ସୁରବାବୁର ଶବ ଯାତ୍ରା ସଙ୍ଗେ ଜଗୁବାବୁ, ନାରଣବାବୁ ମୁରଲୀବାବୁ ଓ ବଂଶୀବାବୁ ହେରିକା ମଧ୍ୟ ଯାଇଛନ୍ତି ।

ଗୁଡ—ମୁଁ ବର୍ତ୍ତମାନ କଣ କରିବ ? ଯିବି ? ମଝିରୁ ଯାଇ ଯୋଗ ଦେବି ? ନାରଣବାବୁ ବଂଶୀବାବୁ ହେରିକା ମତେ ଦେଖି ଖୁସୀ ହେବେ

ଓ ଭାବରେ—ଆସିଲ ଆମ ଭଳ ଆଉ ଜଣେ ଯେ କ ସୁରବାବୁଙ୍କ ସର୍ବଜ୍ଞାନତା ବୋଲ—ମଦ ଟାଏ ବୋଲ—ସବୁ କଥାରେ ନେତୃତ୍ୱ ନଏ ବୋଲ ଓ ଭଗବାନଙ୍କୁ ଦେଖିବା ଭଳିଆ ଦେଖାଏ ବୋଲି ଓ ଶ୍ରୀମନ୍ତ ଗବବନ୍ତଙ୍କ ସଙ୍ଗେ ପାପ ପ୍ରୀତି କରେ ବୋଲି ଘୃଣା କରେ ଓ ଏବେ ଆମ ସଙ୍ଗେ ମିଶି ତା' ଶବ ଯାତ୍ରାରେ ଯୋଗ ଦେଲି ।

ମୁଁ ଏମିତି ଭାବୁଛି – ହଠାତ୍ ହରଷଣ ପ୍ରଧାନ ଆସି ମୋତେ ପ୍ରାୟ ଧକ୍କାଟାଏ ପକାଇ କହିଲା – ଯିବ କଉ ? ସୁରବାବୁ ଶବ ସାଙ୍ଗରେ ? ମୁଁ କହିଲି – କାହିଁକି ଯିବ ? ସେ କହିଲା – ଆମେ ଯଦି ଏ ଶବ ଯାତ୍ରାରେ ଯୋଗ ନଦେବା ତେବେ ଆମ ଶବଯାତ୍ରାରେ କିଏ କାହିଁକି ଯିବ ? ମୁଁ କହିଲି – ଅଲବତ ଯିବେ । ଯେଉଁମାନେ ଯିବା କଥା ନଯାଇ ରହି ପାରିବେ ନାହିଁ । ସେ ଖୁବ୍ ଗୁରୁତ୍ୱ ଦେଇ ଉତ୍ସୁକ ଭାବେ ପଚାରିଲା – କେଉଁମାନେ ଯିବେ ? ମୁଁ କହିଲି – ପ୍ରେତମାନେ ଯିବେ । ଜୀଅନ୍ତା ଲୋକ ଯାଇ ଲାଭ କଣ ? ଖାଲି ବୃଥା ଗୋଳମାଳ । ପ୍ରେତଙ୍କ ସଙ୍ଗେ ପ୍ରେତଙ୍କର ଅଦୃଶ୍ୟ ନୀରବ ଯୋଗାଯୋଗ ଖୁବ୍ ଚମତ୍କାର ।

ହରଷଣ ପ୍ରଧାନ ବିରକ୍ତ ହେଲା । କହିଲା—ତୁ ଖାଲି ପ୍ରେତଙ୍କ କଥା ଜାଣୁ ଶଳା ଭୂତ । ମୁଁ କହିଲି—ତୁ ନିଜେ ଭୂତ ବୋଲି ଜାଣିନୁ କିରେ ?

ତା'ପରେ ହରଷଣ ତା' ନିଜକୁ ପ୍ରେତଙ୍କ ଠାରୁ ଅଲଗା ବୋଲି ଦେଖାଇବା ଲାଗି ତା' ଡବାରୁ ଗୋଟାଏ ଚଉକଣିଆ ପାନଖିଲି କାଢ଼ି ତା' ପାଟିରେ ଜାକି ତାକୁ ପାଶବିକ ଢଙ୍ଗରେ ଚୋବାଇ ଲାଗିଲା, ଓ ପକେଟରୁ କଲମଟାକୁ କାଢ଼ି ତାକୁ ଅକାରଣ ଖୋଲି ଓ ପୁଣି ବନ୍ଦ କରି ପକେଟରେ ଖେଞ୍ଚିଦେଲା ଏବଂ ହାତ ଘଣ୍ଟାକୁ ଚାହିଁ ଟିକେ ଚିନ୍ତିତ ସ୍ୱରରେ କହିଲା – ହରିବୋଲ ଭାଇ ଗୋବିନ୍ଦ ବୋଲ – ଚାଲିଲି ମୁଁ । ସେ ଚାଲିଗଲା । ତା' ପଛରେ ଏମିତି ମେଞ୍ଚାଏ ଦୁଃସ୍ୱପ୍ନ ପବନ ବହିଗଲା ଯାହାକି ପ୍ରେତମାନେ ପୃଥିବୀ ପୃଷ୍ଠରୁ ଆକାଶକୁ ଉଡ଼ିଗଲାବେଳେ ବହିଲେ ଭଳି ଲାଗେ ।

ଅତଃପର ମୁଁ ପୁଣି ଏକୁଟିଆ ହୋଇ ଭାବିଲି । କଣ କରିବା ଉଚିତ । ଅବଶ୍ୟ ସୁରବାବୁର ମୂର୍ଦ୍ଧାରଟା କୋକେଇରେ ବୁହା ହୋଇ ଯାଉଥିବା ବେଳର ଦୃଶ୍ୟଟା ଗୋଟାଏ ଚିତ୍ତାକର୍ଷକ ବ୍ୟାପାର । ଭଗବାନଙ୍କୁ ଦେଖିଥିବା ବା ପାଇଥିବା ଲୋକଟି—ଅନ୍ୟଠାରୁ ନିଜକୁ ପୃଥକ ବୋଲି ଭାବୁଥିବା ଲୋକଟି—ହେ ଚକ୍ରଧର ! ସବୁ ଦୁଃଖୀରଙ୍କିଙ୍କି ପାରିକରି ବୋଲି ଭାବୁଥିବା ଲୋକଟି—ପୃଥିବୀରୁ ଶୋଷଣ ଦୂର ହେଉ ଓ ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହେଉ ବୋଲି କାମନା କରୁଥିବା ଲୋକଟି—ରାତିରେ ବ୍ରାଣ୍ଡି ପିଉଥିବା ଲୋକଟି—ଓ ଶ୍ରୀମନ୍ତ ଗରିବଗୁଡ଼ିଙ୍କ ସଙ୍ଗେ ପାପପ୍ରୀତି କରୁଥିବା ଲୋକଟି ଏବଂ କଞ୍ଚିତ ରକ୍ତ ଗର୍ବ ଓ ଔଦ୍ଧତ୍ୟବନ୍ତ ଲୋକଟି କୋକେଇରେ ବନ୍ଧା ହୋଇଯାଇ ମଶାଣିରେ ପୋଡ଼ା ହେଉଥିବା ଦୃଶ୍ୟଟି ଦେଖିଲେ ମନରେ ଗୋଟାଏ ଖୁସୀଭାବ ମଧ୍ୟ ଆସିଯାଇ ପାରେ ।

ମଶାଣିକି ମୁଁ ବହୁବାର ଯାଇଛି । ବହୁ ପିଲା, ଟୋକା, ବୁଢ଼ା ବୁଢ଼ୀ ଟୋକୀଙ୍କି ପୋଡ଼ିଛି, ପୋତିଛି ଓ ପୋଡ଼ା ହେବାର ପୋତା ହେବାର ଦେଖିଛି । ସେସବୁ ଏକପ୍ରକାର ଭଲ ଲାଗେ । ଯଦିଓ ଭଲ ଲାଗୁଛି ବୋଲି ଜାଣି ହୁଏନା କି ବୁଝି ହୁଏନା ।

ଥରେ ଗୋଟାଏ ବଡ଼ ଚଳକା କଙ୍କଡ଼ା ତା'ର ମୋଟା କରତିଆ ଦଣ୍ଡୁଆସୀ ଗୋଡରେ ମୋ ହାତକୁ ଚାପି ଧରିଲା । ଅଙ୍ଗୁଠିଟା ଛିଡ଼ି ପଡ଼ିଲା ଭଳି ଯନ୍ତ୍ରଣାରେ ମୁଁ ଅସ୍ଥିର ହୋଇ ଉଠିଲି । କଙ୍କଡ଼ାଟାକୁ ବଳକରେ ଆଉ ହାତରେ ଛଡ଼ାଉ ଛଡ଼ାଉ ସେଇଟା ତା'ର ଆଉ ଦଣ୍ଡୁଆସୀ ଗୋଡ଼ରେ ମୋର ବାଁ ହାତର ଦଶି ଆଙ୍ଗୁଠିକୁ ଚାପିଧରିଲା । ମୁଁ ଛଟପଟ ହୋଇଗଲି । କଷ୍ଟ ଓ କ୍ରୋଧରେ ଫାଟି ପଡ଼ିଲି । ଆଉ ଉପାୟ ନଥିଲା । ଦଉଡ଼ିଗଲି ସେପଟେଇ ଘରକୁ । ଭାତ ହାଣ୍ଡିରେ ପାଣି ଫୁଟୁଥିଲା । ବ' ହାତକୁ କଙ୍କଡ଼ା ସୁଦ୍ଧା ନେଇ ଫୁଟିଆଣିରେ ବୁଡ଼ାଇ ଧରିଲି । ନିଜର ପ୍ରାଣାନ୍ତକ ଯନ୍ତ୍ରଣାକୁ ପ୍ରଚଣ୍ଡ ହିଂସ୍ରମୂଳକ କ୍ରୋଧରେ ପରିଣତ କରି ଟକଟକ୍ ଫୁଟନ୍ତା ପାଣିରେ କଙ୍କଡ଼ା ସୁଦ୍ଧା ହାତକୁ ବୁଡ଼ାଇ ରଖିଲି ତିନି ମିନିଟ । ହାତଟା ସିଝି ଫୋଟକା ହୋଇଗଲା । କିନ୍ତୁ ସେଇଟା ବଡ଼ କଥା ନୁହେଁ ।

ସେ କିଛି ଜଣା ପଡୁନାହିଁ । ମାତ୍ର କଙ୍କଡ଼ାଟା ସେଇ ବଜାର କଙ୍କଡ଼ାଟା ଗରମ ପାଣିରେ ତିନି ମିନିଟରେ ଛଟପଟ ହୋଇ ନାଲି ପଡ଼ିଗଲା । ନାଲି-ନାଲି-ଟିକ୍ ମଶାଣୀର ନିଆଁ ଭଳି ନାଲି । ଅଗ୍ନିଦେବତା ଭଗବାନ ନୁହନ୍ତି କି ସଇତାନ ନୁହନ୍ତି । ସେ ସବୁକୁ ନାଲି କରିଦିଅନ୍ତି, ପାଉଁଶ କରିଦିଅନ୍ତି – ସାଫ୍ କରିଦିଅନ୍ତି । ଏ ଶଳା ଜୀବନଟା ସେମିତି । ତା'ର ସନ୍ତ୍ରାସୀ କରତିଆ ଗୋଡରେ ଆମକୁ ଚିପିରଖି ଛଟପଟ କରୁଛି । ତାକୁ ଚିତା ଉପରେ ପକାଇ ଦିଅ—ବାସ୍ ନାଲି ପଡ଼ିଯିବ—ସଫା ହୋଇଯିବ । ମୁଁ ସେଇ ସିଝା ନାଲି କଙ୍କଡ଼ାଟାକୁ ବଧାମାରି ଫଟାଇ ଦେଲି । ତା' ଭିତରର ଧଳା ମାଛିଆ ଓ ହଳଦିଆ ଶଶତକ ସ୍ୱଂସାରେ ଖାଇଦେଲି । କହିଲି – ଏଥର ଯା ମୋ ପେଟ ଭିତରେ ପୁଣି ନାଲି ହବୁ — ଭସ୍ମ ହେବୁ ।

ଆଜି ସୁରବାବୁର ଦେହ ସେମିତି ନାଲି ହବ ଜଳି ଉପରେ—ସେଇଠି ଭସ୍ମ ହେବ । ତାକୁ ତଳକାଠ ଉପରେ ତଳମୁହାଁ କରି ଶୁଆଇ ଦେବେ । ଉପରେ କାଠ ଦେବେ । ଘିଅ ଢାଳିବେ । ଚନ୍ଦନକାଠ କେତୁଟା ପକାଇବେ । କେତୁଟା କାଠ ତା' ମୁହଁ ଓ ଗୁପ୍ତ କାଖ ତଳେ ଓ ଅଣ୍ଟା ପାଖେ ଚେଞ୍ଜିବେ । ତାର କଣ୍ଠାକୁର ବଡ଼ ପୁଅ ଶ୍ରାଦ୍ଧସାରି ହୁତୁହୁତୁ ଜଳୁଥିବା ନିଆଁ ଅଠାଟା ଆଣି ଆଗ ତା' ମୁହଁ ପାଖେ ଚେଞ୍ଜି-ଦେଇ ତଳକୁ ମୁହଁ କରି ଚଲାଇବେ । ତା'ପରେ ସମସ୍ତେ ନିଆଁ ଲଗାଇବେ । କଙ୍କଡ଼ା ଓ ମାଛଭଳି ତାକୁ ପୋଡ଼ିବେ । ନିଆଁ ତା'ଉପରେ ଚଢ଼ିଯିବ । ହୁତୁହୁତୁ ନାଲି ନିଆଁ ଜଳିଉଠିବ । ସମସ୍ତେ ଖୁସୀ ହେବେ । ସୁରବାବୁର ମୁହଁଟା ଆଗ ଜଳିଯିବ । ସେଇ ମୁହଁଟାଇ ଅସଲ । ସବୁ ଅନର୍ଥର ମୂଳ । ସମସ୍ତେ ସବୁବେଳେ ତାକୁଇ ଦେଖନ୍ତି । ସେଇ ମୁହଁଟାକୁ ଦେଖି ଥୋକେ ତାକୁ ଛଦ୍ମ ଭଗବାନ ଅଂଶୀ ଓ ଆଉ ଥୋକେ ସଇତାନ ଅଂଶୀ କହୁଥିଲେ । ସେଇ ମୁହଁଟା ଦିନରେ ଦୁଧ ଓ ରାତିରେ ବ୍ରାଣ୍ଡି ପିଉଥିଲା । ଦିନବେଳା ବିଷଣ୍ଣ ଓ ଉଦାସ ଦିଶୁଥିଲା ଓ ରାତିରେ ଗଣବନ୍ଧୁ ବାବୁଙ୍କ ସ୍ତ୍ରୀକୁ ଗୋପନରେ ଚୁମ୍ବନ ଦେଉଥିଲା । ସେଇ ମୁହଁଟା ସ୍ନେହ କରୁଥିଲା – ଘୃଣା କରୁଥିଲା । ବିନମ୍ର ଦେଖାଯାଉଥିଲା ଗର୍ବ ବି ଦେଖାଉଥିଲା । ସେଇ ମୁହଁକୁ ଦେଖିଲେ ଭଲ ଲାଗୁଥିଲା, ଚିଡ଼ ଲାଗୁଥିଲା ।

ଗଗନବନ୍ଧୁ ବାବୁଙ୍କର ବୋଷ୍ଟରୁଣୀ ସ୍ତ୍ରୀ ସେଇ ମୁହଁଟାରେ କାହାକୁ ଦେଖି କାମବାଣ ହେଉଥିଲା ? ଭଗବାନଙ୍କୁ ନା ସମ୍ପୂର୍ଣ୍ଣାନଙ୍କୁ ? ନା ଉଭୟଙ୍କୁ ? ସେଇ ମୁହଁଟା କହେ ସୁରବାବୁ ହେଇ ଆସିଲେ – ସେଇ ମୁହଁଟା କହେ – ସୁରବାବୁ ହେଇଗଲେ । ହେଇ ସୁରବାବୁ କହୁଛନ୍ତି—ଚୁପ୍ ହୋଇଛନ୍ତି—ରୁନ୍ଧିଛନ୍ତି – ଆଖି ବୁଜିଛନ୍ତି । ସେଇ ମୁହଁସବୁ କହେ । ସୁରବାବୁର ସେଇ ମୁହଁଟା ଆଗ ନାଳ ପଡ଼ିଯିବ – ପୋଡ଼ିଯିବ, ପାଉଁଶ ହୋଇଯିବ । ସେଇ ମୁହଁଟା ଲୁଚିଯିବ । ପୁଣି ଯାଇ କୋଟି କୋଟି ଅର୍ବୁଦାର୍ବୁଦ ଯୁଗପରେ କୋଟି କୋଟି ଅର୍ବୁଦାର୍ବୁଦ ମଣିଷଙ୍କ ଭିତରେ ହଠାତ୍ ସେଇ ମୁହଁଟା ଭଳି ଆଉ ଗୋଟାଏ ମୁହଁ ଦିଶିଯିବା ଭଳି କାହା କାହାକୁ ଲାଗିବ ? କିନ୍ତୁ କାହା କାହାକୁ ଲାଗିବ ? ଆଜିର ମୁହଁମାନେ ସେତେବେଳେ ନଥିବେ ସେ ମୁହଁକୁ ଚିହ୍ନିବା ପାଇଁ – ମିଳେଇବା ପାଇଁ ! ସବୁ ମୁହଁକୁ ଏ ନିଆଁ ପୋଡ଼ି ପାଉଁଶ କରିଦେବ । ନିଆଁ ସବୁଠାରେ ଅଛି । ପାଣିରେ ଅଛି, ମାଟିରେ ଅଛି, ଆକାଶରେ ଅଛି । ଆକୃତିମାନଙ୍କୁ ଗଢ଼ୁଛି—ଫେର ତାକୁ ପୋଡ଼ି ଭସ୍ମ କରୁଛି । କିନ୍ତୁ ଆକୃତିମାନଙ୍କୁ ମନେ ରଖିବ କିଏ ? ନିଆଁ କଣ ମନେ ରଖିପାରେ ? ଦୁଇ ପ୍ରକାର ନିଆଁ ଅଛି । ଏକ ନିଆଁ ଗଢ଼େ—ଏକ ନିଆଁ ପାଳେ—ଏକ ନିଆଁ ଭସ୍ମ କରେ ଓ ଆରେକ ନିଆଁ ସବୁ ମନେରଖେ । ଯାକୁ ଦେଖି ତାକୁ ମନେ ପକାଏ । ତାକୁ ମନେରଖି ଯାକୁ ଗଢ଼େ । ଧନ୍ୟ ଧନ୍ୟ ଧନ୍ୟରେ ଅଗ୍ନି । ଓଁ ଅଗ୍ନିମୀଳେ ପୁରୋହିତଂ । ଅଗ୍ନିକୁ ଆଗରେ ରଖିଥିଲ ଭାଇମାନେ । ସୁଜ୍ଞଜନେ ଏବେ ଅଗ୍ନିକୁ ଧର—ସେଇ ସଇତାନ ସେଇ ଈଶ୍ୱର । ଅଗ୍ନି ମୋହର ନିଜ ଗୁରୁ । ଉଦ୍ଧବ କମ୍ପା ଗାଲୁମାରୁ ?

ସୁରବାବୁ ଆଜ ଭସ୍ମ ହବ । ମଜାଲାଗିବ, ସମସ୍ତେ ଭସ୍ମ ହେବେ ହିଅନ୍ତୁ । ଆମେ ସବୁ ଭସ୍ମ ହେବା । ମଜା ହେବ, କୋଉଶଳା କହୁଛୁବେ ଭସ୍ମ ହେବନି ବୋଲି ? ଶଳେ ସେ ମଜା ସେ ରହସ୍ୟ ଜାଣିନାହାନ୍ତି । ଶଳାମାନେ ଶୁଣ ! ମୁଁ ସତ୍ୟକୁ ଜାଣି ଅଛି । ଆମେ ସବୁ ମୃତ୍ୟୁ ମାତାର ସନ୍ତାନ । ଏଇ ଅଣ୍ଟୁକୁଡ଼ୀ ଛୁଆ ଡାହାଣୀ ଜୀବନ ଆମକୁ ମୃତ୍ୟୁର ଅନ୍ଧକାର କୋଳରୁ ଲୁଟିନେଇ ଯେମିତି ଆଣି ଏତେ କଦର୍ଥନା ଦେଉଛି । ଜୀବନ

ଆମକୁ କଣ ଖାଇବାକୁ ଦବ ? ଖାଲି ଖେଳେଇ ନଖେଳେଇ ମାରିବ ।
ଉପାସିଆ ରଖି ମାରିବ । ମ'ରିବ କଣ ? ମାରିମାରି ବଞ୍ଚେଇବ । ମୃତ୍ୟୁମାଆ
ଆମରି ସେଇଥିନୁ କାମୁଡ଼ା ବାଘୁଣୀ ତା' ଛୁଆଙ୍କୁ ଖୋଜିଲା ଭଳି ଆମକୁ
ଖୋଜି ବୁଲୁଛି । ଯେମିତି ଆମକୁ ପାଇବ ସେମିତି ପେଟତଳେ ଜାକି ମାରିବ
କୁଦା । ବାଘୁଣୀ ପେଟତଳେ କେବେ ଜକାହୋଇଛ ? ଜାଣିଛ ସେ ମଜା ?
କିଛି ଜାଣିନ । ଖାଲି ପରସ୍ପରକୁ ପଛକୁ ଠେଲି ଆଗକୁ ଦଉଡ଼ୁଛ । କଣ
ଆଗରେଅଛି ? କଣଟା ଆଗରେପାଇଲେ କଣଟା ବା ତୁମର ହୋଇଯିବ ?
ପଞ୍ଚାଏ ଭଗବାନଙ୍କୁ ଡାକୁଛ—ହେ ଭଗବାନ ! ଚକ୍ରପେଷି ମୋ ଶତ୍ରୁକୁ
ମାରିଦିଅ । ଆଉ ଦଳେ ସଇତାନକୁ ଡାକୁଛ – ହେ ପ୍ରଭୁ ସଇତାନ !
କୌଶଳ କରି ମୋ ଶତ୍ରୁ ପେଟରେ ଛୁରୀ ଭୁଷି ଦିଅ । ଆହେ ଶତ୍ରୁ
କିଏ ? ସମସ୍ତେ ଏଠି ସମସ୍ତଙ୍କୁ ଶତ୍ରୁ କରି ସାରିଲେଣି । କେହି ତୁମେ
ମାନେ ମୃତ୍ୟୁକୁ ଚହ୍ନିନାହଁ । କେହି ତୁମର ଅସଲ ମାକୁ ଚହ୍ନି ନାହିଁ ।
ବାଘୁଣୀ ପେଟତଳେ ଜକା ଖାଇଛ କେବେ ? ମୁଁ ଜାଣିଛି । ବାଘୁଣୀ
କୋଳଜକା ସୁଖ ମୁଁ ଜାଣିଛି । ଥରେ ମୁଁ ବଣରେ ବୁଲୁଥିଲି । ମୋ ସାଙ୍ଗେ
ଉତନା ବାଉକ ଥାଏ । ଆମେ ମହୁ ଆଣିବାକୁ ଯାଇଥାଉଁ । ଉତନାର କିନ୍ତୁ
ଭିନ୍ନ ମତଲବ ଥାଏ । ସେ କୋଚିଲାଖାଇ ଚଢ଼େଇର ବସା ଠାବ କରି-
ଥାଏ । ତା ମାଇକିନାର ଆମବାତ ଭଲ କରିବାକୁ ସେ କୋଚିଲା-ଖାଇ
ଚଢ଼େଇ ଅଣି ତାକୁ ମାରି ତା ତେଲ ଗନ୍ଧ ତା' ଅଣ୍ଟାରେ ଘଷିବାକୁ
ସ୍ଥିର କରିଥାଏ । ଆଗ ମହୁ ସଂଗ୍ରହ କଲୁ । ମନଇଚ୍ଛା ମହୁ ଖାଇଲୁ ।
ଉତନ । ସେଇଠୁ ଗଲା କୋଚିଲାଖାଇ ଚଢ଼େଇ ବସା ଖୋଜିବାକୁ । ମୁଁ
ଗୋଟାଏ ବେତ ବୁଦା ତଳେ ଗୋଟାଏ ଠେକୁଆ ଶୋଇଥିବାର ଦେଖି
ତାକୁ ଧରିବାକୁ ଯାଉଛି—ହଠାତ୍ ଗୋଟେ ଆପତ୍ତରେ ମୁଁ ପଡ଼ିଗଲି ।
ତା'ପରେ ମୋତେ କୋଳରେ ଜାକିଧରି ସେ କୁଦା ମାରି ମାରି ଦୌଡ଼ିଲା ।
ପ୍ରଥମେ ମୋର ହୋସ୍ ଗୁଲିଗଲା । ତା'ପରେ ମୋର ହୋସ ଫେରି ଆସିଲା
ବାଘୁଣୀଟା ତଥାପି ଦୌଡ଼ୁଥାଏ । ମତେ କେମିତି ଲାଗିଲା ମତେ ଖୁବ
ଭଲ ଲାଗୁଛି । କେମିତି ଭଲ ଲାଗୁଥାଏ କେମିତି କହିବ ? ତୁମେ
କଣ ଜାଣି ପାରିବ ! ଠିକ ମା' କୋଳରେ ଜକାହେଲା ପରି, ମୋ ମନ
ଭିତରୁ ସବୁ ଭୟ ଗୁଲିଯାଇଥିଲା । ମୁଁ ତା' କୋଳରେ ନିଜକୁ ସପିଁ
ଦେଇଥିଲି । ବରଂ ଜାଲେ ତା ହାତରୁ ଖସି ତଳେ ପଡ଼ିଯିବି ଭାବି ତାକୁ

ଦୁଇ ହାତରେ କୁଣ୍ଢାଇ ଧରି ଦୁଇ ଗୋଡ଼କୁ ତା' ଦେହରେ ଛନ୍ଦି ଦେଇଥିଲି । ସେହି ଅବସ୍ଥାରେ ମୋର ମଧ୍ୟ ଗୋଟାଏ ଖିଆଲ ହେଉଥାଏ ଯେ ମୁଁ ଯନ୍ତ୍ର ବାଘୁଣୀଟାର ଦୁଧ ଖାଇପାରନ୍ତି । ତା'ଚୀରରେ ମୁହଁ ଲଗାଇ ଚୂକ ଚୂକ କରି ଅକ୍ଷବୁଜି ! ! ମୁଁ ଏବେ ଅହ୍ଲାଦିତ ହୋଇ ନଟିଲି ଯେ ମୋର ନିଦ ଭାଙ୍ଗିଗଲା । ସ୍ୱପ୍ନଟା ଆଜିଯାଏ ମନେଅଛି । ହଁଅ — ସ୍ୱପ୍ନ ହେଲେ ବି ଅସୁବିଧା କଣ ? ସ୍ୱପ୍ନର ଅନୁଭୂତି ବାସ୍ତବର ଅନୁଭୂତି ଅପେକ୍ଷା ଅଦ୍ଭୁତ ଦେଖିବି—ଅଦ୍ଭୁତ ସତ୍ୟ – ଜୀବନ୍ତ । କଥାଟା ସ୍ୱପ୍ନ କି ବାସ୍ତବରେ ନାହିଁ । ଅନୁଭୂତିର ସତ୍ୟତାଟାକୁ ଦେଖ । ମୃତ୍ୟୁ ଚମତ୍କାର । ମୃତ୍ୟୁ ଅମର ଅସଲ ମା । ଶୁଆଇ ଦିଏ ଆରାମ ଦିଏ ।

ଭଲ ହେବ । ମଜା ହେବ । ସୁରବାବୁ ପୋଡ଼ା ହେବ । ମୁଁ ଦେଖିବି । ସୁରବାବୁ-ଚିତାର ନିଆଁରେ ସମସ୍ତଙ୍କ ମୁହଁ ଝଲସି ଉଠିବ । ସମସ୍ତେ ଖୁସୀ ହେବେ । କିନ୍ତୁ ଖୁସୀ ହେଉଛନ୍ତି ବୋଲି ବୁଝି ପାରିବେ ନାହିଁ । ସୁରବାବୁଙ୍କ ସ୍ତ୍ରୀ କାନ୍ଦିବେ । ତାଙ୍କର ଗୁପ୍ତ ପ୍ରେୟସୀମାନେ ଶ୍ରୀମତୀ ଗବବନ୍ତୁ କାନ୍ଦିବେ । ହୁଏତ ଚେରାଦିନ କାନ୍ଦିବେ । କିନ୍ତୁ ସେମାନେ ଖୁସୀ ହୋଇ କାନ୍ଦୁଛନ୍ତି ବୋଲି ବୁଝି ପାରିବେ ନାହିଁ । ଭଲ ପାଉଥିବା ଲୋକର ମଲାପରେ କାନ୍ଦି କାନ୍ଦି ଖୁସୀ ହେବା ଭଲ । ଆମେ ଦୁଇ ବେଳାରେ ଖୁସୀ ହେଉଁ । ହସିଲା ବେଳେ ଓ କାନ୍ଦିଲା ବେଳେ । ଅନ୍ୟ ବେଳାରେ ଖାଲି କଷ୍ଟ ପାଉ । ସିଝୁଥାଉ – ଭସ୍ମ ହେଉ ନାହିଁ । ହସିଲା ବେଳେ ଆମେ ବୁଝି ପାରୁନା ଯେ ଆମେ କାନ୍ଦୁଛୁ । ସେମିତି କାନ୍ଦିଲା ବେଳେ ଆମେ କ'ଣ ବୁଝିପାରୁ ଯେ ଆମେ ହସୁଛୁ ବୋଲି ?

ଆଜି ଚେଷ୍ଟା କରିବା ଅନୁଚିତ । ମୁଁ ରେକ୍‌ସାଟିଏ ଧରି ମଶାଣୀ ଅଭିମୁଖେ ଛୁଟିଲି । ବାଟରେ ମୋ ମୁଣ୍ଡକୁ ବୁଦ୍ଧି ଜୁଟିଲା – ମୁଁ ବନାସାହୁ ଦୋକାନରୁ କିଛି ଘିଅ କିଣିଲି । ଚନ୍ଦନ କାଠ ଦୁଇଖଣ୍ଡି କିଣିଲି । ସୁରବାବୁଙ୍କ ଚିତା ଉପରେ ସଂଯୋଗ କରି ଦେଖିବି କିପରି ମୁଣ୍ଡ'ାରିଟି ଦୁହୁଦୁହୁ ହୋଇ ଜଳିବ ।

ଅଳ୍ପ ସମୟ ଭିତରେ ମୁଁ ପ୍ରୋସେସନ୍‌ରେ ମିଶିଗଲି । ମଶାଣୀ ଆଜି ଅଳ୍ପବାଟ ଥାଏ । ମସ୍ତବଡ଼ ପ୍ରୋସେସନ । ସବା ଆଗରେ ଗୋଟାଏ

ଟ୍ରକରେ ମୁର୍ଦ୍ଦାରକୁ ଧରି ମାଲ୍ ଭାଇମାନେ ଠିଆ ହୋଇଥାନ୍ତି । ସେମାନେ ଚିଲାଉଥାନ୍ତି – "ରାମ ନାମ ସତ୍ୟ ହେ, ହରି ନାମ ସତ୍ୟ ହେ ।" ତାଙ୍କ ଚିତ୍କାରରୁ ମନେ ହେଉଥାଏ – ଦୁଇଦଳ "ରାମ ନାମ ସତ୍ୟ" ଓ "ହରି ନାମ ସତ୍ୟ"—ଏହା ଯେମିତି ବାଦାନୁବାଦ କରୁଛନ୍ତି । ମୂର୍ଖମାନେ ଭଗବାନଙ୍କ ନାମକୁ ଯେମିତି କଳି କରୁଛନ୍ତି କାହିଁକି ? ପୁଣି ଏ ଶେଷ ବେଳାରେ ? ସୁରବାବୁ ପାଖେ ବର୍ତ୍ତମାନ ସବୁ ନାମ ମିଥ୍ୟା ହୋଇପାରେ । ଆମ୍ଭମାନଙ୍କ ପକ୍ଷରେ ମଧ୍ୟ ଏ ପ୍ରଶ୍ନ ଆପାତତଃ ବର୍ତ୍ତମାନ ଅବାନ୍ତର । ଅସଲ ପ୍ରଶ୍ନ ସୁରବାବୁର ମୁର୍ଦ୍ଦାର ଆଜି ଗୋଡ଼ ସାରିଲା ପରେ ଅତଃପର ଆଜି କାହା ପାଳି ପଡ଼ିବ ? କାର୍ ପଛେ କାର୍ ଲାଗିଛି । ସାଇକେଲ ଧରି ଲୋକେ ଗପସପ କରି ଚାଲିଛନ୍ତି । ଗୋଟାଏ ମୁର୍ଦ୍ଦାର ଏ ସମସ୍ତଙ୍କୁ ମଶାଣିକି ଅଡେଇ ନେଉଛି । ଅଥଚ ସୁରବାବୁ ବଞ୍ଚିଥିବା ବେଳେ ଏମାନଙ୍କୁ ଏକାଠି ଡାକିଥିଲେ ଏମାନେ ସମସ୍ତେ ବାଁ କାଳିଆ ଦେଇ ଯେ ଯୁଆଡ଼େ ପଳାଉଥାନ୍ତେ । ଏ ସମସ୍ତଙ୍କ ପକ୍ଷରେ ଆଜି ଉଚିତ ହେବ ଯେ ସୁରବାବୁର ଚିତା ହୁତୁହୁତୁ ହୋଇ ଜଳିଲା ବେଳେ ସମସ୍ତେ ଗୋଟି ଗୋଟି ହୋଇ ସେଇ ଚିତା ଉପରେ ଶୋଇପିବା ଓ ନିଆଁରେ ପୋଡ଼ି ଭସ୍ମ ହୋଇଯିବା ।

କିନ୍ତୁ ବାଟ ଯାଉଛି – ହଠାତ୍ ଗୁହାଳିଦାଏ ତ ପୁରୀଘାଟରୁ ରିକ୍ସାଟିଏ ଆସୁଛି ଓ ତା' ଭିତରେ ବସିଛି ସବିତା ଚୌଧୁରୀ । ମୁଁ ହାତ ଟେକି ତା' ରିକ୍ସା ଅଟକେଇଲି । ସେ ପଚାରିଲା—କୁଆଡ଼େ ଚାଲିଛନ୍ତି ? ମୁଁ କହିଲି—ଆପାତତଃ ମଶାଣିକି ଯାଉଛି । କିନ୍ତୁ ତୁମେ ଯଦି ଡାକିବ—ମୁଁ ମୋର ଗନ୍ତବ୍ୟପଥ ବଦଳାଇ ଦେଇପାରେ ।

ସବିତା ହସିଲା । ସେ ସବୁବେଳେ ମୋ କଥା ଶୁଣି ଏମିତି ହସେ । ସେ ଆଉ ଉଚ୍ଚବାଚ ନକରି ରିକ୍ସାର ଗୋଟିଏ କଣକୁ ଘୁଞ୍ଚିଗଲା ଓ ମୁଁ ତା' ଇସାରା ପାଇ ରିକ୍ସା ଉପରକୁ ଉଠିଗଲି । ତା'ପରେ ତା' ଅଣ୍ଟାରେ ହାତଗୁଡ଼ାଇ ତାକୁ ଧରି ଶବଯାତ୍ରାର ପ୍ରୋସେସନଟି ତ୍ୟାଗ କଲି । ସବିତା ମୋ ପ୍ରତି ସବୁବେଳେ ସଦୟା । କେବେ ସେ ମୋ ଇଚ୍ଛାର ବିରୁଦ୍ଧାଚରଣ କରିନାହିଁ । ସେ ଆସି ଅଧାବୁଢ଼ୀ ହେଲାଣି । ତା'ର ଅନ୍ୟ ପୁରୁଷବନ୍ଧୁ

ମଧ୍ୟ ଅଛନ୍ତି । କିନ୍ତୁ ପ୍ରୀତି ବା ଚିତ୍ତପ୍ରଣୋଦିତ ଯେ କୌଣସି ଅଳଅଡୁଆକୁ ମୋର ସେ କେବେ ପ୍ରତ୍ୟାଖ୍ୟାନ କରିନାହାନ୍ତି । ଅନ୍ୟମାନେ କିଏ କଣ ଭାବୁଛନ୍ତି ଭାବନ୍ତୁ, ମାତ୍ର ସବିତା ପ୍ରତି ମୁଁ ଖୁବ୍ କୃତଜ୍ଞ । ବହୁ ସଙ୍କଟ ବେଳାରେ ଈଶ୍ୱରଙ୍କ ଭଳି ସେ ଅଜ୍ଞାନକ କୋଉଠୁ ଆସି ମୋ ଆଗରେ ଉଭା ହୋଇଯାଏ ଓ ମୋତେ କୋଳରେ ଧରି ସେ ସଙ୍କଟ ସମୁଦ୍ରରୁ ମୋତେ ପାରି କରିଦିଏ । ସବିତା କଥା କଣ କିଏ ସବୁବେଳେ ଭାବୁଥାଏ ? ନା ମୁଁ ମଧ୍ୟ କେବେ ସବିତା ଲାଗି ପାଗଳ ହୋଇଛି ? ଏଇତ ଗତ ଛମାସ ହେବ ମୁଁ ତା' ନାଁ । ମଧ୍ୟ ଭୁଲରେ ଧରିନାହିଁ । ଅଥଚ ଆଜି ସେ ହଠାତ୍ କୁଆଡୁ ଆସି ଠିକଣା ଜାଗାରେ ଠିକଣା ବେଳେ ପହଂଚି ମୋତେ ଧରି ନେଇ ଚାଲିଛି ଦେଖନ୍ତୁ ।

ସବିତା କେବେ ମୃତ୍ୟୁକୁ ସ୍ୱୀକାର କରେନାହିଁ । ସେ କହେ—ମୁଁ ନାରୀ ! ମୁଁ କାହାକୁ ମୃତ୍ୟୁ ମୁଖକୁ ଠେଲି ଦେବିନାହିଁ । ମୃତ୍ୟୁ ମୋର ସତ୍ତୁଣୀ । ତାର ସବୁତକ ହିଂସା ମୋର ପିଲାଙ୍କ ଉପରେ । ମୁଁ ସତର୍କ ନଥିଲାବେଳେ ସେ ମୋ କୋଳରୁ ସେମାନଙ୍କୁ ଝାମ୍ପିନିଏ । ତୁମେମାନେ ସମସ୍ତେ ଆସ । ମୋ କୋଳରେ ଶୁଅ । ମୁଁ ତୁମକୁ ପଣତ ତଳେ ଘୋଡାଇ ରଖିବି । ତୁମ୍ଭେମାନେ ମୋତେ ଖାଦ୍ୟରୂପେ ଗ୍ରହଣ କର । ମୋତେ ଶୋଷି ଖାଅ ଓ ପୁଷ୍ଟ ହୁଅ ।

ସବିତା ମୋ ନିକଟରେ ମୃତ୍ୟୁ ଠାରୁ ବେଶୀ ରହସ୍ୟମୟୀ ଓ ଶକ୍ତିମୟୀ ବୋଲି ପ୍ରତିଭାତ ହୁଏ । ମୋର ମନେହୁଏ—ମୃତ୍ୟୁ ମୋତେ ଘେନିଗଲେ, ସେ ପୁଣି ତା'ଠାରୁ ଛଡ଼ାଇ ଆଣି ମୋତେ ପୁନଶ୍ଚ ଜନ୍ମକରି ଦେଇ ପାରିବ । ସେ ହାବୁଡ଼ିଗଲେ, କିମ୍ବା ସେ କୋଳରେ ଜାକି ଦେଲେ ମୋର ଆଉ ବାଘୁଣୀ କୋଳକୁ ଯିବାକୁ ମନ ବଳେ ନାହିଁ । ସବିତାକୁ ମୁଁ କେତେଥର ପଚାରିଛି—ସବିତା ! ତୁମେ ପ୍ରକୃତରେ କିଏ ? ତୁମେ କଣ ପ୍ରକୃତରେ କୋଉ ଠାକୁରାଣୀ ଫାକୁରାଣୀ ଛଦ୍ମବେଶରେ ସବିତା ଚୌଧୁରୀ ବୋଲାଉଛ ? ସେ କହେ -ମୁଁ କିଛି ନୁହଁ—ମୁଁ କେବଳ ନାରୀ । ମୁଁ ପଚାରେ—ତୁମେ ଆମ୍ଭମାନଙ୍କୁ ଯେପରି କୋଳଦେଇ ଜାକିଧରି ଯାହା ସବୁ ଭୁଂଜିବାକୁ ଦେଉଛ—ତାହା ପାପ

ନୁହଁ ? ତୁମେ ମୃତ୍ୟୁଠାରୁ ଆମକୁ ଲୁଚାଇ ରଖି ପାପ କରୁନାହଁ ? ବଧୀତାର ବରୁଦ୍ଧାଚରଣ କରୁନାହଁ ?

ସବତା କହେ—ମୁଁ ନଜେ ବଧାତା । ମୋର ପାପ ପୁଣ୍ୟ କଛି ନାହିଁ । ମୃତ୍ୟୁ ମୋର ସହଚାରିଣୀ, ସେଇ କେବଳ ପାପପୁଣ୍ୟ ବଚ୍ଚାର କରେ ଅଥଚ ପାପୀ ଓ ପୁଣ୍ୟବାନ ଉଭୟଙ୍କୁ ମୋଠାରୁ ଛଡ଼ାଇ ନେଇ-ଯାଏ—ବାଗାନରୁ ଫୁଲ ଛଡ଼ାଇ ନଏ । ମୋ ପାଖରେ ତୁମର ପାପ ଓ ଶ୍ୟାମବାବୁଙ୍କ ପୁଣ୍ୟ ସମାନ ଫଳ । ମୋର ସ୍ତନ ପାପୀ ଓ ପୁଣ୍ୟବାନ ଉଭୟଙ୍କ ପାଇଁ । ଆସ ମୋର କୋଳକୁ ଆସ । ମୋର ସ୍ତନକୁ ଧାରଣ କର ଓ ମୋତେ ଶୋଷି ଖାଅ । ପୁଷ୍ଟ ହୁଅ ।

ସବତାର କଥା ସବୁ ମୋତେ ଅସ୍ପଷ୍ଟ ମନେହୁଏ । ମୋର ଜ୍ଞାନ ହଜଯାଏ । ମୁଁ ତାକୁ ମୋର ରକ୍ଷାକର୍ତ୍ତୀ ଓ ତ୍ରାଣକର୍ତ୍ତୀ ବଚ୍ଚାରେ । ତା'ପାଖରେ ସାନ ହୋଇଯାଏ । ସେ ସବୁବେଳେ ହସୁଥାଏ । ଯାହା ତାକୁ ମାଗିବ ହସି ହସି ଦେଉଥାଏ । ମୁଁ ତା' କୋଳରେ ମୁହଁ ଗୁଞ୍ଜିଦଏ । ତାକୁ ଶୋଷେ । ତାକୁ ଜାବୁଡ଼ି ଧରେ । ସେ ମୋତେ ତା'ଭିତରକୁ ଟାଣିନଏ । ତା' ପେଟ ଭିତରକୁ ଟାଣିନଏ । ତା' ପରେ ମତେ ଲାଗେ ଯେ ସେ ମୋତେ ସବୁବେଳେ ଜନ୍ମ କରୁଛି । ସେଇଥିଲାଗି ନମିଷକ ଭିତରେ ସେ ମୋତେ ସମ୍ମୋହିତ କରି ତା' ରେକ୍ସାରେ ବସାଇ ତା' ଘରକୁ ନେଇଗଲା ।

ଦୁଇଟିଦିନ ଓ ଦୁଇଟିରାତି ସବତା ମୋତେ ରଖିଲା । ସେ ଦୁଇଟିଦିନ ଓ ଦୁଇଟିରାତି ମୁଁ ପ୍ରାୟ ଅଚେତନ ଥିଲି । ତୃତୀୟଦିନ ସକାଳେ ସେ ମୋତେ ଶଯ୍ୟାରୁ ଉଠାଇ ଦେଲା—ମୋ ମୁହଁକୁ ଗୁହିଁଲା କେତୋଟି ମୂହୂର୍ତ୍ତ । ତା'ପରେ ହସିଦେଲା । ମୋତେ ଲାଜ ଲାଗିଲା । ଛୋଟିଆ ପିଲାଟିଏ ଭଳି ମୁଁ ଲାଜରେ ହାତକୁ କୁଣ୍ଢାଇ ପକାଇଲି । ସେ ମୋତେ ଚୁମା ଦେଲା—କହିଲା—ଏବେ ଯାଅ ।

ମୁଁ ତା କଥା ମାନି ସୁନାପିଲାଟିଏ ଭଳି ଫେରି ଆସିଲି । ମୋତେ ସବୁ ନୂଆ ଲାଗିଲା । ବାଟଘାଟ ଦୋକାନ ବଜାର ନଈ ଆକାଶ

ଲୋକବାକ ପଶୁପକ୍ଷୀ ସମସ୍ତ ନୂଆ ଲାଗିଲେ । ସତେକି ସମସ୍ତେ ଜନ୍ମ ହେଉଛନ୍ତି । ସବତା ସମସ୍ତଙ୍କୁ ଜନ୍ମ କରୁଛି !

ସେଇ ମଶାଣୀବାଟେ ଫେରିବା କଥା । ମୁଁ ଉତ୍ଫୁଲ୍ଲ ମନରେ ଶୀତଳମନରେ ମଶାଣୀକି ଗଲି । ଭାବଲି—ସୁରବାବୁ ପୋଡ଼ାହେବା ଜାଗାଟା ଦେଖିଯିବି । ସେଠି ଗୋଟେ କାଠଚମ୍ପା ଗଛଥିଲା । ଜୁଇର ନାମଗନ୍ଧ ନଥିଲା । ମାଟି ସମତୁଲ ହୋଇ ଯାଇଥିଲା । କୁଆଟିଏ ସେଠି ବସି ତା' ଥଣ୍ଟ ବଙ୍କା କରି ମୋତେ ଅନାଇ ଲାଗିଲା । ଆଖପାଖରେ ବହୁତ ପାଉଁଶ,କୁଲାଚୁଣ୍ଡାତକିଆ ହେଁସ, ମସିଣା ହାଡଜମା ହୋଇଥାଏ । ଇତସ୍ତତଃ ପଡ଼ିଥାଏ । ମୁଁ ସେଠି ଦଣ୍ଡେ ଠିଆ ହେଲି । ସବୁ ଶୂନ୍‌ଶାନ୍ — ମାଷ୍ଟ ଏ କଏ ? ସବତା ବୋଧେ ! ମଶାଣୀରେ ବୁଲୁଛି । ସବୁ ହାଡ ପାଉଁଶ ଘାଣ୍ଟି କଣ ଖୋଜ ଛି । କାହାକୁ ଖୋଜୁଛି ? ସୁରବାବୁକୁ ? ସୁରବାବୁ ମରିଛନ୍ତି ତ ? ଯଦି ମରିଥାନ୍ତି—ସବତା କଣ ତାଙ୍କୁ ଫେରି ଜନ୍ମ କରିବ ? ସବତା ଏମିତି କଣ କି ? କଏ କି ?

ମୋ ଭିତରେ କଏ ଯେମିତି ଏକ ଅଦ୍ଭୁତ ଭୟ ଓ ଆନନ୍ଦରେ ଥରିଉଠିଲା । କଏ ଯେମିତି କହି ଉଠିଲା—ଚୁପ୍‌କର । ସବତା କଏ ସେ ବିଷୟରେ ମୁଣ୍ଡ ଘୂରା ନାହିଁ । ସବତା ନାସ୍ତା । ସେ ତୁମ ସମସ୍ତଙ୍କୁ ଜନ୍ମ କରିବ । ତୁମ୍ଭେମାନେ ତାକୁ ଦେଖିବ, ପୁଷ୍ଟହେବ ଓ ସବୁବେଳେ ଜନ୍ମ ହେବ । ଶୀଘ୍ର ଏ ସ୍ଥାନ ତ୍ୟାଗକର । ଏଠି ବର୍ତ୍ତମାନ ଏଲୁଡ଼ୀ ଜଳିବ ।

—୦—

# ବିହଙ୍ଗର ଉଚ୍ଚାକାଂକ୍ଷା

ଅନନ୍ତ ଓ ଅସୀମ ଆକାଶ ବକ୍ଷରେ ସେଦିନ ଉଡ଼ି ବୁଲୁଥିଲା କ୍ଷୁଦ୍ର ପକ୍ଷୀଟିଏ । ତା'ର ଊର୍ଦ୍ଧ୍ୱ ଦେଶରେ ମହାକାଶ ବକ୍ଷରୁ କ୍ଷୁଦ୍ର ଅଗ୍ନିପିଣ୍ଡଟିଏ ସଦୃଶ ପ୍ରଚଣ୍ଡ ମାର୍ତ୍ତଣ୍ଡ ସ୍ୱୀୟ ତେଜୋରାଶିରେ ବିଗଳିତ ହୋଇ ଚତୁର୍ଦ୍ଦିଗକୁ ଯେପରି ବହ୍ନି-ପ୍ଲାବିତ କରୁଥିଲେ । ନିମ୍ନ ଦେଶରେ ନିଦାରୁଣ ଦାବ-ଦଗ୍ଧ ଧରଣୀ, ଅସହ୍ୟ ସୂର୍ଯ୍ୟତାପର ଦହନ ଭିତରେ ତା'ର ଅନ୍ତରାତ୍ମା ମରୁ-ଅଗ୍ନିରେ ବିକଳ ହୋଇ କାନ୍ଦି ଉଠୁଥିଲା । ଉଡ଼ନ୍ତ ଶୀପୁମାନ ବିହଙ୍ଗଟି ତା'ର ଅତି କ୍ଷୁଦ୍ର ପକ୍ଷ ଦୁଇଟି ବିସ୍ତାର କରି ଭାବିଲା –

ହାୟ ! ମୁଁ ଯଦି ମୋର ଏହି ଡେଣା ଦୁଇଟିର ଛାୟାରେ ଦାବଦଗ୍ଧ ଧରଣୀର ଏହି ଅତ୍ୟୁଷ୍ଣ ହାହାକାରକୁ ଶୀତଳତର ଆଶ୍ୱାସନାରେ କିଂଚିତ୍ ଦୂର କରିପାରନ୍ତି ।

ଏତିକି ଭାବି ସେ ତା'ର ବିହଗ-ଦୃଷ୍ଟି ନିମ୍ନକୁ ନିକ୍ଷେପ କଲା । ଯୋଜନ ଯୋଜନ ବ୍ୟାପୀ ବିସ୍ତୃତ ଧରଣୀର ବକ୍ଷଦେଶକୁ ଶୀତଳ କରିବା ସାଧ୍ୟାତୀତ ବ୍ୟାପାର । ମାତ୍ର ବିହଗଟି ତା'ର ବିସ୍ତାରିତ ଡେଣା ଦ୍ୱାରା ପୃଥିବୀକୁ ଘୋଡ଼ାଇ ରଖିବା ଲାଗି ଆପ୍ରାଣ ଚେଷ୍ଟା କଲା । ତା'ର କ୍ଷୁଦ୍ର ଡେଣା ଦୁଇଟିର କ୍ଷୁଦ୍ର ଛାୟାପାତରେ ଭୂପୃଷ୍ଠର କିୟଦଂଶ ମଧ୍ୟ ଶୀତଳ ହେଉଥିଲା କି ନାହିଁ ତାହା ଭିନ୍ନ କଥା । ମାତ୍ର ବିଚରା ବିହଙ୍ଗଟି ପୃଥିବୀ ପୃଷ୍ଠରେ ତା'ର କ୍ଷୁଦ୍ର ଡେଣା ଦୁଇଟିର କ୍ଷୁଦ୍ର-ଛାୟା ବିସ୍ତାର ଠିକ କି ଦେଖିବା ଲାଗି ବହୁତ ବ୍ୟାକୁଳ ହେଲା । ସେ ବହୁତ ନିରୀକ୍ଷଣ ମଧ୍ୟ କଲା । ମାତ୍ର ନାଃ ! ବିଶାଳ ଧରଣୀର କେଉଁ ଅଂଶରେ ଯେ ତାର କ୍ଷୁଦ୍ର ଡେଣା ଦୁଇଟିର କ୍ଷୁଦ୍ର ଛାଇ ଠିକି କି ଧରାର ତାପ ଦୂରୀକରଣରେ ନିୟୋଜିତ ହୋଇଅଛି ତା'ର କ୍ଷୁଦ୍ର ଆଖି ଦୁଇଟିର କ୍ଷୀଣ-ଦୃଷ୍ଟି ତାକୁ ଛୁଇଁ ପାରିଲା ନାହିଁ ।

ବିଚରା ବିହଙ୍ଗଟି ତା'ର ଛାୟା-ଅନୁସରଣରେ ସେହି ରୌଦ୍ରତପ୍ତ ଆକାଶରେ ଇତସ୍ତତଃ ପାଗଳ ପରି ଉଡ଼ି ବୁଲିଲା । ପ୍ରଚଣ୍ଡ ସୂର୍ଯ୍ୟ ତାପରେ

ତା'ର ଦେହ ଓ ପ୍ରାଣ ନିଃସ୍ତେଜ ହୋଇ ଉଠିଲା । ବହୁକାଳ ଉଡ଼ି ବୁଲିଲା ପରେ ସେ ହଠାତ୍ ଅଚେତନପ୍ରାୟ ଧରଣୀ ଉପରେ ପତିତ ହେଲା ।

କିଛିକ୍ଷଣ ସମୟ ଉତ୍ତରେ ସେ ଅନୁଭବ କଲା, ପୃଥିବୀ-ନିଃସୃତ ଦୁଃସହ ତାପରେ ତା'ର ବକ୍ଷ ଦଗ୍ଧୀଭୂତ ହୋଇଯାଉଅଛି । ଧୀରେ ଧୀରେ ଚକ୍ଷୁ ଉନ୍ମୀଳନ କରି ସେ ଦେଖିଲା – ତାର ଚତୁର୍ଦ୍ଦିଗରେ ଭୀଷଣ ରୌଦ୍ର ବିକଟ ନୃତ୍ୟ କରୁଅଛି । ଅନନ୍ତ ମହାକାଶରେ ବନ୍ଦୀ ସଦୃଶ ଗୋଟିଏ ଆଗ୍ନେୟ ପିଣ୍ଡରୁ ଅଜସ୍ର ଅଗ୍ନି-ସ୍ରୋତ ବହିର୍ଗତ ହୋଇ ଧରଣୀକୁ ଦହନ କରୁଅଛି ଏବଂ ଧରଣୀ ବିକଳରେ ଛଟପଟ ହେଉଅଛି ।

ବିହଙ୍ଗଟି ଆଉ ମଧ୍ୟ ଅବଗତ ହେଲା ଯେ ସେ ପୃଥିବୀକୁ ସ୍ୱୀୟ ପକ୍ଷ ତଳେ ଆଚ୍ଛାଦନପୂର୍ବକ ଆଲିଙ୍ଗନ କରି ପଡ଼ିଅଛି ଏବଂ ଉତ୍ତପ୍ତ ପୃଥିବୀର ସମସ୍ତ ଉତ୍ତାପ ତା'ର କ୍ଷୁଦ୍ର ବକ୍ଷ ଭିତରେ ପ୍ରବେଶ କରି ତାକୁ ନିର୍ମମଭାବେ ଦଗ୍ଧ କରୁଅଛି ।

ନିଦାରୁଣ ଜ୍ୱାଳାରେ ଅସ୍ଥିର ହୋଇ ବିହଙ୍ଗଟି ଚିତ୍କାର କରି କହି ଉଠିଲା—

ଉଃ ! ଏ କ'ଣ ହେଲା ଧରଣୀ ? ତୁମର ସମସ୍ତ ଉତ୍ତାପକୁ ଗ୍ରହଣ କରି ଶୀତଳତା ପ୍ରଦାନ କରିବି ବୋଲି ତ ମୁଁ ଏ ଦାୟିତ୍ୱ ନେଇ ନଥିଲି । କ୍ଷୁଦ୍ର ପକ୍ଷୀଟିଏ ମୁଁ ! କେତେ ଟିକିଏ ବା ମୋର ପକ୍ଷ ଦୁଇଟିର ବିସ୍ତାର । ଆଉ କେତେ ସାମାନ୍ୟ ବା ମୋର ଏହି ବକ୍ଷପଞ୍ଜର । ଏହି କ୍ଷୁଦ୍ର ପଞ୍ଜରସ୍ଥ କ୍ଷୁଦ୍ର ହୃଦୟଟି କ'ଣ ଶୋଷିନେଇ ପାରିବ ସମଗ୍ର ପୃଥିବୀବକ୍ଷର ସମସ୍ତ ଦୁଃସହ ଉତ୍ତାପର ଜ୍ୱାଳା ? ମୁଁ ମରିଯିବି !

ତାପଦଗ୍ଧ ଜ୍ୱାଳାରେ ମୁମୂର୍ଷୁ ପ୍ରାୟ କ୍ଷୀଣ କଣ୍ଠରେ ଧରଣୀ କହିଲା—

ବିହଙ୍ଗମ ! କେବଳ ଗୁପ୍ତାପାତର ଆଶ୍ୱାସନାରେ କେହି ପୃଥିବୀର ଉତ୍ତାପ-ଜ୍ୱାଳା ହରଣ କରିପାରେ କି ? ତୁମର ସମଗ୍ର କାମ୍ୟାପାତ ଦ୍ୱାରା ବି ମୋର ଏହି ଉତ୍ତପ୍ତ ଜ୍ୱାଳା କିଂଚିତେ କ୍ଷୟ ହୋଇ ନ ପାରେ । ତୁମେ ମୋଠାରୁ କେବଳ ମାତ୍ର ବିହଙ୍ଗ-ପରିମାଣ ଜ୍ୱାଳା ଗ୍ରହଣ କରିଅଛ ଏବଂ

ଏ ରୂପ ମୃତ୍ୟୁ-ଯନ୍ତ୍ରଣା ଅନୁଭୋଗ କରୁଅଛ । ସମଗ୍ର ପୃଥିବୀର ଜ୍ୱାଳା କେତେ ତାହା ତୁମେ କାହୁଁ ବୁଝିବ ? ତୁମେ କାହୁଁ ବୁଝିବ ଯେ ଏଠାରେ ମୁଁ ନିତ୍ୟ-ଜ୍ୱାଳା ଭୋଗ କରୁଅଛି ? ମୋର ଜ୍ୱାଳା ମଧ୍ୟରୁ ହିଁ ଲକ୍ଷ କୋଟି ପ୍ରାଣୀ ନିତ୍ୟ ଜନ୍ମଲାଭ କରୁଛନ୍ତି—ବଞ୍ଚି ହେଉଛନ୍ତି—ଏବଂ ମୃତ୍ୟୁ ବରଣ କରୁଛନ୍ତି । ମୋର ଏହି ଜ୍ୱାଳା ହରଣ କରିନେବାର ଉଚ୍ଚାକାଂକ୍ଷା ଯେଉଁମାନଙ୍କର ସେମାନେ ମୃତ—ତୁମଭଳି ମୃତ ଓ ଅହଙ୍କାରୀ ।

ପୃଥିବୀର ଜ୍ୱାଳା ହରଣ କରିବାର ସ୍ୱପ୍ନ ନେଇ ତୁମେ ଆକାଶ ବକ୍ଷରେ ଉଡ଼ି ବୁଲୁଥିଲ ପାଗଳଭଳି । ତୁମରି ଭଳି ଆକାଂକ୍ଷା ଯେଉଁମାନଙ୍କର ସେମାନଙ୍କୁ ମୋ ଉପରେ ସଜୀବ ହେବାକୁ ପଡ଼ିବ ଏବଂ ସେମାନେ ମୋର ଏହି ଜ୍ୱାଳାକୁ ଦୂର କରିବା ପରିବର୍ତ୍ତେ ଆହୁରି ବଢ଼ାଇ ଦେଇଥାନ୍ତି ମାତ୍ର ।···ମୂଢ଼ ! ବର୍ତ୍ତମାନ ମଧ୍ୟ ସମୟ ଅଛି । କାତର ହୁଅନାହିଁ—ମନ ମଧ୍ୟରୁ ଉଚ୍ଚାକାଂକ୍ଷା ତ୍ୟାଗକର ।···ତୁମର ମୃତ୍ୟୁ ବର୍ତ୍ତମାନ ଆସନ୍ନ ।

× × ×

କହିବା ବାହୁଲ୍ୟ ଯେ, ଅଳ୍ପକ୍ଷଣ ଭିତରେ ପକ୍ଷୀଟି ପୃଥିବୀର ଯନ୍ତ୍ରଣା ଦୂର କରିବା ପରିବର୍ତ୍ତେ ସ୍ୱୟଂ ପାର୍ଥିବ ତାପ ଯନ୍ତ୍ରଣାରୁ ମୁକ୍ତ-ହୋଇ ପୁନଶ୍ଚ ପ୍ରାଣାକାଶ ଭିତରକୁ ଉଡ଼ିଗଲା ଓ ସେଠାରେ ମିଶିଗଲା ।

—୦—

# ଶେଷ ସନ୍ଧ୍ୟାର ପ୍ରଳାପ

ବୁଧିଆ ! ସେ କିଏ କରେ ? ସେ କିଏ ଆସିଥିଲା କହିଲୁ ? ଅଜ ହଞ୍ଜିବେଳେ ? ଓହୋ ! ବୁଧିଆରେ ! ମୋର ଧିଅ କଣ ଦେଇଯାଉଛୁ । ମୋତେ ଟିକିଏ ଧଅ । ହଇରେ ସେ କିଏ ? ସତରେ ସେ କିଏ ବା ?

ସତ କହଉଚୁ ତୁ ? ଆଖି ଛୁଇଁଲୁ । ସତ କହୁଚୁ ତୁ ସେ ଭରତ ସେନାପତି ପୁଅ ଘନବନ୍ଧୁ ? ଆରେ ନାଇଁବା ତୁ ମିଛ କହୁଥିବୁ । ତୋର କଣ ଅଛି ? ତୁ ତ ବାଇଆଟେ – ଯାହା ଧରିଥିବୁ ସେଇଆ । ତୁ ଛତରାଟା ସବୁଦିନେ ମତେ ଏମିତି ମିଛକଥା କହି ଭୁଲଉ ଦଅଉ ।

ମିଛ କହଉ ନାହିଁ ? କହଉ ନାଇଁ ନାହିଁ କରଉ । ସେଦିନ ମିଛ କହି ନ ଥିଲୁ ? ପୀତାମ୍ବର ପାତ୍ରୀ ତା' ଝିଅ ବାହାଘର ଖିଆପିଠା ଖାଇବାକୁ ମତେ ଡାକିଥିଲା ହଇରେ ? ତୁ କାହିଁକି ମତେ ମିଛ କହି ସେଠିକି ପଠେଇ ଦେଲୁ ? ତୁ ଭାବିଲୁ—ମଲ୍ଲୀ ବୁଢ଼ୀର ଅଇଁଷ ଭୁଜଣରେ ଭାରି ଆଶା । ଯାଉ—ମାଛ ବେସର ମାଛ ମହୁର କାନକା ଅମଳ କରି ପୁଳାଏ ଗିଳି ଆସୁ । ହଇରେ ଉହବ ! ତୁ ମୋର କାଳଶତ୍ରୁ । ମିଛକହି ମତେ ପଠାଇ ଦେଲୁ । ମୁଁ ସେଠିକି ଗଲି । ତା' ଖଳା ବାଡ଼ରେ ମାଣ୍ଡପଙ୍କ ପଙ୍ଗତ ବଇଥିଲା । ସେନାପତି ସାଇଆ, ଭଞ୍ଜତ ସାଇଆ, ପାତ୍ରୀ ସାଇଆ ସବୁ ମଣ୍ଡପେ ବଇଥିଲେ ପତର ପକେଇ । ମୁଁ ସେଠି ଯାଇ କାହୁଁ ଅଇଲି ଭଳିଆ ଠିଆହେଲି । ଲୁଗାଟା କଳ ଆଲୁଅ ସେଠି ଜଳୁଥାଏ । ପୀତାମ୍ବର ପାତ୍ରୀ ନିଜେ ସେଠି ଠିଆହେଇ ପରଶୁଣିଆଙ୍କୁ ବରାଦ କରୁଥାଏ । ମୋ ଉପରେ ଆଖି ପଡ଼ୁ ପଡ଼ୁ ମୁହଁ ବୁଲେଇଦେଲା । ଭାରି ଘିନମାନ ଲାଗିଲାରେ ! କେହି ତ ମତେ ଡାକୁ ନ ଥାନ୍ତୁ – ଭାବିଲି— ପକେଇ ଆସିବ । ଫେର ଭାବିଲି—ନା ନା ପୀତାମ୍ବର ପାତ୍ରୀ ଚଣ୍ଡାଳିକ ଯାଉ । ଆଜ ପରା ଦିନରେ ମୁଁ ଯଦି କାଙ୍ଗାଳ ହେଇ ଏଠୁ ଉଠିଯିବି ତେବେ କାଳେ ମୋ ନିଃଶ୍ୱାସରେ ତା' ଝିଅ ଜୋଇଁଙ୍କର କିଛି ଅମଙ୍ଗଳ ହବ ! ସେଇଠୁ ବଳେ ବଳେ ଯାଇ ସବା ଶେଷ ମୁଣ୍ଡରେ ବସିଲି । ଯାହା ଦେଲେ

ଖାଇଲା—ଆଇଲା । ହାତରେ ଗଧିଆ—ପୀତାମ୍ବର ପାଟ଼ୀ ମୋ ମୁହଁ ଗୁହିଁଲା ନାହିଁ ସେଦିନ । କହିଲୁ ଭଲ, ମୁଁ ତାଙ୍କୁ କଣ ନ ଦେଇଛି ଜୀବନଯାକ ?

କଣ ଦେଇଛି ? ହଇରେ ଛତରା – ତୁ ଫେର୍ ଏତ୍ତେ ବେହେଲ ହଇରେ ! ତୋ ଗାଲ ଚିପିଦେଲେ ଦୁଧ ବାହାରି ପଡ଼ିବ । ପଚାରୁଛୁ – କ'ଣ ଦେଇଛି ? ଯାହା ଦେଇଛି ଆଉ କଣ ସେ ଜନ୍ମରୁ ଏତେ ଟିକିଏ ମୋ ପାଖରେ ସାଇତି ରଖିଛି ଯେ ତତେ ଦେଖେଇ ଦେବି ? ସବୁ ଦେଇ ଦେଇଛିରେ ସବୁ ଦେଇ ଦେଇଛି । ଖାଲି କ'ଣ ପୀତାମ୍ବର ପାଟ଼ୀକି ? ସୁର ରାଉତ, ମଦନା ବଣିଆ, ଜମ୍ବୁ ମିଶର, ସୁଦରଶନ ଚଉଧୁରୀ କିଏ ନୁହଁ ? କିଏ ନ ନେଇଛନ୍ତି ବା ? କାହାକୁ ନ ଦେଇଛିରେ ? ଏ ନଥାଁ ନଗା ଗାଁଠାଯାକର ଅଣ୍ଟିରି ମୋର ଧାରୁଆ ବା ! ଆଉ ଅଛି ? ଦେଖିନୁ, ଆଉ ଅଛି ? କିଛି ନାହିଁ ପରା । କିଛି ନ ଥିଲେ ନାହିଁ । ଥିଲେ ବା ଆଉ କଣ କରିଥାନ୍ତି ? ଥିଲେ କଣ ଆଜି ଯେ ଆଇଥିଲା ସେ ମୋଠୁଁ ନେଇଥାନ୍ତା ?

ସେଇ ବା ସେଇ । ଯେ ଆଜି ଆଇଥିଲା । କହୁଚୁ ତ ତୋ ଭୁଣ୍ଡରେ ଭରତ ସେନାପତି ପୁଅ ଦୀନବନ୍ଧୁ ବୋଲି । ସେ କଣ କିଛି ନେଇଥାନ୍ତା ମୋ ଠଉଁ ? କିଛି ନେଇ ନ ଥା'ନ୍ତା । ସେ ନେବାର ହୋଇଥିଲେ ତ କୋଉଦିନୁଁ ତା' ପାଦପଦ୍ମରେ ମୋର ସର୍ବସ୍ୱ ଅଜାଡ଼ି ଦେଇଥାନ୍ତିରେ ! ଆଉ ଏତେ ଲୋକ କାହିଁକି ଶାଗୁଣା ଭଳିଆ ଥଣ୍ଟେ ଥଣ୍ଟେ ନେଇ ଆଜି ମତେ ଏମିତି କଙ୍କାଳ ଭଳିଆ କରି ଏଠି ପକେଇ ଦେଇଥାନ୍ତେ ? ସେ କଣ ନେଲାବାଲା କି ? ସେ ଖାଲି ଦେଲାବାଲା ।

ହଇବା, ଖାସ ଦେଲାବାଲା ! ! ସେଇ ତ ଅସଲ ନେଲାବାଲାରେ ଗଧିଆ । ସବୁ କଥାକୁ ନାହିଁ ନାହିଁ କରିବ—ଆଉ ଅସଲ ଜିନିଷଟି କୋଉ ଖଞ୍ଜିରେ ନେଇ ତା' ମୁଣିରେ ପୂରେଇ ଚାଲିଯିବ । ନେଇନ ? ନେଇନ ସେ ? ସେ ତ ମୋ ଅଜାଣତରେ ମୋ କଲିଜା ଟାଣି ନେଇଛିରେ— । ତୁ କହିଲୁ ଗଧିଆ – ତୁ କହିଲୁ । କହ ବା କହ— ମୋ ସୁନାଠା ପରା—ତୁ ବାଳୁତଟିଏ ହେଲେ କଣ ହେବ ତୋର ଖାସା ବୁଦ୍ଧିରେ ଧନ । ତୁ ତ ତା'ରି ଭଳିଆ ହବୁରେ ବଡ଼ ଦିନକୁ । ତା'ରି

ଭଳିଆ ହବୁ ଅବିକଳ—ସେଇ ଭରତ ସେନାପତି ପୁଅ ଘାନବନ୍ଧୁ ଭଳିଆ ବା ! ତୁ ନନ୍ଦିଲୁ ଦେଖି ସେ ଯନ୍ଦ ମୋ କଳିଜା ଟାଣି ନ ନେଇ ଥା'ନ୍ତା ତ ମୁଁ ଏମିତି ହୋଇଥାନ୍ତି ?

ଗଧିଆରେ—ଫଡ଼ିଆରୁ ଫାଡ଼େ—ନଇଲେ ଛୁରିରୁ ଫାଡ଼େ—ଗାଲରୁ ଫାଡ଼େ କି ଜଙ୍ଘରୁ ଫାଡ଼େ—ଖୁମ୍ପି ନବ ସମସ୍ତ ଜଗତ ଜାଣିବ । ଆଉ କଳିଜା ? ତାକୁ ଯେ କଏ କୋଉ ଖଞ୍ଜରେ ନେଇଯାଏ କଏ କେମିତି ଜାଣିବ ବା ? ନିଜେ ତ ଜାଣି ପାରିବ ନାଇଁ ଆଉ ! !

ସେଇ ଘାନବନ୍ଧୁରେ ଗଧିଆ । ଏଡ଼କଟିଏ ହେଇ ଥାଏବା । ମୁଁ ଭୁଆସୁଣୀ ବୋହୂ ହେଇ ଏ ଗାଁକୁ ଆଇଲାବେଳକୁ ତାର ଗଜୁଗ୍ରି ଆଉ ଥାଏ କଣ - ପୁଚୁପୁଚୁ ଗାଲ ଅରୁଆ ଚଟଉ ପିଠା ଭଳିଆ—ପଗରୀ ନଣ୍ଡର କଳାଧୂମର ପାଣି ଭଳିଆ ଆଖି ଦୁଇଟାରେ ତାର । ଯାହା ଆଖିରେ ତା' ଆଖି ପଡ଼ିବ ସେ ସେଇଠି ଘାଇହୋଇ ବଶ୍ୟ ହୋଇଯିବ । ଯୋଉ ସୁନ୍ଦର ! ଗଧିଆରେ ଯୋଉ ସୁନ୍ଦର ! ହେଲେ ସେ କାହାକୁ ଗୁହିଁବ କି ? ଇସ୍କୁଲ ପଢ଼ା କରୁଥାଏ ସେଣେ ଯାଇ କୁଆଡ଼େବା—ମୋ ମନେ ପଡ଼ୁନି—ଢିଙ୍ଗାରପୁର ନା କୋଉଠି—। ଛୁଟିରେ ଆସେଇ ଗାଁକୁ—। ଝୁଲି ଝୁଲି ଯାଉଥିବ ଗାଁ ଦାଣ୍ଡରେ ଗଜା ଗୁଣ୍ଠୁଣି ହାଣ୍ଡିଟିଏ ଭଳି । ଖୋଜ ତଳେ ପିମ୍ପୁଡ଼ିଟିଏ ବ ମରିବ ନାଇଁ । କଏ ଭଲ ତାକୁ ଗୁହିଁ ନ ଛୁଇଁ ଘଡ଼ିଏ ସେତେବେଳେ ? ଗାଁ ଯାକର ଝିଅ ବୋହୂ କବାଟ ସନ୍ଧିରେ, ଝରକା ସନ୍ଧିରେ ତାକୁ ଗୁହିଁ ରହୁଥିବେ । ମୁଁ ଦେଖିଛୁ ବା ମତେ କଣ କହୁଛୁ ? ଆରେ ସବୁ ସଖି ସାବିତ୍ରିଙ୍କି ମୁଁ ତୁମ ଗାଁର ଚହ୍ନେଇବା ! ମୋତ ଉପରେ ସିନା ଖାନକୀ, ଦୋଗୁରୁଣୀ ଅପବାଦ ଲଦିଦେଲେ ଏଇ ତୁମ ଗାଁ ବାଲା ଯୋଗିମାଖିଆଏ ! ରଇଜଳାଏ ଦେବ-ଲଗି ଅଛୁଣିଆକୁ ଟକଳାପଣରେ ଅଇଁଠା କରିଦେବେ । ଫେର୍ ସେଇ ଅନ୍ୟପରି ପଦାର୍ଥକୁ କହିବେ ମାଗି ହେଇଗଲା । ନିଜେ ଛୁଇଁଦେଇ କହିବେ ଅଛୁଆଁ । ନିଜର ପାପକୁ ଜଣକ ଉପରେ ଅଜାଡ଼ି ଦେବେ । ଶେଷକୁ ଅପବାଦ ଦେବେ ପାପ—ପାପ—ତିଫାଲ୍ ଛୁଅ ।

ମୋ ଘଇତା ତ ବାହାଘର ଦୁଇବରଷ ନ ପୂରୁଣୁ ହାଟେ ହାଇଜାରେ ମୋତେ ଛାଡ଼ି ଚାଲିଗଲା ସେପାରିକି—। ମୋର ସେତେବେଳେ

ଭଗବତ୍ତବନରେ ଗାଧିସୁନ୍ଦର ! ଧିଅରେ ମୋର ନଆଁ ଜଳୁଥାଏ । ସେଇ ନଆଁକୁ ଧରି ଏଠି ମାଟି କାମୁଡ଼ି ପଡ଼ି ରହିଲି । କାହା ସାଙ୍ଗରେ କୁଆଡ଼େ ପଳେଇ ଗଲି ନାହିଁ । ଆରେ କାହା ସାଙ୍ଗରେ କୁଆଡ଼େ ଯାଇଥାନ୍ତି ? କାହିଁକି ଯାଇଥାନ୍ତି ? ମୋ ମନ ମନ୍ଦିରରେ ଗାଧିଆ । ବାପଘରେ ତ କେହି ନ ଥିଲେ । ଭାଇ ତ ରହିଲା ଯାଇଁ କଲିକତାରେ ଗୋଟେ ଖାନଖାକ ଧରି । ଆଉ ଘର ମାଡ଼ଲା ନାହିଁ । ମୁଁ ମାଟି କାମୁଡ଼ି ଏଇ ଗାଁରେ ପଡ଼ି ରହିଥାଏ । କାଇଁକି କହିଲୁ ?

ତୁ ବିଶ୍ୱାସ କରିବୁ ନାହିଁ—କେହି ସତ କରିବେ ନାହିଁରେ—ସମସ୍ତେ କହିବେ ଗଣ୍ଡ ବେଧ ପକେଇବାକୁ ଏ ଗାଁରେ ପଡ଼ି ରହିଥିଲା । କିଏ କାହା କଥା ଜାଣେଇରେ ? ଏଠି ତିରିଶି ବର୍ଷକାଳ ଏମିତି ରହିଥିଲି ଖାଲି ସେଇ ଘନବନ୍ଧୁକୁ ଦେଖିବାକୁ ପାଇବି ବୋଲି । ଯୋଉ ଛୁଟିରେ ସେ ଗାଁକୁ ଆସେଇ ମୋ ଆଖି ଡାହାଣୀ ଭଳିଆ ଗ୍ରୁଚ ଭଳିଆ ତା' ପଛେ ପଛେ ଛୁଟଇ । କେତେ ଲୋକଙ୍କୁ ଏ ଆଖି ଦେଖିଛି । ଆଖି ଦେଖି ହେଇ-ଯାଏ । ହେଲେ ତା' ଉପରେ ଆଖି ପଡ଼ିଲେ ଆଉ ଆଖିର ପଲକ ନ ପଡ଼େ । ସମସ୍ତେ କହନ୍ତି ମଲ୍ଲୀବୁଢ଼ୀର ପାପ ଆଖି । ହଇରେ ଗାଁ ଯାକର ମାଈପଙ୍କ ଆଖି ପୁଣ୍ୟ ଆଖି ? ହଉ ହଉରେ ଗାଧିଆ । ସଭିଙ୍କର ମଙ୍ଗଳ ହଉ । ସବୁ ମାଈପଙ୍କ କାଚ ବଜର ହଉ । ଘଇତାକୁ ପିନା ମୋର ବାଡ଼ ଖାଇଲା । ହେ ମାହାପ୍ରଭୁ—ଗାଧିଆରେ ! ଜଗନ୍ନାଥେ ବଡ଼ଲୋକ—ଆଉ ଏ କାଳେ ଗାଁରେ ହଇଜା ନାହିଁ । ସରକାରଙ୍କ ଡରରେ ମାଇଜ ଠାକୁରାଣୀ ଗଡ଼ ଗୁଡ଼ ପଳେଇଛି ।

ସେଇ ଘନବନ୍ଧୁ ବା—ଗାଁ ଦାଣ୍ଡରେ ଯେତେବେଳେ ଚାଲି ଯାଉଥିବ—ମୋ ମନ ହୁଏ—ଟେକି ଆଣନ୍ତି କି ତାକୁ ଦାଣ୍ଡମଝିରୁ । ଜାକିପକାନ୍ତି ଛାତିରେ—ପଣତକାନରେ ବାନ୍ଧି ପକେଇ କୋଉଁରେ ପୁରେଇ ଦିଅନ୍ତି ! କାହିଁକି ମୋର ଏମିତି ମନେ ହଉଥିଲା କହିଲୁ ଗାଧିଆ—ତୁ ପରି ପାଠ ପଢ଼ୁଛୁ—କହିଲୁ ଦେଖି !

କହି ପାରିବୁ ନାହିଁ ? ହଉ ବା—ତୁ କୋଉଠି କହିବୁ ? ସାଇ ମାଈପଙ୍କୁ ଏ କଥା କହିଲେ କିଏ କେତେ ପ୍ରକାର କଥା କହିବେ । କହନ୍ତୁ ବା ଯେ ଯେମିତି । ମୋର ତ ସେଇମିତିଆ ମନ ହୁଏ ତାକୁ

ଦେଖିଲା ମାତ୍ରେ । ଏତେ ସୁନ୍ଦର ପୁଣି ସେ ମୋ ଆଖିକୁ ଦିଶୁଥାଇ ସେତେବେଳେ ! ମୋତେ ଲାଗୁଥାଇ ଏ ଖଡଗଡ଼ାରେ ପଦ୍ମ କେମିତି ଫୁଟିଲାରେ ! କୁଆଁର ପୁନେଇଁର ଦାଣ୍ଡରେ ପୁଞ୍ଚି ଖେଳେଉ । ମଝିରେ ମଝିରେ ସରଗକୁ ଚାହିଁବଏ । ସେଇ ପୁନେଇଁ ଜହ୍ନକୁ ଦେଖି ମନ ମୋର କଣ ହୋଇଯାଏରେ ବାଧୁଆ । ଜହ୍ନ ଦେଖିକା, ଅବିକଳ ସେଇ ପୁନେଇଁ ଜହ୍ନଦେଖିକା ସେ ମତେ ଦିଶେଇ ବା ! ବାଡ଼ିରେ ମୋର ବର୍ଷେ କାକୁଡ଼ି ଫଳିଥିଲା ଯେ ବାଧୁଆ ଗୋଡ଼ ପକେଇବାକୁ ଜାଗା ନ ଥିଲା । ପତର ଦିଶେନି । କାକୁଡ଼ି ଦିଶେଇ । ଥରକର କାକୁଡ଼ି ତୋଳୁଥାଇ । ଚୋକେଇଏ କାକୁଡ଼ି । ମଝିଖଣ୍ଡ ଏକାଦୁଣିଆ ସେତକ ନେଇ ହାଟରେ ବିକି ମତେ ଅଠଣା ଟଙ୍କେ ହଏଇ । କାକୁଡ଼ି ତୋଳି ସାରିଲିଣି – ଆଖି ପଡ଼ିଗଲା, ଆଖି ପଡ଼ିଗଲା ଗୋଟିଏ କାକୁଡ଼ି ଉପରେ । ବାଧୁଆରେ ଶଙ୍ଖୀ ପୁଷି ବଲେଇ ଭଳିଆ ନାଦୁଲି ମାଦୁଲି ଦୁଧିଆଳିଆ କାକୁଡ଼ିଟାଏ – ଏତେ ଲମ୍ବା – ଏତେ ମୋଟା । ଯୋଉ ସୁନ୍ଦର ଦିଶୁଥାଏ । କଅଁଳା ପିଲାଟିଏ ଭଳିଆ । ତାକୁ ତୋଳିଆଣି ଗାଲରେ ଘଷିରେ ଜାକ ଦେଉଥାଇ – ପୁଣି କାତିକିରି ଦେଖୁଥାଇ । ମନେପଡ଼ି ଯାଉଥାଏ ଘାନବନ୍ଧୁ କଥା । ସତେ କି ଘାନବନ୍ଧୁ ମୋ ବାଡ଼ିରେ କାକୁଡ଼ି ହୋଇ ଫଳିଥିଲେ । ମୁଁ ତୋଳି ଆଣିଛି ।

ଆରେ ନାଇଁରେ ବାଧୁଆ—ଘାନବନ୍ଧୁକୁ ମୁଁ କୁଆଡୁ ଜାଣିଥାନ୍ତି ଛୁଟରେ ! ମୋ ଭଳିଆ ଅଲଖଣୀ, ଉଜୁଣୀ, ଖାନକୀର କଣ ଏତେ ପୁଣ୍ୟ ଅଛିରେ ବାଧୁଆ ? ଭଦ୍ର ସେନାପତି ପୁଅ ସେ—ତା' ବାପ ଦେଉଳ ତୋଳାଇଛି – ପୋଖରୀ ଖୋଳେଇଛି—ଇସ୍କୁଲ ବସେଇଛି । କେତେ ପୁଣ୍ୟକରି ସେ ଘାନବନ୍ଧୁକୁ ପାଇଛି ! ଏ ଖଣ୍ଡ ମଣ୍ଡଳରେ କିଏ ଭଲା ତା' ରୂପ ଗୁଣକୁ ବାଖିନେ ନାଇଁ ? ଏବେ ପୁଣି କୋଉଠି ସେଠି କଟକ ମୂଲକରେ କେତେ ନାଁ କମେଇଲାଣି । ବଡ଼ ଡାକ୍ତର ହୋଇଛି ପରା ? ହଜାର ହଜାର ଟଙ୍କା କମଉଛି । କେତେ ଦୁଃଖୀ ରଙ୍କୀ ଅନାଥ ହେଉଣ୍ଡିଙ୍କ ପେଇଁ କୁଆଡ଼େ ଦାନା କନା ବେବସ୍ଥା କରିଛି । କେତେ ଅସାଧ ରୋଗୀଙ୍କ ଯମ ହାତରୁ ଛଡ଼େଇ ଆଣିଛି ! ସବୁ ଶୁଣେରେ ବାଧୁଆ ! ତା' ପ୍ରଶଂସା ଶୁଣିବାକୁ ଏଠି ଏ ଗାଁରେ ମୁଇଁ ଏ ପୋଡ଼ା କାନ ପାରି ରହିଥାଏ । ହାଡ଼ିଆ ମା'ର କଣ ଭକ୍ତ ପ୍ରସାଦ ହଉଥାଏ

ସେ କଟକ ଗଲା ଦୀନବନ୍ଧୁ ପାଖକୁ । ମାଗେଣା ତାକୁ ଘରର ରଖି ଔଷଧ ଦେଲା—ପଥି ଦେଲା । ଝାଡ଼ଝୁଡ଼ ଦେଲା ରୋଗ । ହାଡ଼ିଆ ମା'କୁ ଦେଖିଲୁ ଡଙ୍କୁଣୀଭଳିଆ ଦୁଶଇ ! ସେଠୁ ଆଇଲା ବେଳକୁ ଷୋଳବରଷୀ ଭଳିଆ ଦୁଉଥାଇ । ହାଡ଼ିଆ ମା ସୋଉ ପରଶଂସା ତାର କରୁଥାଇରେ ରାଧୁଆ ? ମୁଁ ତ ଶୁଣିଲାବେଳେ ମୋ ଛାତି କୁରୁଳି ଉଠୁଥାଇ ! ମୋତେ ତ କଣ୍ଟେବାଳି କଣ ପାଇଲା ଭଳିଆ ଲାଗୁଥାଇ ! ମୁଁ ପଚ୍ଚରୁଥାଏ ହାଡ଼ିଆ ମା' ! ଆଉ ଟିକଏ କହବା ଦୀନବନ୍ଧୁ କଣ କଲେ ?

ରାଧୁଆରେ ! ଏ ପୋଡ଼ା ଛାତିରେ ତା'ଲାଗି ଏତେ ମମତା କୋଉଠି ଲୁଚି ଥାଇରେ ? ସେ ଏ ଗାଁରେ ତା' କଥା ପକାଏ ମୁଁ କାନପାତି ମନଦେଇ ଶୁଣୁଥାଇ । କାହିଁକି ଭଲ ଆଜକୁ ତିରିଶି ବର୍ଷ ହେଲା ଖାଲି ତାଆରି କଥା ମୁଁ ଭାବି ମରୁଛି କହିଲୁରେ ମୋ ରାଧୁସୁନ୍ଦର !

ହଇରେ ରାଧୁ ! ମୋର ରାଧୁସୁନ୍ଦର । ସତ କହିଲୁ—ମୋ ଧିହ ଛୁଇଁ କହ । ସେଇ ଦୀନବନ୍ଧୁ ଆଜ ଆଇଥେଲେ ? ସେଇ ଆସି ଏ ଔଷଧ ଟଂକା ଦେଇଗଲେ ?

କାହିଁକି ବା ? କାହିଁକି ସେ ଆଇଥେଲା ଏ ସୁଆଗ ଦେଖେଇବ ବୋଲି ? ଏ ଖାନକୀ ପାପୀଘରକୁ ତା' ଭଳିଆ ପୁଣ୍ୟବନ୍ତ ବଡ଼ଲୋକ ଫେର୍ ଆଇଲା କେମିତିରେ ? ତା' ଦେହରେ ପାପ ଲାଗିଗଲା ନାହିଁ ? ରାଧୁଆରେ ! ସେ କାଳେ ସେଇ ପୋ ଭୁଆଷୁଣୀ ବେଳେ—ସେତେବେଳେ ରକତ ମାଉଁସ ପଶି ଏ ଧିଅ ମୋର ଘୁମ ଭଳିଆ ହେଇଥାଇ—ସେକାଳେ ତାକୁ ଟିକଏ ଦେଖିବ ବୋଲି—ତା' ଓଉଁ ପଦେକଥା ଶୁଣିବ ବୋଲି— ଆହା ! କ ଠାଣୀରେ ତାର—କ ମାଣି ! କୋଇଲି ଭଳିଆ ତା' ହସ ଶୁଭିଯାଉଛି ମୋ କାନକୁ—କଥା କହୁଥିବ···ହସି ଦଉଥିବ । ହସିଲା-ବେଳେ ତାର ଅରୁଆ ଶତଜ ଭଳିଆ ଗାଲ ଦି, ପାଖେ ଖାଲ ହେଇ ଯାଉଥିବ । ପାଟିରେ ତାର ଚନ୍ଦ୍ରଉଦଆ ଜଳା ଉଠୁଥିବ । ସେଇତକ ଦେଖିବ ବୋଲି—ସେଇତକ ଶୁଣିବ ବୋଲି କମ୍ ଥର ତା ପାଖକୁ ବାଆଁରେଇ ହେଇ ଯାଏ ! ଆରେ ରାଧୁଆ—ସମସ୍ତଙ୍କୁ ଅନେଇବ, କଥା

କହିବ, ମୋ ଉପରେ ଆଖି ପଡ଼ୁ ପଡ଼ୁ ଆଖି ଫେରେଇନବା ମୁହଁ ବୁଲେଇନବ । ମୁଁ ପରା ଖାନକୀ-ଟାଏ— ଅଠରହଳଇଚୀଟାଏ—ସେ ପରା ପୁଣ୍ୟବନ୍ତ ଜନ । ଏତେବଡ଼ ଗାଁଟାରେ – ଏଇ ପୃଥିମଣ୍ଡଳରେ ସେଇ ଏକା ଜଣେ ଭଲ ମଣିଷରେ ବୋଧୁଆ । ମୋ ପରା ଲୋକକୁ ଚାହିଁଲେ, ମୋ ପରା ଲୋକ ସଙ୍ଗେ କଥା କହିଲେ, ତା' ଭଲଲୋକ ତେଜ ମଉଳିଯାଇ ନ ଥାନ୍ତା ? ଭଲ କରିଛୁ – କାହିଁକି ମତେ ସେ ଚାହିଁଥାନ୍ତା ରେ ? ମୁଁ ସବାଖାଇ ସତ୍ୟାନାଶୀ ସେତେବେଳେ ଡାଆଣୀ ଥିଲି ରେ ବୋଧୁଆ – ମୋ ଆଖିରେ ତା' ଆଖି ପଡ଼ିଥିଲେ ଆଜ ତାକୁ ମୁଁ ପ୍ରାଣରେ ରଖିଥାନ୍ତି? ଶୋଷି ଯାଇ ନ ଥାନ୍ତି ? ଆହା ! ଆହା ! କେତେ ପୁଣ୍ୟବନ୍ତ ଦେବତା ଭଳିଆ ପିଲାଟାଏ ସେ ! ବାଟ ଚାଲୁଥିଲେ ତା' ପାଦତଳେ ପଦ୍ମଫୁଟି ଯାଉଥିବ । ସେ ଚାଲିଲାବେଳେ ଗାଁ ଦାଣ୍ଡରେ ସତେ କି କୁଆଡ଼ୁ ଅଣ୍ଡା ବାସନା ପବନ ବହି ଯାଉଥିବ ? ଜହ୍ନି ଫୁଲ କାକୁଡ଼ି ଫୁଲ ବାଡ଼ କଡ଼ରେ ଫୁଟିଯାନ୍ତି ରେ ବୋଧୁଆ । ଗାଳଧୁଆ ଗଛରେ ନାଲିନାଲି ଫୁଲ ପେନ୍ଥା ପେନ୍ଥା ହୋଇ ଫୁଟିଯାନ୍ତି । ମତେ ତ ସେଇଆ ନାଗେଇ – ସେଇଆ ଦୁଃଖେଇ !

ନାଥ ଓତାଙ୍କ ଦାଣ୍ଡରେ ସେ କାଳେ ଭାଗବତ ପୁରାଣ ପଢ଼ା ହଉଥାଇ ! ନାଥ ଓତାଙ୍କର କେଡ଼େ ସୁନ୍ଦର କଣ୍ଠ ! ମିଶିପେ ମାଈପେ ସମସ୍ତେ ଘେରି ବଇଥାନ୍ତି । ସାହାସ୍ତ ଶୁଣୁଥାନ୍ତି । ମୁଁ ଅଲଖଣୀ ସବୁରି ପଛରେ ଯାଇ ବସେଇ । ଅହା କି ସୁନ୍ଦର ପଦମାନ ! ଗୋପପୁରରେ କହ୍ନେଇ କି ଘେରି ଷୋଳହଜାର ଗୋପୀ ଲୀଳା କରୁଥାନ୍ତି । ଆହା କି ସୁନ୍ଦର ନବଘନ ରୂପରେ ବୋଧୁଆ ! ! ଗୋପୀଏ ତାକୁ ଘେରି ରହିଥାନ୍ତି କଦମ୍ବମୂଳେ । ତା'ରି ଉପରେ ଆଖିପଡ଼ିଲେ ଆଉ ସେ ଆଖି ସଂସାରକୁ ଫେରଇ ନାଇଁ । କେମିତି ଫେରିବ କହିଲୁ ? ସେ ପରା ସୋୟଂ ଭଗବାନ ! ! ମଣିଷ ରୂପ ହୋଇ ଆଇଥେଲେ ! ମୋ ଆଖିରୁ ଲୁହ ବହି ଯାଉଥାଇ । କିଏ କଣ ଭାବୁଥାଇ କେଜାଣି—ମୁଁ ଖାଲି ଭାବୁଥାଇ ଭରତ ସେନାପତି ପୁଅ ମୋ ଘନବନ୍ଧୁ କଥା । ଅବିକଳ କୃଷ୍ଣ ସଙ୍ଗେ ମିଳି ଯାଉ-ଥାଇବା ତା' ରୂପ ଗୁଣ ! ମୋ ମନ ବି ଅବିକଳ ସେଇ ଗୋପୀଙ୍କ ଭଳିଆ ହଉଥାଇ । କୃଷ୍ଣଙ୍କ ନାଁ ବି କୁଆଡ଼େ ଘନବନ୍ଧୁ ରେ ବୋଧୁଆ ! ! ଦେଖିଲୁ କେମିତି ମିଳିଯାଉଛି ! !

ଡାକରେ ବୁଧିଆ । କହିଲି – ଏ ପୋଡ଼ପାଡ଼ ଗାଁ । ଖଣ୍ଡକରେ ଅଭ କଏ ମଣିଷଟାଏ ଅଛି ନା ଥିଲା ? କେହିତ କାହା ଶ୍ରେ ଦେଖି ପାରୁନ୍ତିନ । ଚଉଧୁରୀ ସାହିଆ ତ ଭାଇ ଭାଇରେ ମାଲିମକଦମା—ବାଡ଼ିଆବାଡ଼ି ହେଇଗଲେ । ରାଉତସାହିଆତ କଏ କୁଆଡ଼େ ମରିହଜି ଗଲେଣି—ନଣ୍ଡୀ ବାଛୁରୀ କଣ୍ଠା ହେଇ ବି'ଗ୍ଭରଖଣ୍ଡ ଆତଜାତ ହଉଛନ୍ତି । ରାଉତ ବୁଢ଼ା ଖାଲି ବଂଚିଛି । ସେ ଆଖି ବୁଜିଲି ବାସିଦିନ ସେ ଡ଼ିହରେ ବଲିଆ ଡେଇଁବେ । ସେ ବୁଢ଼ା, ଜଣ ହଉଘଣରେ ତା' ଦିନକାଳ ଯିବରେ ବୁଧିଆ କହି ଦଉଛି । ସେଇ ବୁଢ଼ା କଣ କମ୍ ଦ୍ରୁମା ଥିଲା ? ଭୁତକେଳି କରିବ, ଭୂତକେଳି । ଘରେ ତେଣେ ମାଇପକୁ ଶୁଆସ ବେମାରୀ । ଏବୁଢ଼ା କଣ କରିବ ନା ରାତି ଅଧରେ ମୋ ଭୂଲିଆ ଅଧାକାନ୍ଦି ଡେଇଁ ମୋ ଘରେ ପଶିବ । ମୁଁ ଡରିକରି ତା' ଶରଣ ପଶି ଯାଏରେ ! ଆରେ ତାକୁ ସନ୍ତୋଷ ନ ରଖିଥିଲେ ସେ ମତେ ଆଜ ଜୀବନରେ ରଖିଥାନ୍ତା ? ତାଡ଼ି ପିଇଥିବ—କୁକୁଡ଼ା ଖାଇଥିବ । ରାତିସାକ ମୋ ଧିଅରୁ ରକତ ଶୋଷିବ । ସେଇ ବୁଢ଼ା ଫେର ମୋ ଡ଼ିଅ ନିଲାମ କରି ନେଲାରେ ବୁଧିଆ । ସେ ନେଲା ବାରିତଳ ବାଉଁଶ ବଣତକ । ଆଜ ସେ କୁଅ ସେପଟ ଡ଼ିହ ନେଲା ବରିନ ନୋଧିଆ ବା ! ମଲାବେଳେ ଖୋଡ଼ଫୁଟି ଗଲା—ତଣ୍ଟିରେ ମହାର୍ଦ୍ଦ ପାଣିମୁନ୍ଧା ଗଳିଲା ନାଇଁ । ଆଜ ଏ ରାଉତ ବୁଢ଼ା, ଦେଖିବୁ ରଇଥା । ତିନ ତିନଟା ବେଣ୍ଡା ପୁଅ ମଲେ । ଝିଅଟେ ଥିଲା ଯେ ରାଣ୍ଡିହେଇ ଶାଶୁଘରେ ପାପଗର୍ଭ ହେଲା । ଏଇଠି ଆସି ଭଂଗେଇ କରି ବୋପା ପାଖେ ରହିଛି । ନାଇଁରେ ବୁଧିଆ ! ମୁଁ ତା' ଝିଅକୁ ଦୋଷ ଦଉନାଇଁ । ମୋରି ଭଳିଆ ହତଭାଗୀଟେରେ । ଆସେଇ ଦିନେ ଦିନେବା ମୋ ପାଖକୁ । କହଇ—ମଲୀଖିଡ଼ୀ ! ମୋ ଜୀବନ କେମିତି ଯିବ କହିଲ ? ମୁଁ କହିଲି—ସେ କଥା କିଏଁ ମତେ ପଚାରୁଛୁଟେ—ମୋ'ର ତ ଜୀବନ ସରିଲା ବୋଲି ଜାଣ ।

ଗାଁ ଗୋଟାକରେ ସେଇ ଭରତ ସେନାପତି ବୁଢ଼ା ଭାରି ଧର୍ମବନ୍ତ ! ଭାରି କର୍ମବନ୍ତ ! ଦେଖନୁ ! ତା' ଉମରରେ ସେ କଣ ନ କରିଛି ! ଦେଉଳ କଲା—ପୋଖରୀ ଖୋଳେଇଲା—ଇସ୍କୁଲ ବସେଇଲା । ପାଇଛି ବି ସେମିତି । ଦୁଇ ଝିଅଜୋଇଁ ତ ପାଇଛି ଗଣେଶ କାର୍ତ୍ତିକ, ନାତି ନାତୁଣୀ ମାଡ଼ ଗଲେଣି । ଆଜ ଏଇ ଗୋଟିକ ପୁଅ ଧାନବନ୍ଧୁ । ଏତିକି

ତା' କର୍ମବିପାକ—ମାଈପ ମରିଗଲା, ଏଇ ଘାନବନ୍ଧୁ ଛଅ ବରଷର ହୋଇଥାଇ । ମରୁବା ମାଇପ ! ଘାନବନ୍ଧୁ ଭଲଆ ପୁଅ ପାଇଛି । ସବୁ ଦୁଃଖ ସେଇଥିରେ ପାର ।

ଏ ଗାଁଟା ତ ମଶାଣୀପଦା ହେଲାଣି । ସବୁରି ମୁହଁ ଯେମିତି କଳାକାଠ ପଡ଼ିଗଲାଣି । କାହା ମୁହଁରେ ଆଉ ଶିରୀ ନାହିଁ । ସବୁରି ବେକରେ ଯେମିତି ଯମ ଦଉଡ଼ି ଲାଗିଛି ! ଦିନ ଦି' ପ୍ରହରେ ତ ଏ ଗାଁରେ ବିଲୁଆ ବୋବାଉଛନ୍ତି । ରାତି ଦିନ ପେଚା ବୋବାଉଛନ୍ତି । ଦେଉଳ ଉପରେ ଶାଗୁଣା ବସିଲେଣି ଦି' ଦି' ଥର । କାଲି ରାତିଯାକ ଗୋଟେ ହୁଁ ହୁଁ ଚଢ଼େଇ ବୋବାଉଥିଲା ରାଉତ ଘର ସେଇ ତିନ୍ତୁଳିଗଛ ଉପରେ ।

ଜରମାଡ଼ିବ ? ଜର କାହିଁକି ମାଡ଼ିବ ବା ? ମତେ ଜର ମାଡ଼େଇ ନାହିଁ । ଆରେ ଜରବେଳେ ତ ଜର ମାଡ଼ୁ ନ ଥିଲା । ରାତିଯାକ ଭୂତଙ୍କ ସଙ୍ଗେ କେଳିକରୁଥିଲି ଏଇ କୁଡ଼ିଆ ଖଣ୍ଡିକରେ । ଆଉ ଅଇନେ— ମରିବାକୁ ବସିଲିଣି—

ମରିବ ନାହିଁ କଣ ଆଉ ଯୁଗାବ୍ଦି ବଞ୍ଚିଥିବ ? କାହିଁକି ଆଉ ବଞ୍ଚିବା ? ଯୋଉଥିପାଇଁ ଆଜଯାଏ ବଞ୍ଚିଥିଲି ସେ ମନସ୍କାମନା ତ ଆଜି ପୂରଣ ହୋଇଗଲା !

ହଇରେ ଘାନବନ୍ଧୁ ଆଜି ସତରେ ଆସିଥିଲେଟି । ଭରତ ସେନାପତି ପୁଅ ଘାନବନ୍ଧୁ ? ନା – ଆଉ କାହାକୁ ଘାନବନ୍ଧୁ ବୋଲି କହୁଚୁ ବା ! ! କି ଔଷଧ ଦେଇ ଯାଇଛି ବା ? ମୋର ଔଷଧ କଣ ହବ ? ଆଉ କଣ ଭଗବ ବୋଲି ଭଲା ଔଷଧ ଖାଇବ ?

କାହିଁକି ସେ ଆଇଥିଲା ? କେମିତି ଆଇଥିଲା କେଜାଣି ? ମୋର ତ ଚେତା ବୁଡ଼ିଗଲା ତାକୁ ଦେଖିକରି । ଗାଁକୁ ଆଇଥିଲା ବୋଲି ତ ଶୁଣିଥିଲି ! ମୁଁ କଣ ଜାଣିଛି ସେ ମୋ ଭଲଆ ଖାନକାଟା ଘରକୁ ଏମିତି ମାଡ଼ି ଆସିବ ? ମଠରଠା ପଁ ପଁ କଲା । ମୋର ତ ଆଉ ଖଟିଆରୁ ଉଠିବା ଶକତି ନ ଥାଏ । ମୁଁ ଭାବଲି—କିଏ ଯାଉଥିବ—ବ ଡ଼ ଓ ବାବୁ କି ଉଗ୍ରେସର ବାବୁ ! ଆରେ ବାପୁଆ ! ସେ ତ ପଶିଆସିଲା ଏ ଘରକୁ—

ଘର ତ ଏଇମିତ ଅନ୍ଧାର । ତକ୍ଷିକ ମୋ! ଆଖିକ ତ ଏବେ ଖଲ ଦୁଶୁ-ନେଇ । ଖାଲ ତା' ଧୂଅ ବାସନାରୁ ମତେ ଲଗିଲ ତା'ର ଭଲଅ। ।

ଆରେ ନାଇଁବା, ସେ ସେମିତ ଅତର ଫତର ଲଗାଏ ନାଇଁ । ସେ ତ ଦାଣ୍ଡରେ ଚ଼ୂଲ ଯାଉଥିବ ଯେ ସେ ଦାଣ୍ଡଯାକ ମହକ ଉଠୁଥବ । କେମିତ ଗୋଟେ ତା'ଧୂଅ ବାସେଇବା ! ସେ ବାସନା ମୋ ନାକରେ ବାଜଲେ ମୋର ତ ଧୂଅ କଣ ହେଇଯାଏ ! ମୋର ତ ଜ୍ଞାନ ହାଉ-ଯାଏରେ—ହଇରେ ଏମିତ ପୁଣି ମଣିଷ ଦେହ ବାସେଇ ?

ଆରେ ସେ କଣ ମଣିଷ ? ମଣିଷ ହେଇଥିଲେ ସେ ମତେ ଏମିତ ଆଜଯାଏ ଅପ୍ରାପତ ହୋଇଥାନ୍ତା ? ସେ ଦେବତାରେ ବୁଧ୍ୱ ସୁନ୍ଦର । ଶ୍ୟାପ ପାଇକରି ଏ ମଞ୍ଚକୁ ଆଇଛୁ । ଆଇଣ ଲୋକମାନଙ୍କର ଉପୁକାର କରିବ—ମୋ ଭଲଅ। ପାପୀତାପୀ ଖନଦୁଃଖୀଙ୍କର ଦୁଃଖ ଝାଡ଼ି ଝୁଡ଼ି ଦେବ—ତା'ପରେ ଲୀଳା ଖେଳା ସାରି ସୋର୍ଗପୁରକୁ ବାହୁଡ଼ି ଯିବ ।

ଦେବତା ନୁହଁ ? ହଇରେ ତୋର ବିଶ୍ବାସ ହଉ ନାଇଁ ? ଦେବତା ନୁହଁ ଆଉ କଣ ? ହଇରେ; ଆଉ କାହାକୁ ଦେଖିଲେ ତ ଏମିତ ପେଟ ପୂରି ଯାଏ ନାଇଁ । କାହା ଚରଣରେ ସବ୍ବଂଶ୍ବ ସଅଁପି ଦେଇ ଏମିତ ଲୋଟିଯିବାକୁ ମନ ଉ଼ାକେଇ ନାଇଁ ? କେହି ତ ଏମିତ ଆତ୍ମାକୁ ଥଣ୍ଡାକରି ଦିଏ ନାଇଁ । ତାକୁ ଦେଖିଲେ ସବୁ ଦେଖିଲ ଭଲଅ। ନାଗେଇ । ତାକୁ ପାଇଲେ ସବୁ ପାଇଗଲ ଭଲଅ। ନାଗେଇ ।

ଆରେ ବୁଧ୍ୱ ! ତିରିଶି ବର୍ଷ ହେଲ ମୁଁ ଏ ଗାଁକୁ ବୋହୂ ହୋଇ ଆଇଲଣି । କେତେ କଦର୍ଥନା ଭୋଗିଲଣି ମୁଁ ଏଠି ତୁ କାହୁଁ ଜାଣିବୁ ? ହଇରେ; ଏ ପୃଥିରେ ସମସ୍ତେ ଅସୁର । ଖାଲ ହାଁ। କରି ବସିଛନ୍ତି ସମସ୍ତଙ୍କୁ ଗିଳିଯିବେ, ଶୋଷିନେବେ ସମସ୍ତଙ୍କୁ – ଆଖିବାଟେ, ପାଟିବାଟେ ଆଉ ଆଉ ବାଟେ । ଏ ସବୁ ଖିଆମାନେ ଗୁଳିଯାଉଥିବେ ଯେଉଁବାଟେ, ସେବାଟେ ଘାସ ମରି ଯାଉଥିବ । ଏ ସତ୍ୟାନାଶିଆଙ୍କ ଗୁଇ ଯାହା ଉପରେ ପଡ଼ିବ ସେ କେହି ଉଧେଇବେ ନାଇଁ । ଦେଖୁନୁ, ଏ ଗାଁରେ କେହି ଉଧେ-ଇଲେ ନା ଉଧଉଛନ୍ତି ! ଯ୍ବା ଗୁଇ ତା' ଉପରେ ତା' ଗୁଇ ଯ୍ବା ଉପରେ । କେହି କାହାକୁ ଏଠି ଅଣ୍ଡା ନାହିଁରେ ବୁଧ୍ୱଆ । ଏ ଗାଁ ଏମିତ ମଣଣୀ

ଢବ, ମଶାଣୀ ଢବ, ଢବ, ଢବ – ମୁଁ କହୁ ଦଉଛୁ । ଏଠି କାହା ହୃଦରେ ଉତ୍ସାହଦ ନାହିଁ – ମାୟା ନାହିଁ କାହାର କାହାରକ । ଏ ତା ଗୃହରୁ ପୂଜାଂ ଟାଣି ନଉଛୁ ତ ସେ ଯୂ ଗୃହରୁ ଖଣ୍ଡେ ରୁଅ ଟାଣି ନଉଛୁ । ମରିବେ ନାହିଁ--ମରିବେ ତ । ଯିବେ କୁଆଡେ ।

ଗଧୂରେ; ଏଇ ଶାନବନ୍ଧୁ ଯମନ୍ତ ଏଠି ଆସି ରହନ୍ତେ ! ସେ କୁଆଡ଼ୁ ଏଠି ଆସି ରହିବରେ ? ଏ ଗ୍ରାଷପପୃଷ୍ଠକ ସେ କେମିତ ଆସିବ, ବଷ୍ଟୁକାଳରେ ତାର ଜନ୍ମରେ ଗଧୂଆ ! !

ଶୁଣ୍‌ବା ଗଧୂ ଶୁଣ୍‌ବା ! ଯେମିତ ସେ ମୋର ଘରଭିତରକୁ ପଶି ଆସିଲା । ମୋ ଘର ତ ମହକଗଲା । ତା'ଧିହ ବାସନାରେ ଆଗ ମୋ ଚେତା ବୁଡ଼ିଗଲା ଭଳିଆ ଲଗିଲା ।

ନାହିଁବା ଚେତା କାହିଁକ ବୁଡ଼ିବ ? ମତେ ସେମିତ ବେଚେଷ୍ଟା ଲଗିଲା । ହଇରେ ସେ କଏ – ମୁଁ କଏ ? ଜୀବନଯାକ ତାକୁ ଟିକଏ ଦେଖିବ ବୋଲି, ତାକୁ ଟିକଏ ଧରିବ ବୋଲି କେତେଆଶା ନ କରିଛୁ – କେତେ ଚକଳ ନ ହେଉଛୁ ! ! ଯେମିତ ପଶି ଆସିଲା ମୁଁ ଖଟିଆ ଉପରେ ନ ଥିକନା ପଡ଼ିଗଲି । ମୋ ଧିହ ଝିମି ଝିମି ହେଇଗଲା । ତାକୁ ତ ଥରେ ଖୁନ୍ଦିଁଛୁ—ଭଲକରି ତ ଦଶୁନଥାଇ—ହେଲେ ଯଦ ମୋତେ ଆଗ ଭଳିଆ ଦୁଶୁଥାନ୍ତା, ଯଦ ସଂଜବୁଡ଼ ହୋଇ ନ ଥାନ୍ତା--ଆଉ ଯଦ ତା' ଆଖିରେ ମୋ ଆଖି ପଡ଼ିଥାନ୍ତା, ଆଉ କଣ ମୁଁ ବଂଚିଥାନ୍ତି ? ମୋ ଛାତି ଫାଟି ଯାଇ ନ ଥା'ନ୍ତା ?

ହଅବା, ମୋର ଟିକଏ ଟିକଏ ମନେ ପଡ଼ୁଛୁ । ସେ ମୋ ହାତ ଧଇଲା—ନାଡ଼ୀ ଚିପିଲା—ମତେ ଓଲଟ ପାଲଟ କଲା କଇଁଚ ଭଳିଆ । କଣ ଯଂନ୍ତ୍ରଟାଏ ମାଡ଼ ଦଉଥଇ ମୋ ପିଠିରେ ଫେର ମୋ ଛାତିରେ । ଫେର ମୋ କପାଳକୁ ଆଉଁସିଲା । ଆହା – ମୁଁ ଅଜ୍ଞାନ ହେଇକା ପଡ଼ିଥାଇ । ଜ୍ଞାନ ଥାଅନ୍ତ ଫେର୍ ବେଚେଷ୍ଟା ଲଗୁଥାଇ । ଆଖିବୁଜ ସେମିତ ଆକଚା ହୋଇ ପଡ଼ିଥାଇ ! ସତକ ସପନ ଦେଖୁଥାଇ !

ବାପ୍‌ ଅନେ ! ତୁଇ ସତ୍ୟାନାଶିଆ ତାକୁ ଏଠିକ ଡାକ ଆଣି-ଥେଲୁ । ନାଇଁ ? କାଇଁକ ଡାକଲୁ କହିଲୁ ? ତୁ ନ ଡାକଥିଲେ ସେ

ମୋ'ଠାରୁ ବଳି ଭାଗ୍ୟବତୀ, ପୁଣ୍ୟବତୀ ଆଉ କଏ ଅଛିବା ? ମୋ ଧାନବନ୍ଧୁ ଭଳିଆ ବନ୍ଧୁ ଆଉ କୋଉଠି ଅଛି, କଏ ଅଛିବା ?

ରାଧୁଆ; ମୋ ରାଧୁସୁନ୍ଦରରେ ! ତୋର କୋଟି ପରମାୟୁ ହଉ । ଏଇ ଗାଁରେ ତୁ ଆଉ ଗୋଟିଏ ଧାନବନ୍ଧୁ ହବୁରେ – ତେବେ ଯାଇଁ ଏ ଗାଁ ଫେର୍ ବଂଚି ଉଠିବ । ହବୁରେ ତୁ ଟୋକା ହବୁ । ସେଇ ଧାନବନ୍ଧୁ ଭଳିଆ ହବୁ ତୁ ଜଣେ । ତା ନ ହେଲେ ତୋର ମୋ ପ୍ରତି ଆଉ ମୋର ତୋ'ପ୍ରତି ଏତେ ମାୟା ଲାଗନ୍ତା କେମିତି ?

ଗଲୁ ଗଲୁ ଧନ ! ଯା' ତାଙ୍କୁ କହିଦେଇ ଆସିବୁ—ଆଉ ଯେମିତି ସେ ମୋ ଘରକୁ କାଲି ନ ଆସନ୍ତି ! ମୁଁ ଆଉ ଔଷଧ ପୋଷଧ ଖାଇବନି । ମୁଁ ଆଉ ବଂଚିବନି – ଆଉ ମୋର ବଂଚିବା କଣ ଦରକାର ? ମୁଁ ପାଇଗଲି – ସବୁ ପାଇଗଲି················ରାଧୁଆରେ ! ସତରେ କହିଲୁ – ସେ ଯେ ଫଜରୁଁଡ଼େ ମୋ ଘରକୁ ଆଇଥିଲେ ସେ ଧାନବନ୍ଧୁଟି ? ·········ନାଇଁ ନାଇଁ ମୁଁ ତ୍ୱତ ଅବିଶ୍ୱାସ କରୁନି—ସେ ସେଇ ଭରତ ସେନାପତି ପୁଅ ଧାନବନ୍ଧୁତ ? ସତ କହୁଛୁ ? ମୋ ଧିହ ଛୁଇଁଲୁ—କେ··· ଜା···ଣି···ରେ ରା···ଧୁ···ଆ – ଫେର୍ କାହିଁକି ବିଶ୍ୱାସ ଆସୁନାହିଁ ! ! ମୁଁ ଜାଣିଛି—ତୁ ସ କହୁଛୁ ! ତଥାପି କାହିଁକି ମୋର ବିଶ୍ୱାସ ହଉନାଇଁ । ଆରେ ମୋ ଛାତି କାଇଁକି ଏମିତି ହେଇଯାଉଛି···ମୋ ଧିହ କଣ ହେଇଯାଉଛି·········ରାଧୁଆରେ ।

ମୋ ରାଧୁସୁନ୍ଦର ! !

ମୁଁ କଣ କରିବି ! ! !

—o—